


ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶାରେ ଆୟୋଜିତ ହେବାକୁ ଯାଉଥିବା
ପ୍ରଥମ ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀର ଲୋଗୋ ଉନ୍ମୋଚନ କରୁଛନ୍ତି ।

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**January-2024**

୮୦ ଭାଗ ୬ଷ୍ଠ ସଂଖ୍ୟା ପୌଷ–ମାଘ ଜାନୁଆରୀ – ୨୦୨୪





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : uporipr@gmail.com, ୱେବ୍‌ସାଇଟ୍ : https://odisha.gov.in

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

## ଜାନୁଆରୀ–୨୦୨୪





# ଜାତୀୟ ସଙ୍ଗୀତ

ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

*- ରବୀନ୍ଦ୍ରନାଥ ଠାକୁର*

# ବନ୍ଦେ ମାତରମ୍

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ।।
ବନ୍ଦେ ମାତରମ୍ ।।।

- *ବଙ୍କିମଚନ୍ଦ୍ର ଚାଟାର୍ଜୀ*

# ଶ୍ରଦ୍ଧାଞ୍ଜଳି



ଚାଖି ଖୁଣ୍ଟିଆ
ଆବିର୍ଭାବ
୧୮୨୭ ଶାରଦ୍ଦ ଦଶମୀ



ନେତାଜୀ ସୁଭାଷ ଚନ୍ଦ୍ର ବୋଷ
ଆବିର୍ଭାବ
୨୩ ଜାନୁଆରୀ, ୧୮୯୭





ବୀର ସୁରେନ୍ଦ୍ର ସାଏ
ଆବିର୍ଭାବ
୨୩ ଜାନୁଆରୀ, ୧୮୦୯



ବକ୍ସି ଜଗବନ୍ଧୁ
ତିରୋଧାନ
୨୪ ଜାନୁଆରୀ, ୧୮୨୯



THE CONSTITUTION OF INDIA

PREAMBLE

WE, THE PEOPLE OF INDIA, having solemnly resolved to constitute India into a SOVEREIGN SOCIALIST SECULAR DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity and integrity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

# ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା 'ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ' ଲୋକାର୍ପିତ

ଓଡ଼ିଆ ଜାତିର ଭାବ ଏବଂ ଭକ୍ତିର ପ୍ରାଣକେନ୍ଦ୍ର ଶ୍ରୀମନ୍ଦିର ଇତିହାସରେ ଯୋଡ଼ିହୋଇଛି ଏକ ସ୍ୱର୍ଣ୍ଣିମ ଅଧ୍ୟାୟ ଏବଂ ନାମ, ସଂକୀର୍ତ୍ତନ, ଘଣ୍ଟ, ଶଙ୍ଖଧ୍ୱନିରେ ପ୍ରକମ୍ପିତ ହୋଇଛି ସମଗ୍ର ରାଜ୍ୟ । ପୌଷ ଶୁକ୍ଳ ସପ୍ତମୀର ଶୁଭଲଗ୍ନରେ ଏକ ଅନନ୍ୟ ଭାବବିହ୍ୱଳ ଦିବ୍ୟ ପରିବେଶ ମଧ୍ୟରେ ବହୁ ପ୍ରତୀକ୍ଷିତ 'ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ'କୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଲୋକାର୍ପିତ କରି ପ୍ରତିଟି ଓଡ଼ିଆ ଏବଂ ପ୍ରତିଟି ଜଗନ୍ନାଥପ୍ରେମୀଙ୍କ ଉଦ୍ଦେଶ୍ୟରେ ସମର୍ପିତ କରିଛନ୍ତି । ତା'ସହ ପୁରୀବାସୀଙ୍କ ଅସୀମ ତ୍ୟାଗକୁ ସମ୍ମାନ ଜଣାଇଛନ୍ତି । ଲୋକାର୍ପଣ ସମୟରେ ଗଜପତି ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବ, ୫-'ଟି' ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ୍ ଓ ଅନ୍ୟ ବିଶିଷ୍ଟ ଅତିଥିମାନେ ଉପସ୍ଥିତ ଥିଲେ ।



ଶ୍ରୋତ୍ରିୟ ବ୍ରାହ୍ମଣଙ୍କ ବେଦମନ୍ତ୍ର, ମହାଯଜ୍ଞ ଏବଂ ନାମ-ସଂକୀର୍ତ୍ତନରେ ମନ୍ତ୍ରାୟିତ ଓ ପ୍ରକମ୍ପିତ ହୋଇଛି ଶ୍ରୀକ୍ଷେତ୍ର । 'ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ' ମହାଯଜ୍ଞରେ ପୂର୍ଣ୍ଣାହୂତି ଦେଇଛନ୍ତି ଗଜପତି ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବ । ପୂର୍ଣ୍ଣାହୂତି ସମୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ, ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ, ସାଧୁସନ୍ଥ, ମଠାଧୀଶ, ରାଜ୍ୟ ତଥା ରାଜ୍ୟ ବାହାରୁ ଆସିଥିବା ମନ୍ତ୍ରୀ, ସାଂସଦ, ବିଧାୟକ, ମୁଖ୍ୟ ଶାସନ ସଚିବ, ସେବାୟତ, ପୂଜକ, ବରିଷ୍ଠ ପ୍ରଶାସନିକ ଅଧିକାରୀ ଓ ମାନ୍ୟଗଣ୍ୟ ବ୍ୟକ୍ତିମାନେ ଉପସ୍ଥିତ ଥିଲେ ।

**ଓଡ଼ିଶାବାସୀଙ୍କ ମଙ୍ଗଳ ପାଇଁ ମହାପ୍ରଭୁଙ୍କ ନିକଟରେ ପ୍ରାର୍ଥନା କଲେ ମାନ୍ୟବର ମୁଖ୍ୟମନ୍ତ୍ରୀ ।**

ହିନ୍ଦୁ ଧର୍ମରେ ମନ୍ଦିର ପରିକ୍ରମା ଭାବ-ଭକ୍ତିକୁ ପ୍ରଶସ୍ତ କରିଥାଏ । ଅନ୍ତଃପ୍ରଦକ୍ଷିଣ ପଥରେ ମାନ୍ୟବର ମୁଖ୍ୟମନ୍ତ୍ରୀ, ଗଜପତି ମହାରାଜା, ୫-'ଟି' ଅଧ୍ୟକ୍ଷ, ସାଧୁସନ୍ଥ, ମାନ୍ୟଗଣ୍ୟ ବ୍ୟକ୍ତିମାନେ ପରିକ୍ରମା କରି ମହାପ୍ରଭୁଙ୍କ ନିକଟରେ ପ୍ରଣତି ଜଣାଇଥିଲେ ।



ମହାପ୍ରଭୁଙ୍କ ଅପାର କରୁଣା, ରାଜ୍ୟ ସରକାରଙ୍କ ନିଷ୍ଠାପର ଏବଂ ନିରନ୍ତର ଉଦ୍ୟମ, ହଜାର ହଜାର ବ୍ୟକ୍ତିଙ୍କ କଠିନ ପରିଶ୍ରମ ଏବଂ ସର୍ବୋପରି ପୁରୀବାସୀଙ୍କ ଅସୀମ ତ୍ୟାଗ ଓ ଅକୁଣ୍ଠ ସହଯୋଗର ସୁଫଳ ଓ ସୌରଭ ହେଉଛି 'ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ' । ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ଗଜପତି ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବ, ମାନ୍ୟବର ବାଚସ୍ପତି ଶ୍ରୀମତୀ ପ୍ରମିଳା ମଲ୍ଲିକ, ମାନ୍ୟବର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପୂଜାରୀ, ଆଇନ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ସାରକା, ୫–'ଟି' ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ୍, ପୁରୀ ବିଧାୟକ ଶ୍ରୀ ଜୟନ୍ତ କୁମାର ଷଡ଼ଙ୍ଗୀ ପ୍ରମୁଖଙ୍କ ଉପସ୍ଥିତିରେ 'ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ'ରେ ଉଲ୍ଲେଖନୀୟ ଅବଦାନ ରଖିଥିବା ୧୦ ଜଣ ବ୍ୟକ୍ତିବିଶେଷଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ସେମାନେ ହେଲେ ଶ୍ରୀ ୟୁନିଭର୍ସ ମହାରଣା, ଲକ୍ଷ୍ମୀ ପ୍ରଧାନ (ଶ୍ରମିକ), ଶ୍ରୀ ରାଜୁ ଭୋଇ (ମାଳି), ଶ୍ରୀ ପ୍ରକାଶ ପ୍ରଧାନ (ଜେସିବି ଅପରେଟର), ଶ୍ରୀ ରବିନ୍ଦ୍ର ଗୌଡ଼ (ପ୍ରସ୍ତର ଶିଳ୍ପୀ), ଶ୍ରୀ କୀର୍ତ୍ତନ ମହାରଣା (ପ୍ରସ୍ତର ଶିଳ୍ପୀ), ଶ୍ରୀ କବିରାଜ ରାଉଳ (ରାଜମିସ୍ତ୍ରୀ), ଶ୍ରୀ ସୁକାନ୍ତ ପ୍ରଧାନ (ହେଲ୍ପର), ଶ୍ରୀ ବିଭୁ ରାଉତ (ହେଲ୍ପର) ଏବଂ ଶ୍ରୀ ରାଜ ପେଟ୍ଛେଇ (ରାଜମିସ୍ତ୍ରୀ) ।

ଲୋକାର୍ପଣ ଉତ୍ସବ ପାଇଁ ଶ୍ରୀମନ୍ଦିର ସହ ଅନ୍ୟାନ୍ୟ ମନ୍ଦିର ଏବଂ ମଠଗୁଡ଼ିକ ଫୁଲରେ ସୁନ୍ଦର ଭାବେ ସଜ୍ଜା ହୋଇଥିଲା । ଶ୍ରୀକ୍ଷେତ୍ରରେ ଲକ୍ଷାଧିକ ଭକ୍ତ ଏବଂ ଶ୍ରଦ୍ଧାଳୁଙ୍କ ସମାଗମ ହୋଇଥିଲା । ପ୍ରବଳ ଜନସମାଗମକୁ ଆଖି ଆଗରେ ରଖି ପୋଲିସ୍ ପକ୍ଷରୁ ବ୍ୟାପକ ସୁରକ୍ଷା ବ୍ୟବସ୍ଥା କରାଯାଇଥିଲା ।



# 'ଶିକ୍ଷା ହିଁ ଆମ ସମାଜର ସାମୂହିକ ଚିନ୍ତାଧାରାକୁ ଉଚ୍ଚସ୍ତରକୁ ନେଇଥାଏ' - ମୁଖ୍ୟମନ୍ତ୍ରୀ



5T ସ୍କୁଲ ରୂପାନ୍ତରଣ ଅଭିଯାନର ଚତୁର୍ଥ ପର୍ଯ୍ୟାୟର ଦ୍ୱିତୀୟ ଦିନରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମାଲକାନଗିରି, ବାଲେଶ୍ୱର, ଗଜପତି, ଢେଙ୍କାନାଳ, କେନ୍ଦୁଝର ଓ କଟକ ଆଦି ୬ଟି ଜିଲ୍ଲାର ୩୨୭ଟି ରୂପାନ୍ତରିତ ସ୍କୁଲକୁ ଲୋକାର୍ପିତ କରିଛନ୍ତି ।

ଏଥିରେ ମାଲକାନଗିରି ଜିଲ୍ଲାର ୩୫ଟି ହାଇସ୍କୁଲ, ବାଲେଶ୍ୱରର ୭୬ଟି, ଗଜପତିର ୨୮ଟି, ଢେଙ୍କାନାଳର ୬୩ଟି, କେନ୍ଦୁଝରର ୪୫ଟି ଓ କଟକର ୮୦ଟି ହାଇସ୍କୁଲ ଅନ୍ତର୍ଭୁକ୍ତ ।

ସୂଚନାଯୋଗ୍ୟ ଯେ, ପୂର୍ବରୁ ତିନୋଟି ପର୍ଯ୍ୟାୟରେ ରାଜ୍ୟରେ ୬୮୮୩ଟି ସ୍କୁଲ ରୂପାନ୍ତରିତ ହୋଇଛି । ଚତୁର୍ଥ ପର୍ଯ୍ୟାୟରେ ସମୁଦାୟ ୧୭୯୪ଟି ରୂପାନ୍ତରିତ ହାଇସ୍କୁଲ ଲୋକାର୍ପିତ ହେବ । ଏହି ପର୍ଯ୍ୟାୟ ସଂପୂର୍ଣ୍ଣ ହେବା ପରେ ରାଜ୍ୟରେ ସମୁଦାୟ ୮୬୭୭ଟି ସ୍କୁଲ ରୂପାନ୍ତରିତ ହେବ ।

- ଶିକ୍ଷା ହିଁ ଆମ ସମାଜର ସାମୂହିକ ଚିନ୍ତାଧାରାକୁ ଉଚ୍ଚସ୍ତରକୁ ନେଇଥାଏ ।
- ପିଲାଙ୍କ ଭିତରେ ବଡ଼ ହେବାର ସ୍ୱପ୍ନକୁ ଜାଗ୍ରତ କରିଛି ସ୍କୁଲ ରୂପାନ୍ତର, ପିଲାମାନଙ୍କ ସ୍ୱପ୍ନ ନିଶ୍ଚୟ ପୂରଣ ହେବ - ଶ୍ରୀ ଭି.କେ. ପାଣ୍ଡିଆନ୍ ।
- 5T ସ୍କୁଲ ରୂପାନ୍ତର ସରକାରୀ ସ୍କୁଲ ପ୍ରତି ଅଭିଭାବକ ଓ ଛାତ୍ରଛାତ୍ରୀଙ୍କ ଆସ୍ଥା ଫେରାଇ ଆଣିଛି- ମନ୍ତ୍ରୀ ଓ ବିଧାୟକଗଣ ।
- ସ୍କୁଲ ରୂପାନ୍ତର ଯୋଗୁଁ ଆମ ସ୍କୁଲ କାନ୍ଥ ଏବେ କଥା କହୁଛି - ଛାତ୍ରଛାତ୍ରୀ ।
- ପାଇଲଟ୍, ଡାକ୍ତର, ଆଇ.ଏ.ଏସ୍, ଆଇ.ପି.ଏସ୍, ଆର୍ମି ଅଫିସର ହେବାକୁ ପିଲାମାନଙ୍କ ଲକ୍ଷ୍ୟ ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏହି ଅବସରରେ ସଂପୃକ୍ତ ଜିଲ୍ଲାର ବିଧାୟକ, ପଞ୍ଚାୟତ ପ୍ରତିନିଧି, ସ୍କୁଲ ପରିଚାଳନା କମିଟି, ଶିକ୍ଷକ ଶିକ୍ଷୟିତ୍ରୀ ଓ ଅଭିଭାବକମାନଙ୍କୁ ଏହି କାର୍ଯ୍ୟକ୍ରମରେ ସହଯୋଗ ପାଇଁ ଧନ୍ୟବାଦ ଦେଇଥିଲେ ।

ଏହି ଅବସରରେ ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ଏବେ ଓଡ଼ିଶାରେ ରୂପାନ୍ତରର ଯୁଗ ଚାଲିଛି । ଶିକ୍ଷା ହିଁ ଆମ ସମାଜର ସାମୂହିକ ଚିନ୍ତାଧାରକୁ ଉଚ୍ଚସ୍ତରକୁ ନେଇଥାଏ ।

- 5T ସ୍କୁଲ ରୂପାନ୍ତରଣର ୪ର୍ଥ ପର୍ଯ୍ୟାୟର ଦ୍ୱିତୀୟ ଦିନରେ ୬ଟି ଜିଲ୍ଲାର ୩୨୭ଟି ସ୍କୁଲ ଲୋକାର୍ପିତ
- ଚତୁର୍ଥ ପର୍ଯ୍ୟାୟରେ ୧୭୯୪ଟି ରୂପାନ୍ତରିତ ସ୍କୁଲ ଲୋକାର୍ପିତ ହେବ
- ପୂର୍ବରୁ ୩ଟି ପର୍ଯ୍ୟାୟରେ ୬୮୮୩ଟି ସ୍କୁଲର ଲୋକାର୍ପଣ ହୋଇଛି

ସ୍କୁଲ ରୂପାନ୍ତର ଓଡିଆ ଜାତିରେ ନୂଆ ଜାଗରଣର ମାର୍ଗ ପ୍ରଶସ୍ତ କରିଛି ବୋଲି ସେ କହିଥିଲେ ।

ଆଗାମୀ ଦିନରେ ମୁଖ୍ୟ ଭୂମିକା ଗ୍ରହଣ କରିବ ବୋଲି ସେ କହିଥିଲେ ।

ସ୍କୁଲ କଲେଜଠାରୁ ଆରମ୍ଭ କରି ହସ୍‌ପିଟାଲ, ପର୍ଯ୍ୟଟନ କ୍ଷେତ୍ର, ମଠ ମନ୍ଦିର, ପଞ୍ଚାୟତ, ଗାଁ ସବୁଠାରେ ରୂପାନ୍ତର କାର୍ଯ୍ୟ ଚାଲିଛି । ଏକ ନୂଆ ଓଡିଶା, ସଶକ୍ତ ଓଡିଶା ଗଠନ ପାଇଁ ଏହି ରୂପାନ୍ତର ରାସ୍ତା ପ୍ରସ୍ତୁତ କରୁଛି । ମୁଖ୍ୟମନ୍ତ୍ରୀ ଆହୁରି କହିଲେ ଯେ ଏସବୁ ରୂପାନ୍ତର କାର୍ଯ୍ୟକ୍ରମ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଓ ଶ୍ରେଷ୍ଠ ହେଉଛି ସ୍କୁଲ ରୂପାନ୍ତର କାର୍ଯ୍ୟକ୍ରମ । ସ୍କୁଲରୁ ହିଁ ଗୋଟିଏ ଜାତିର ଭବିଷ୍ୟତ ନିର୍ମାଣ ହୋଇଥାଏ ।

ପିଲାମାନଙ୍କୁ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ ଆହୁରି ମଧ୍ୟ କହିଥିଲେ ଯେ 5T ଉପକ୍ରମରେ ଏହି ରୂପାନ୍ତର କାର୍ଯ୍ୟକ୍ରମରେ ତୁମ ସ୍କୁଲରେ ସ୍ମାର୍ଟ କ୍ଲାସ ରୁମ୍, କମ୍ପ୍ୟୁଟର, ଅତ୍ୟାଧୁନିକ ଲାବୋରେଟୋରୀର ବ୍ୟବସ୍ଥା କରାଯାଇଛି। ଏହା ହେଉଛି ଟେକ୍‌ନୋଲୋଜିର ପ୍ରୟୋଗ । ସେହିଭଳି ଟିମ୍‌ୱାର୍କ ଜରିଆରେ ସମସ୍ତେ ମିଳିମିଶି କାମ କରୁଛନ୍ତି । ସମସ୍ତଙ୍କ ସହ ଆଲୋଚନା କରି ସବୁ କାମ ସ୍ୱଚ୍ଛତାର ସହ କରାଯାଉଛି । ଏହିସବୁର ଉପଯୋଗରେ ତୁମ ସ୍କୁଲମାନଙ୍କରେ ଆସିଛି ରୂପାନ୍ତର, ଯାହାକୁ ତୁମେ ଏବେ ଦେଖୁଛ ଓ ଅନୁଭବ କରୁଛ ।

ପିଲାମାନଙ୍କ ଭବିଷ୍ୟତ ଉପରେ ଆଲୋକପାତ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ସରକାରୀ ସ୍କୁଲର ପିଲାମାନଙ୍କ ପାଇଁ ମେଡିକାଲ ଓ ଇଂଜିନିଅରିଂ କଲେଜରେ ୧୫ ପ୍ରତିଶତ ସ୍ଥାନ ସଂରକ୍ଷଣ କରାଯାଇଛି । ସରକାରୀ ସ୍କୁଲମାନଙ୍କରେ ପିଲାମାନଙ୍କ ଶିକ୍ଷାଦାନ କ୍ଷେତ୍ରରେ ବହୁ ଉନ୍ନତି ଆସିଛି । ଏବେ ସରକାରୀ ସ୍କୁଲରେ ପାଠ ପଢିବା ପାଇଁ ପିଲା ଓ ଅଭିଭାବକ ମଧ୍ୟରେ ଉତ୍ସାହ ପରିଲକ୍ଷିତ ହେଉଛି । ଏକ ଉଜ୍ଜ୍ୱଳ ଭବିଷ୍ୟତ ଗଠନ ପାଇଁ ଏବେ ସରକାରୀ ସ୍କୁଲଗୁଡିକ ଶ୍ରେଷ୍ଠ ମାଧ୍ୟମ ହୋଇଛି । ତେଣୁ ତୁମେମାନେ ଏହି ରୂପାନ୍ତରିତ ସ୍କୁଲର ସଠିକ ଉପଯୋଗ କରି ଭଲ ପାଠ ପଢି ଏକ ସୁନ୍ଦର ଭବିଷ୍ୟତ ଗଢିବା ପାଇଁ ମୁଖ୍ୟମନ୍ତ୍ରୀ ପିଲାମାନଙ୍କୁ ପରାମର୍ଶ ଦେଇଥିଲେ ।

ମୁଖ୍ୟମନ୍ତ୍ରୀ ପିଲାମାନଙ୍କୁ ଆହ୍ୱାନ ଦେଇ କହିଥିଲେ ଯେ ତୁମେମାନେ ତୁମ ଜୀବନରେ 5T ନୀତିର ପ୍ରୟୋଗ କର । ଏହା ତୁମମାନଙ୍କ ପାଇଁ ସଫଳତା ଆଣିଦେବ । ତୁମେମାନେ ନୂଆ ନୂଆ ବୈଷୟିକ ଜ୍ଞାନକୌଶଳ ବିଷୟରେ ଜାଣିବାକୁ ଚେଷ୍ଟା କର । ମିଳିମିଶି କାମ କର । ମୁଖ୍ୟମନ୍ତ୍ରୀ ଆହୁରି କହିଥିଲେ ଯେ କ୍ରୀଡା କ୍ଷେତ୍ରରେ ଟିମ୍‌ୱାର୍କର ବିଶେଷ ଭୂମିକା ରହିଛି । ସ୍ୱଚ୍ଛତା ଓ ସାଧୁତା ହେଉଛି ମଣିଷ ଜୀବନର ଶ୍ରେଷ୍ଠ ଗୁଣ । ଜୀବନର ସବୁ କ୍ଷେତ୍ରରେ ସାଧୁତା ଅବଲମ୍ବନ କରିବାକୁ ଚେଷ୍ଟା କର । ସମୟ ହେଉଛି ତୁମମାନଙ୍କ ପାଇଁ ସବୁଠାରୁ ମୂଲ୍ୟବାନ । ସମୟକୁ ନଷ୍ଟ ନ କରି ତା'ର ଉପଯୋଗ କର । ଏହି ଚାରୋଟି ନୀତିକୁ ଅନୁସରଣ କଲେ ଜୀବନରେ ସଫଳତା ହାସଲ କରି ରୂପାନ୍ତର ଆସିବ ।

କାର୍ଯ୍ୟକ୍ରମରେ ଯୋଗ ଦେଇ 5T ତଥା ନବୀନ ଓଡିଶା ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ କହିଲେ ଯେ 5T ସ୍କୁଲ ରୂପାନ୍ତର ଆଜି ପିଲାଙ୍କ ମଧ୍ୟରେ ଭଲ ପାଠ ପଢି ବଡ ହେବାର ସ୍ୱପ୍ନକୁ ଜାଗ୍ରତ କରିପାରିଛି । ସରକାରୀ ସ୍କୁଲରେ ପାଠ ପଢି ବହୁତ ପିଲା ବଡ଼ ମଣିଷ ହୋଇଛନ୍ତି । ତୁମମାନଙ୍କ ସ୍ୱପ୍ନ ମଧ୍ୟ ନିଶ୍ଚୟ ପୂରଣ ହେବ ।

ଏହି ଅବସରରେ 5T ସ୍କୁଲ ରୂପାନ୍ତର ସଂପର୍କରେ ବିଭିନ୍ନ ସ୍ଥାନରେ ଛାତ୍ରଛାତ୍ରୀମାନେ ସେମାନଙ୍କର ଅଭିଜ୍ଞତା ବର୍ଣ୍ଣନା କରିଥିଲେ । ମାଲକାନଗିରିର ଦଶମ ଶ୍ରେଣୀର ଛାତ୍ରୀ ସୁକାନ୍ତି ଖରା, ବାଲେଶ୍ୱରର ଦଶମ ଶ୍ରେଣୀ ଛାତ୍ରୀ ପ୍ରିୟଙ୍କା ପ୍ରଧାନ, ଗଜପତିର ଦଶମ ଶ୍ରେଣୀ ଛାତ୍ରୀ ମନୀଷା ପାଲ, ଢେଙ୍କାନାଳର ନବମ ଶ୍ରେଣୀ ଛାତ୍ରୀ ସ୍ୱାତୀ ମହାପାତ୍ର, କେନ୍ଦୁଝରର ନବମ ଶ୍ରେଣୀ ଛାତ୍ରୀ ସୁଦୀପ୍ତା ନନ୍ଦ ଏବଂ କଟକର ଦଶମ ଶ୍ରେଣୀ ଛାତ୍ରୀ ଅଙ୍କିତା ପ୍ରିୟଦର୍ଶିନୀ ପ୍ରମୁଖ ସେମାନଙ୍କ ମତାମତ ଦେଇ କହିଲେ ଯେ ସ୍କୁଲ ରୂପାନ୍ତର ଯୋଗୁଁ ଆଜି ଆମ ସ୍କୁଲର କାନ୍ଥ କଥା କହୁଛି । ସ୍ମାର୍ଟ ବୋର୍ଡ଼ ଜରିଆରେ ପାଠପଢା ଏବେ ଖୁବ୍ ଆକର୍ଷଣୀୟ ହୋଇପାରିଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ଆମ ସରକାରୀ ସ୍କୁଲକୁ ପ୍ରାଇଭେଟ ସ୍କୁଲ ସହିତ ସମକକ୍ଷ କରି ଆମର ସ୍ୱପ୍ନକୁ ସାକାର କରିଛନ୍ତି । 5T ଉପକ୍ରମରେ ଆମ ବିଦ୍ୟାଳୟର ପରିବେଶ ଓ ଶିକ୍ଷା ବ୍ୟବସ୍ଥା ସଂପୂର୍ଣ୍ଣ ଭାବେ ବଦଳି ଯାଇଛି ବୋଲି ସେମାନେ କହିଥିଲେ ।

ପାଇଲଟ୍, ଡାକ୍ତର, ଆଇ.ଏ.ଏସ୍, ଆଇ.ପି.ଏସ୍, ଆର୍ମି ଅଫିସର ହେବାକୁ ପିଲାମାନଙ୍କ ଲକ୍ଷ୍ୟ ।

ପିଲାମାନେ ସମସ୍ତେ ସେମାନଙ୍କ ଲକ୍ଷ୍ୟ ପୂରଣରେ ସଫଳ ହେବେ ବୋଲି ଆତ୍ମବିଶ୍ୱାସ ସହ ପ୍ରକାଶ କରିଥିଲେ ।

କାର୍ଯ୍ୟକ୍ରମରେ ମାଲକାନଗିରିରେ ନବରଙ୍ଗପୁର ସାଂସଦ ଶ୍ରୀ ରମେଶ ଚନ୍ଦ୍ର ମାଝୀ, ବାଲେଶ୍ୱରରେ ବିଧାୟକ ଶ୍ରୀ ସ୍ୱରୂପ କୁମାର ଦାସ, ଗଜପତିରେ ବ୍ରହ୍ମପୁର ସାଂସଦ ଶ୍ରୀ ଚନ୍ଦ୍ରଶେଖର ସାହୁ, ଢେଙ୍କାନାଳରେ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ କୁମାର ମଲ୍ଲିକ, କେନ୍ଦୁଝରରେ ବିଧାୟକ ଶ୍ରୀ ଜଗନ୍ନାଥ ନାୟକ ଏବଂ କଟକରେ ବିଧାୟକ ଶ୍ରୀ ଚନ୍ଦ୍ରସାରଥୀ ବେହେରା ପ୍ରମୁଖ ଯୋଗ ଦେଇ ଶିକ୍ଷା କ୍ଷେତ୍ରରେ ସ୍କୁଲ ରୂପାନ୍ତର କାର୍ଯ୍ୟକ୍ରମ ପାଇଁ ମୁଖ୍ୟମନ୍ତ୍ରୀଙ୍କ ଦୃଢ ନେତୃତ୍ୱରେ ଉଚ୍ଚ ପ୍ରଶଂସା କରି କହିଥିଲେ ଏଥିପାଇଁ ଅଭିଭାବକ ଓ ପିଲାମାନଙ୍କ ମଧ୍ୟରେ ସରକାରୀ ସ୍କୁଲ ପ୍ରତି ଆଗ୍ରହ ଫେରି ଆସିଛି । ବେସରକାରୀ ସ୍କୁଲରୁ ପିଲାମାନେ ଏବେ ସରକାରୀ ସ୍କୁଲମୁହାଁ ହେଲେଣି ବୋଲି ସେମାନେ ମତ ଦେଇଥିଲେ ।

ଏହି ଅବସରରେ କଟକ ଜିଲ୍ଲା କାର୍ଯ୍ୟକ୍ରମରେ ଉପସ୍ଥିତ ସମସ୍ତ ମନ୍ତ୍ରୀ, ସାଂସଦ ଓ ବିଧାୟକମାନେ ସେମାନଙ୍କ ମତାମତ ଦେଇଥିଲେ । ମନ୍ତ୍ରୀ ଶ୍ରୀ ରଣେନ୍ଦ୍ର ପ୍ରତାପ ସ୍ୱାଇଁ, ସାଂସଦ ଡ ଅଚ୍ୟୁତ ସାମନ୍ତ, ସାଂସଦ ଡ. ରାଜଶ୍ରୀ ମଲ୍ଲିକ, ବିଧାୟକ ଶ୍ରୀ ଦେବୀ ପ୍ରସାଦ ମିଶ୍ର, ବିଧାୟକ ଡ. ପ୍ରମୋଦ ମଲ୍ଲିକ, ବିଧାୟକ ଶ୍ରୀ ସୋଭିକ ବିଶ୍ୱାଳ ପ୍ରମୁଖ ସ୍କୁଲ ରୂପାନ୍ତର ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ 5T ଅଧ୍ୟକ୍ଷଙ୍କ ଉଚ୍ଚ ପ୍ରଶଂସା କରିଥିଲେ ।

ଏହି କାର୍ଯ୍ୟକ୍ରମରେ ସ୍କୁଲ ଓ ଗଣଶିକ୍ଷା ବିଭାଗର କମିଶନର ତଥା ସଚିବ ଅଶ୍ୱଥୀ ଏସ୍ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ଓସେପାର ସ୍ୱତନ୍ତ୍ର ପ୍ରୋଜେକ୍ଟ ଡାଇରେକ୍ଟର ଧନ୍ୟବାଦ ଅର୍ପଣ କରିଥିଲେ । ଉନ୍ନୟନ କମିଶନର, ବିଭିନ୍ନ ବିଭାଗର ପ୍ରମୁଖ ସଚିବ, ସଚିବ ଓ ଅନ୍ୟ ପଦାଧିକାରୀମାନେ ଉପସ୍ଥିତ ଥିଲେ ।



# ରାଜ୍ୟରେ ଶ୍ରୀଜଗନ୍ନାଥ ଏକ୍ସପ୍ରେସ ବସ୍ ସେବା ଆରମ୍ଭ



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟରେ ଶ୍ରୀଜଗନ୍ନାଥ ଏକ୍ସପ୍ରେସ ବସ୍ ସେବାର ଶୁଭାରମ୍ଭ କରିଛନ୍ତି । ଏହି ବସ୍‌ଗୁଡିକ ଜିଲ୍ଲା ସଦରମହକୁମାରୁ ଭୁବନେଶ୍ୱର ଦେଇ ଶ୍ରୀକ୍ଷେତ୍ର ପୁରୀକୁ ଚାଲିବ । ଏହି ଅବସରରେ ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ, ମା'ମାନଙ୍କ ପାଇଁ ଶ୍ରୀଜଗନ୍ନାଥ ଏକ୍ସପ୍ରେସ ବସ୍‌ରେ ଟିକେଟର ମୂଲ୍ୟ ମାତ୍ର ୫୦ ପ୍ରତିଶତ ରହିବ । ସେ କହିଥିଲେ ଯେ ଲକ୍ଷ୍ମୀ ବସ୍ ଯୋଜନାରେ ମା'ମାନଙ୍କ ପାଇଁ ଟିକେଟ ଦାମ୍ ମାତ୍ର ୫ ଟଙ୍କା ରହିଛି । ଏହା ମା'ମାନଙ୍କ ପାଇଁ ବହୁ ସୁବିଧା ଆଣିଛି ।

5T ଉପକ୍ରମରେ ଆରମ୍ଭ ହୋଇଥିବା ଲକ୍ଷ୍ମୀ ବସ୍ ସେବା ଯୋଜନା ଅଧୀନରେ ଏହି ବସ୍ ସେବା ଆରମ୍ଭ ହୋଇଛି । ରାଜ୍ୟର ୩୦ଟି ଜିଲ୍ଲାରୁ ୮୦ଟି ସୁପର ପ୍ରିମିୟମ ଶ୍ରୀଜଗନ୍ନାଥ ଏକ୍ସପ୍ରେସ୍ ବସ୍ ଏହି ଯୋଜନାରେ ଚଳାଚଳ କରିବ ।

ପ୍ରଥମ ପର୍ଯ୍ୟାୟରେ ୧୨ ଜିଲ୍ଲାରୁ ଏହି ସେବା ଆରମ୍ଭ ହେଲା । ଏହି ଜିଲ୍ଲାଗୁଡିକ ହେଲା- ବଲାଙ୍ଗିର, ବରଗଡ, ଗଞ୍ଜାମ, ଝାରସୁଗୁଡା, କୋରାପୁଟ, କଳାହାଣ୍ଡି, ମାଲକାନଗିରି, ନବରଙ୍ଗପୁର, ନୂଆପଡା, ରାୟଗଡା, ସମ୍ବଲପୁର ଓ ସୁନ୍ଦରଗଡ ।



ମୁଖ୍ୟମନ୍ତ୍ରୀ କହିଥିଲେ ଯେ ରାଜ୍ୟବାସୀଙ୍କୁ ପୁରୀଧାମ ଆସି ମହାପ୍ରଭୁଙ୍କ ଦିବ୍ୟଦର୍ଶନ ଲାଭ କରିବା ପାଇଁ ଆମର ଏହି ଶ୍ରୀଜଗନ୍ନାଥ ଏକ୍ସପ୍ରେସ ବସ୍ ସେବା ଆରମ୍ଭ ହୋଇଛି । ଆପଣମାନେ ସମସ୍ତେ ଏହାର ସୁଯୋଗ ନିଅନ୍ତୁ ଓ ମହାପ୍ରଭୁଙ୍କ ଆଶୀର୍ବାଦ ଲାଭ କରନ୍ତୁ ।

ମୁଖ୍ୟମନ୍ତ୍ରୀ ଆହୁରି ମଧ୍ୟ କହିଲେ ଯେ ମହାପ୍ରଭୁଙ୍କ ଇଚ୍ଛାରେ 'ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ' ଲୋକାର୍ପଣ ହୋଇଛି । ଏହି ପ୍ରକଳ୍ପ ଦ୍ୱାରା ମନ୍ଦିରର ଆହୁରି ଶୋଭା ବର୍ଦ୍ଧନ ହେବା ସହିତ ପରିବେଶକୁ ଆହୁରି ଭକ୍ତିମୟ କରିଛି । ଶ୍ରଦ୍ଧାଳୁ ଓ ଭକ୍ତମାନଙ୍କ ପାଇଁ ସୁବିଧା ଦର୍ଶନର ବ୍ୟବସ୍ଥା କରାଯାଇଛି । ମହାପ୍ରଭୁଙ୍କ ଦର୍ଶନ ପାଇଁ

ଆପଣମାନଙ୍କ ନିମନ୍ତେ ଆରାମଦାୟକ ବସ୍ ସେବା ଆରମ୍ଭ ହେଲା । ସେ କହିଥିଲେ ଆପଣମାନେ ସୁବିଧାରେ ପୁରୀ ଆସି ମହାପ୍ରଭୁଙ୍କ କୃପାଲାଭ କରିବେ ବୋଲି ମୋର ବିଶ୍ୱାସ ।

ଏଥି ସହିତ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆମ ଓଡ଼ିଶା ନବୀନ ଓଡ଼ିଶା କାର୍ଯ୍ୟକ୍ରମରେ ଏବେ ଗାଁ ଗାଁରେ ଜଗନ୍ନାଥ ସଂସ୍କୃତିର ସୁରକ୍ଷା ଓ ପ୍ରସାର ପାଇଁ ପଦକ୍ଷେପ ନିଆଯାଉଛି । ଆମର ଲୋକପ୍ରିୟ ଲକ୍ଷ୍ମୀ ବସ୍ ଯୋଜନାରେ ଆମେ ପଞ୍ଚାୟତକୁ ବ୍ଲକ ସଦର ମହକୁମା ସହିତ ଯୋଡ଼ିଛୁ । ଯୋଗାଯୋଗ କ୍ଷେତ୍ରରେ ଲକ୍ଷ୍ମୀ ବସ୍ ଏବେ ରୂପାନ୍ତର ଆଣିଛି । ଜିଲ୍ଲା ସଦରମହକୁମାରୁ ଶ୍ରୀକ୍ଷେତ୍ରକୁ ସିଧାସଳଖ ବସ୍ ବ୍ୟବସ୍ଥା ଦ୍ୱାରା ରାଜ୍ୟର ଗମନାଗମନ ଓ ଯୋଗାଯୋଗ ବ୍ୟବସ୍ଥା ସୁଦୃଢ ହେବ । ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ, ଭକ୍ତ ଓ ଜଗନ୍ନାଥପ୍ରେମୀଙ୍କୁ ମହାପ୍ରଭୁଙ୍କ ଦିବ୍ୟଦର୍ଶନ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିବାରେ ଏହି ବସ୍ ସେବା ସହାୟତା ପ୍ରଦାନ କରିବ । ମହାପ୍ରଭୁଙ୍କ ଆଶୀର୍ବାଦ ଓ ଆପଣମାନଙ୍କ ସହଯୋଗରେ ଓଡିଶା ବିକାଶର ଶିଖରରେ ପହଞ୍ଚିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

- 5T ଉପକ୍ରମରେ ଆରମ୍ଭ ହୋଇଥିବା ଲକ୍ଷ୍ମୀ ଯୋଜନାରେ ଆରମ୍ଭ ହେଲା ଏହି ସେବା
- ୩୦ଟି ଜିଲ୍ଲାରୁ ୮୦ଟି ସୁପର ପ୍ରିମିୟମ ଶ୍ରୀଜଗନ୍ନାଥ ଏକ୍ସପ୍ରେସ ବସ୍ ଚାଲିବ
- ପ୍ରଥମ ପର୍ଯ୍ୟାୟରେ ୧୨ଟି ଜିଲ୍ଲାରୁ ବସ୍ ସେବା ଆରମ୍ଭ ହେଲା
- ଜିଲ୍ଲା ସଦରମହକୁମାରୁ ଭୁବନେଶ୍ୱର ଦେଇ ମହାପ୍ରଭୁଙ୍କ ଧାମ ପୁରୀକୁ ଯିବ ବସ୍
- ଲକ୍ଷ୍ମୀ ଯୋଜନାରେ ମା'ମାନଙ୍କ ପାଇଁ ଟିକେଟ୍‌ର ମୂଲ୍ୟ ୫ ଟଙ୍କା
- ଶ୍ରୀଜଗନ୍ନାଥ ଏକ୍ସପ୍ରେସରେ ମା'ମାନଙ୍କ ପାଇଁ ଟିକଟ ମୂଲ୍ୟ ୫୦ ପ୍ରତିଶତ ରହିବ - ମୁଖ୍ୟମନ୍ତ୍ରୀ
- ଆପଣମାନେ ସୁବିଧାରେ ପୁରୀ ଆସନ୍ତୁ, ମହାପ୍ରଭୁଙ୍କ କୃପାଲାଭ କରନ୍ତୁ
- ଜନସାଧାରଣଙ୍କୁ ଅନୁରୋଧ କଲେ ମୁଖ୍ୟମନ୍ତ୍ରୀ

ଏହି କାର୍ଯ୍ୟକ୍ରମରେ ବଲାଙ୍ଗିରରେ ଉପସ୍ଥିତ ଥିବା ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀମତୀ ଟୁକୁନି ସାହୁ କହିଲେ ଯେ ସାଧାରଣ ଲୋକଙ୍କ ପ୍ରତିଶ୍ରୁତି ପୂରଣ କରିବାରେ ମୁଖ୍ୟମନ୍ତ୍ରୀଙ୍କର ତୁଳନା ନାହିଁ । ଶ୍ରୀଜଗନ୍ନାଥ ଏକ୍ସପ୍ରେସ୍ ଏ କ୍ଷେତ୍ରରେ ଆଉ ଏକ ମାଇଲଷ୍ଟୋନ ବୋଲି ସେ କହିଥିଲେ । ମୁଖ୍ୟମନ୍ତ୍ରୀଙ୍କ ସବୁ କାର୍ଯ୍ୟକ୍ରମ ମହିଳାମାନଙ୍କୁ ଅଧିକ ସଶକ୍ତ କରୁଛି । ମୁଖ୍ୟମନ୍ତ୍ରୀଙ୍କ ସମସ୍ତ କାର୍ଯ୍ୟକ୍ରମର ମଙ୍ଗ ଧରି 5T ଅଧକ୍ଷ ସବୁ ଯୋଜନା ସଫଳ କରୁଛନ୍ତି ବୋଲି ସେ କହିଥିଲେ । 5T ଅଧକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ କାର୍ଯ୍ୟକ୍ରମ ସଂଯୋଜନା କରିଥିଲେ । କାର୍ଯ୍ୟକ୍ରମରେ ବାଣିଜ୍ୟ ଓ ପରିବହନ ପ୍ରମୁଖ ସଚିବ ଶ୍ରୀମତୀ ଉଷା ପାଢୀ ସ୍ୱାଗତ ଭାଷଣ ଦେଇଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ବିଧାୟକ ଶ୍ରୀ ଭୂପିନ୍ଦର ସିଂହ, ଉନ୍ନୟନ କମିଶନର ଶ୍ରୀମତୀ ଅନୁ ଗର୍ଗ ଓ ବିଭିନ୍ନ ବିଭାଗର ବରିଷ୍ଠ ଅଧିକାରୀମାନେ ଏହି କାର୍ଯ୍ୟକ୍ରମରେ ଉପସ୍ଥିତ ଥିଲେ ।



# ଚକ ଜମିର ବିକ୍ରୟ, ହସ୍ତାନ୍ତର, ବଣ୍ଟନ ପ୍ରକ୍ରିୟା ସ୍ୱଚ୍ଛ ଓ ପ୍ରତିବନ୍ଧକମୁକ୍ତ ହେବ

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶ କ୍ରମେ ୫-'ଟି' ଓ ନବୀନ ଓଡ଼ିଶାର ଅଧ୍ୟକ୍ଷ ଶ୍ରୀ ଭି. କେ. ପାଣ୍ଡିଆନଙ୍କ ବିଭିନ୍ନ ଜିଲ୍ଲା ଗସ୍ତ ପରେ ଚକବନ୍ଦୀ ଜମିର ବିକ୍ରୟ/ ହସ୍ତାନ୍ତର/ ବଣ୍ଟନ ପ୍ରତିବନ୍ଧକ ସମସ୍ୟାର ସମାଧାନ କରିବା ନିମନ୍ତେ ସରକାର ଅଣ୍ଟା ଭିଡ଼ିଥିଲେ । ଏଠାରେ ସୂଚନାଯୋଗ୍ୟ ଓଡିଶା ଚକବନ୍ଦୀ ଓ ଭୂମିର ବିଭକ୍ତିକରଣ ନିବାରଣ ଅଧିନିୟମ, ୧୯୭୨ ଚକ ଜମିର ଖଣ୍ଡବିଖଣ୍ଡନକୁ ରୋକିଥାଏ ଏବଂ ଉକ୍ତ ଆଇନ ଉଲ୍ଲଙ୍ଘନ କରି କରାଯାଇଥିବା ଯେକୌଣସି ଜମି ହସ୍ତାନ୍ତରୀକରଣ କିମ୍ବା ବଣ୍ଟନ ବେଆଇନ ଥିଲା । ଏହି ପ୍ରତିବନ୍ଧକଗୁଡିକ ଲୋକମାନଙ୍କର ଅଧିକାର ଉପରେ ପ୍ରତିକୂଳ ପ୍ରଭାବ ପକାଉଥିଲା ଏବଂ ସେମାନେ ଆବଶ୍ୟକତା ସମୟରେ ନିଜ ଜମିର ବିକ୍ରୟ/ ହସ୍ତାନ୍ତର/ ବଣ୍ଟନ କରିବାରୁ ବଞ୍ଚିତ ହେଉଥିଲେ । ଏହି ପ୍ରତିବନ୍ଧକ ଜମି ରେକର୍ଡଗୁଡିକର ସଂଶୋଧନରେ ପ୍ରତିବନ୍ଧକ ସୃଷ୍ଟି ସହ ଜମି ଦଖଲ ନିମନ୍ତେ ଭବିଷ୍ୟତରେ ମକଦ୍ଦମା ସୃଷ୍ଟି କରିବାରେ ଏକ ପ୍ରମୁଖ କାରଣ ହେଉଥିଲା ।

> - ଓଡ଼ିଶାର ପ୍ରାୟ ୮ ହଜାର ଗ୍ରାମର ଲକ୍ଷାଧିକ ଲୋକ ଉପକୃତ ହେବେ
> - ପୂର୍ବରୁ ଚକବନ୍ଦୀ ନିୟମ ଉଲ୍ଲଙ୍ଘନ କରି ବିକ୍ରୟ, ହସ୍ତାନ୍ତର, ବଣ୍ଟନ କରାଯାଇଥିବା ଜମି ଏବେ ବୈଧ ଭାବେ ଗଣନା ହେବ

ଏହି ସମସ୍ୟାକୁ ରାଜସ୍ୱ ବିଭାଗର ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ସତ୍ୟବ୍ରତ ସାହୁଙ୍କ ଅଧ୍ୟକ୍ଷତାରେ ଗଠିତ ରାଜସ୍ୱ ଟାସ୍କଫୋର୍ସରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଥିଲା ଓ ପରିବର୍ତ୍ତିତ ପରିସ୍ଥିତିରେ ଉକ୍ତ ଅଧିନିୟମକୁ ସଂଶୋଧନ କରିବା ନିମନ୍ତେ ସରକାରଙ୍କୁ ପ୍ରସ୍ତାବ ଦିଆଯାଇଥିଲା । ଯାହା, ପରେ ଓଡିଶା ବିଧାନସଭାରେ ପାରିତ ହୋଇ ବିଧି ବିଭାଗ ଦ୍ୱାରା ବିଧିବଦ୍ଧ ଭାବେ ବିଜ୍ଞପ୍ତି ପ୍ରକାଶ ହୋଇଛି ।

ଏହା ଫଳରେ ଓଡ଼ିଶାର ପ୍ରାୟ ଆଠ ହଜାର ଗ୍ରାମର ଲକ୍ଷାଧିକ ଲୋକ ଲାଭବାନ ହେବେ ଓ ଚକ ଜମିର ବିକ୍ରୟ/ ହସ୍ତାନ୍ତର/ ବଣ୍ଟନ ପ୍ରକ୍ରିୟା ସ୍ୱଚ୍ଛ ଓ ପ୍ରତିବନ୍ଧକମୁକ୍ତ ହେବ । ଏହା ସହ ପୂର୍ବରୁ ଚକବନ୍ଦୀ ନିୟମ ଉଲ୍ଲଙ୍ଘନ କରି ବିକ୍ରୟ/ ହସ୍ତାନ୍ତର/ ବଣ୍ଟନ କରାଯାଇଥିବା ଜମି ଏବେ ବୈଧ ଭାବେ ଗଣନା ହେବ । ସରକାରଙ୍କର ଏହି ଯୁଗାନ୍ତକାରୀ ନିଷ୍ପତ୍ତି ନୂଆ ବର୍ଷରେ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କ ମଧ୍ୟରେ ଖୁସିର ଲହରୀ ଆଣିଛି ।



# ପାଣି ପଞ୍ଚାୟତରେ ମହିଳାମାନଙ୍କର ଅଂଶଗ୍ରହଣ କୃଷିକ୍ଷେତ୍ରରେ ରୂପାନ୍ତରଣ ଆଣିଛି

ଜାଇକା ସହାୟତା ରେଙ୍ଗାଲୀ ଜଳସେଚନ ପ୍ରକଳ୍ପ- ୨ୟ ପର୍ଯ୍ୟାୟ ହେଉଛି ବ୍ରାହ୍ମଣୀ ନଦୀରେ ନିର୍ମିତ ଏକ ବହୁମୁଖୀ ପ୍ରକଳ୍ପ । ବର୍ତ୍ତମାନ ଏହି ପ୍ରକଳ୍ପ ଅଧୀନରେ ଥିବା ୧୯୩୭୩ ହେକ୍ଟର ଜଳସେଚିତ ଜମିରେ ୪୫ଟି ପାଣି ପଞ୍ଚାୟତ ଗଠନ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି ଓ ସେଗୁଡିକର ପରିଚାଳନାକୁ ସୁଦୃଢ କରାଯାଉଛି । ଏଥିରେ ୧୧୮ଟି ଗ୍ରାମ ଏବଂ ୨୪୫୬୮ଟି ପରିବାର ଅନ୍ତର୍ଭୁକ୍ତ ରହିଛନ୍ତି । ପ୍ରକଳ୍ପର ବିଭିନ୍ନ କାର୍ଯ୍ୟକଳାପଗୁଡିକ କୃଷି-ପ୍ରକଳ୍ପ ପରିଚାଳନା ଦଳ (ଆଗ୍ରି-ପିଏମ୍ ୟୁନିଟ୍) ଦ୍ୱାରା କାର୍ଯ୍ୟକାରୀ ହେଉଛି । ଜଳ ଓ ଭୂମି ପରିଚାଳନା ପ୍ରତିଷ୍ଠାନ- 'ୱାଲମୀ'ର କ୍ଷେତ୍ର ପର୍ଯ୍ୟବେକ୍ଷକ ଦଳ ପାଣି ପଞ୍ଚାୟତ ଗଠନ ଏବଂ ଏହି ସମ୍ବନ୍ଧୀୟ ଗ୍ରାମ୍ୟସ୍ତରୀୟ ବିଭିନ୍ନ କାର୍ଯ୍ୟକଳାପକୁ କାର୍ଯ୍ୟକାରୀ କରିବାରେ ଜଡିତ ଅଛନ୍ତି ।



**ରେଙ୍ଗାଲୀ ଜଳସେଚନ ପ୍ରକଳ୍ପ- ୨ୟ ପର୍ଯ୍ୟାୟ ମାଧ୍ୟମରେ ବଗିଚାରେ ପୁଷ୍ଟିକର ପନିପରିବା ଚାଷ**

ଏହି ପ୍ରକଳ୍ପରୁ ଲାଭ ଉଠାଇବା ପାଇଁ ପାଣି ପଞ୍ଚାୟତ ସଦସ୍ୟମାନଙ୍କୁ ପ୍ରକଳ୍ପ ଏବଂ ଏହାର କାର୍ଯ୍ୟକଳାପ ବିଷୟରେ ପ୍ରକଳ୍ପ ପରିବାର ମଧ୍ୟରେ ସଚେତନତା ବୃଦ୍ଧି ପାଇଁ ଗ୍ରାମର ନେତୃବୃନ୍ଦ ଏବଂ ପଞ୍ଚାୟତିରାଜ ପ୍ରତିନିଧିମାନଙ୍କ ସହିତ ନିୟମିତ ଆଲୋଚନା କରାଯାଉଛି । ସ୍ଥାନୀୟ କୃଷକମାନେ କୃଷି, ଉଦ୍ୟାନ କୃଷି, ମୃତ୍ତିକା ସଂରକ୍ଷଣ ଏବଂ ମତ୍ସ୍ୟ ବିଭାଗ ଭଳି ବିଭିନ୍ନ ସହାୟକ ସରକାରୀ ବିଭାଗ ସହିତ ସମନ୍ୱୟ ରଖି ଉପକୃତ ହେଉଛନ୍ତି । ଗ୍ରାମ୍ୟସ୍ତରୀୟ ବୈଠକ, ଗ୍ରାମ୍ୟ ଯୋଜନା କମିଟି ଏବଂ ଗୋଷ୍ଠୀଭିତ୍ତିକ କାର୍ଯ୍ୟ ମାଧ୍ୟମରେ ପାଣି ପଞ୍ଚାୟତ କାର୍ଯ୍ୟକଳାପରେ ଜଡିତ କୃଷକ ସଂଗଠନମାନେ ପ୍ରକଳ୍ପର ବିଭିନ୍ନ କାର୍ଯ୍ୟ ସହିତ ଜଡିତ ରହି କୃଷକମାନଙ୍କ ଦକ୍ଷତା ବୃଦ୍ଧି ପ୍ରଶିକ୍ଷଣ କାର୍ଯ୍ୟକ୍ରମ ମାଧ୍ୟମରେ ପାଣି ପଞ୍ଚାୟତକୁ ଅଧିକ ସୁଦୃଢ କରିପାରିଛନ୍ତି । ପାଣି ପଞ୍ଚାୟତ ସଦସ୍ୟମାନେ ସେମାନଙ୍କ ଜଳସେଚିତ କ୍ଷେତ୍ର ମଧ୍ୟରେ ହେବାକୁ ଥିବା କ୍ଷେତ୍ରନାଳୀଗୁଡିକର ନକ୍ସା ପ୍ରସ୍ତୁତିରେ ଜଡିତ ହେଉଛନ୍ତି । ଫଳରେ ଜଳାଭାବ ସମୟରେ ପାଣି ପଞ୍ଚାୟତ ଦ୍ୱାରା ଜଳର ସଠିକ ବଣ୍ଟନ ପ୍ରକ୍ରିୟା ସହଜ ହୋଇପାରୁଛି । କେନାଲ ପ୍ରଣାଳୀରେ ପ୍ରକଳ୍ପ କର୍ମକର୍ତ୍ତାଙ୍କ ସହିତ କୃଷକମାନଙ୍କ ମିଳିତ ପଦଯାତ୍ରା ଦ୍ୱାରା ଏହାର ପରିଚାଳନା ଏବଂ ରକ୍ଷଣାବେକ୍ଷଣ ଉପରେ ଜଳ ଉପଭୋକ୍ତାଙ୍କ ଦକ୍ଷତା ବୃଦ୍ଧି ଘଟିଛି । କେନାଲ ପ୍ରଣାଳୀ ଏବଂ କ୍ଷେତ୍ରନାଳୀ ନିର୍ମାଣ ଦ୍ୱାରା ଲୋକମାନଙ୍କର ଆୟ ଏବଂ ରୋଜଗାର ସୃଷ୍ଟି ହୋଇପାରିଛି ।

ସେହିପରି ପାଣି ପଞ୍ଚାୟତ ଜରିଆରେ କୃଷକମାନେ ଚାଷକାର୍ଯ୍ୟ ପୂର୍ବରୁ ମୃତ୍ତିକା ପରୀକ୍ଷଣ, ପ୍ରମାଣିତ ମଞ୍ଜି ବ୍ୟବହାର, ବିହନ ବିଶୋଧନ, ବିହନ ଅଙ୍କୁର ପରୀକ୍ଷା ଏବଂ ଚିକିତ୍ସା ବିଷୟରେ ଜ୍ଞାନକୌଶଳର ଧାରଣା ହେତୁ, ଧାନରେ କୀଟନାଶକ ହ୍ରାସ ଉପରେ କୃଷକମାନଙ୍କ ମଧ୍ୟରେ ସଚେତନତା ବୃଦ୍ଧି ପାଇଛି । ପ୍ରମାଣିତ ବିହନ, ଧାଡି ଧାନରୁଆ ଏବଂ ଏକୀକୃତ ଫସଲ ପରିଚାଳନା ଅଭ୍ୟାସ ମାଧ୍ୟମରେ ପ୍ରଦର୍ଶନ ପ୍ଲଟରେ ଧାନ ଉତ୍ପାଦନରେ (ହେକ୍ଟର ପିଛା ପ୍ରାୟ ୬ ରୁ ୭ ଟନ୍) ବୃଦ୍ଧି ପାଇଛି । ଫସଲ ପ୍ରଦର୍ଶନ ଏବଂ ତାଲିମ ମାଧ୍ୟମରେ ଫସଲର ବିବିଧିକରଣ ଉପରେ କୃଷକମାନଙ୍କ ମଧ୍ୟରେ ସଚେତନତା ବୃଦ୍ଧି ପାଇଛି । ଧାନ ସହିତ ମିଳିତ ଭାବରେ ହରଡ଼, ମୁଗ ଇତ୍ୟାଦିର ଏକତ୍ରିତ ଚାଷ ମାଧ୍ୟମରେ ଫସଲ ବିବିଧିକରଣ ବୃଦ୍ଧି ପାଇଛି । ଘରୋଇ ବଗିଚାରେ ପୁଷ୍ଟିକର ପନିପରିବା ଚାଷ କରାଯାଉଛି । 'ୱାଲମୀ' ପରାମର୍ଶକ୍ରମେ ଜାଇକା ଅନୁଦାନରୁ ପାଣି ପଞ୍ଚାୟତକୁ ମିଳିଥିବା କୃଷି ଯନ୍ତ୍ରପାତି ଯଥା: ପାୱାର୍ ଥ୍ରେସର, ପାୱାର୍ ଉଇଡର, ପାୱାର୍ ସ୍ପ୍ରେୟର ଇତ୍ୟାଦିକୁ ପାଣି ପଞ୍ଚାୟତ ଜରିଆରେ ସାମୂହିକ ବ୍ୟବସାୟିକ କାର୍ଯ୍ୟକଳାପ ମାଧ୍ୟମରେ ବ୍ୟବହାର କରି ରୋଜଗାର ବୃଦ୍ଧି କରିପାରୁଛନ୍ତି । କ୍ଷୁଦ୍ର, ନାମମାତ୍ର ଏବଂ ଭାଗ ଚାଷୀମାନେ ମଧ୍ୟ କୀଟନାଶକ ନିୟନ୍ତ୍ରଣ ପାଇଁ ପାଣି ପଞ୍ଚାୟତ ସହାୟତାରେ ପାୱାର୍ ସ୍ପ୍ରେୟରକୁ ବ୍ୟବହାର କରିବାରେ ସକ୍ଷମ ହୋଇପାରିଛନ୍ତି । ପ୍ରକଳ୍ପ ସହାୟତାରେ ଛେଳି, ଦେଶୀ କୁକୁଡ଼ା, ବ୍ରଏଲର ଏବଂ ଛତୁ ଚାଷ ଉଦ୍ୟୋଗ ସହିତ ଜଡିତ ଭୂମିହୀନ ତଥା ନାମମାତ୍ର କୃଷକ ପରିବାରର ୩୩ ଜଣ ଯୋଗ୍ୟ ମହିଳା ଉଦ୍ୟୋଗୀଙ୍କୁ ଉକ୍ତ ଚାଷ ପାଇଁ ଗୃହ ଏବଂ ଏହାର ଆନୁଷଙ୍ଗିକ ଉପକରଣ ସହାୟତା ପ୍ରଦାନ କରାଯାଇଅଛି । ଏହିପରି ଗୃହର ସହାୟତା ଯୋଗୁଁ ମହିଳାମାନେ ଉନ୍ନତ ପରିବେଶ ମଧ୍ୟରେ ଉଦ୍ୟୋଗ କ୍ଷେତ୍ରରେ ଉନ୍ନତି ଆଣି ଉତ୍ପାଦନ କ୍ଷମତା ଏବଂ ଏହାର ଆକାର ବୃଦ୍ଧି କରିପାରିଛନ୍ତି, ଯଦ୍ୱାରା ସେମାନେ ମଧ୍ୟ ଛେଳି ଓ କୁକୁଡ଼ା ପାଳନରେ ମୃତ୍ୟୁସଂଖ୍ୟା ହ୍ରାସ କରିପାରିଛନ୍ତି ଏବଂ ଛତୁ ଚାଷରେ ମଧ୍ୟ ଉତ୍ପାଦନ ବୃଦ୍ଧି କରିପାରିଛନ୍ତି । ଏହି ପରିପ୍ରେକ୍ଷୀରେ ପାଣି ପଞ୍ଚାୟତ ସମର୍ଥିତ ପରିବାରଗୁଡିକ ପ୍ରତି ମାସରେ ତାଙ୍କ ଆୟରେ ପ୍ରାୟ ୫ ହଜାର ଟଙ୍କା ବୃଦ୍ଧି ହେବାର ଅନୁଭବ କରୁଛନ୍ତି ।



ପାଣି ପଞ୍ଚାୟତକୁ କୃଷି ଯନ୍ତ୍ରପାତି ସହାୟତା

ପ୍ରକଳ୍ପ ମାଧ୍ୟମରେ ଉଦ୍ୟୋଗରେ ଉତ୍ତମ ପରିଚାଳନା ଅଭ୍ୟାସ ତାଲିମ, ଦକ୍ଷତା ତାଲିମ, ବ୍ୟବସାୟ ଯୋଜନା ପ୍ରଶିକ୍ଷଣ ଏବଂ ହ୍ୱାଟ୍ସଆପ୍ ଗ୍ରୁପ୍ ମାଧ୍ୟମରେ ସୂଚନା ଆଦାନପ୍ରଦାନ ଜରିଆରେ କୃଷକମାନେ ନିଜର ଜୀବିକାରେ ଉନ୍ନତି ଆଣିପାରିଛନ୍ତି । ସ୍ୱୟଂ ସହାୟକ ଗୋଷ୍ଠୀ ସହିତ ଜଡିତ ରହି ମହିଳାମାନେ ପୁରୁଷମାନଙ୍କ ସହିତ ଲିଙ୍ଗଗତ ସମାନତା ଓ ଭାଗିଦାରିତା ସଂପର୍କରେ ଜ୍ଞାନ ଆହରଣ ପୂର୍ବକ ଜଳସେଚନ ପ୍ରକଳ୍ପ ଏବଂ ଏହାର କାର୍ଯ୍ୟକଳାପ, ଜଳସେଚନ ପରିଚାଳନା ଇତ୍ୟାଦିରେ ଯୋଗଦାନ ବୃଦ୍ଧି ଘଟିଛି । ପାଣି ପଞ୍ଚାୟତରେ ମହିଳାମାନଙ୍କର ସଦସ୍ୟତାରେ ବୃଦ୍ଧି ହେବା ସହିତ ପାଣି ପଞ୍ଚାୟତର ଚକ ନେତା କିମ୍ବା ଅଫିସ କର୍ମକର୍ତ୍ତା ହେବାରେ ମଧ୍ୟ ସେମାନଙ୍କର ଭାଗିଦାରିତା ବୃଦ୍ଧି ଘଟିଛି । ପାଣି ପଞ୍ଚାୟତ ବୈଠକରେ ମହିଳାମାନଙ୍କର ଅଂଶଗ୍ରହଣ, କେନାଲ ପ୍ରଣାଳୀରେ ମହିଳା କୃଷକଙ୍କ ମିଳିତ ପଦଯାତ୍ରା ପାଣି ପଞ୍ଚାୟତ କାର୍ଯ୍ୟଧାରାକୁ ଅଧିକ ସୁଦୃଢ କରିବା ସହ ରେଙ୍ଗାଲୀ ଜଳସେଚନ ପ୍ରକଳ୍ପ-୨ୟ ପର୍ଯ୍ୟାୟ ଅଧୀନ ଅଞ୍ଚଳରେ କୃଷି କ୍ଷେତ୍ରରେ ରୂପାନ୍ତରଣ ପରିଲକ୍ଷିତ ହୋଇଛି ।



# ସାଧାରଣତନ୍ତ୍ର ଦିବସ –୨୦୨୪ ଅବସରରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ

# ଶ୍ରୀ ରଘୁବର ଦାସଙ୍କ ବାର୍ତ୍ତା



ପ୍ରିୟ ଭଉଣୀ ଓ ଭାଇମାନେ,

ସାଧାରଣତନ୍ତ୍ର ଦିବସ–୨୦୨୪ର ଏହି ମହାର୍ଘ ମୁହୂର୍ତ୍ତରେ ମୁଁ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି । ଐତିହାସିକ ଦୃଷ୍ଟିକୋଣରୁ ଜାନୁଆରୀ ୨୬ ତାରିଖ ଆମ ସମସ୍ତଙ୍କ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆମ ଦେଶ ଓ ଜାତି ପାଇଁ ଏହା ଏକ ସ୍ମରଣୀୟ ଦିବସ ଏବଂ ପ୍ରତ୍ୟେକ ଭାରତୀୟମାନଙ୍କ ଜୀବନରେ ଏହାର ତାତ୍ପର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ । ଆମ ଦେଶ ଓ ଜାତି ପାଇଁ ଏହି ଦିବସ ଗର୍ବ ଓ ଗୌରବ ବହନ କରିବା ସହିତ ଆନନ୍ଦ ଓ ଉଲ୍ଲାସର ପର୍ବ । ଏହି ଜାତୀୟ ଦିବସର ମୂଲ୍ୟବୋଧ ଅଗଣିତ ଜନତାଙ୍କ ମନରେ ଭ୍ରାତୃଭାବ, ଦେଶାତ୍ମବୋଧ ଓ ଜାତୀୟତାର ମହାମନ୍ତ୍ର ଭରିଦେଇଛି । ନଭେମ୍ବର ୨୬, ୧୯୪୯ ମସିହାରେ ଭାରତୀୟ ସମ୍ବିଧାନ ଗୃହୀତ ହୋଇଥିଲା ଏବଂ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଏହା କାର୍ଯ୍ୟକାରୀ ହୋଇଥିଲା । ଏହି ଦିନ ଭାରତ ଏକ ସାର୍ବଭୌମ, ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ସ୍ୱୀକୃତିଲାଭ କରିଥିଲା । ଏହି ପବିତ୍ର ଜାତୀୟ ଦିବସ ପାଳନ କରିବା ବେଳେ ଆମର ଗଣତାନ୍ତ୍ରିକ ମୂଲ୍ୟବୋଧ ଏବଂ ଏହାର ଆଦର୍ଶ ଓ ମହତ୍ତ୍ୱକୁ ସର୍ବଦା ସ୍ମରଣ କରିବାକୁ ହେବ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ପରାଧୀନତାରୁ ମୁକ୍ତିଲାଭ କରି ସ୍ୱାଧୀନତା ହାସଲ କରିଥିଲା, କିନ୍ତୁ ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଭାରତୀୟମାନଙ୍କ ବହୁ ଦିନର ସ୍ୱପ୍ନକୁ ସଫଳ କରି ଭାରତବର୍ଷକୁ ଏକ ସାର୍ବଭୌମ, ଗଣତାନ୍ତ୍ରିକ ଏବଂ ସାଧାରଣତନ୍ତ୍ର ରାଷ୍ଟ୍ର ଭାବେ ସମଗ୍ର ବିଶ୍ୱରେ ପରିଚିତ କରାଇଦେଲା । ଭାରତର ସମ୍ବିଧାନ ହେଉଛି ଆମ ଦେଶର ସର୍ବୋଚ୍ଚ ନୀତିନିର୍ଦ୍ଧାରକ । ଆମ ଭାରତୀୟ ସମ୍ବିଧାନ ମାର୍ଗଦର୍ଶକ ରୂପେ ଶାସନ ବ୍ୟବସ୍ଥାକୁ ପରିଚାଳିତ କରିଆସିଛି । ମୌଳିକ ରାଜନୈତିକ ବିଧାନ, ସାଙ୍ଗଠନିକ ବିଧିବ୍ୟବସ୍ଥା, କ୍ଷମତା ଓ ସରକାରୀ ପ୍ରତିଷ୍ଠାନଗୁଡିକର କର୍ତ୍ତବ୍ୟ ଏବଂ ମୌଳିକ ଅଧିକାର, ସ୍ୱତନ୍ତ୍ର ନିର୍ଦ୍ଦେଶାବଳୀ ଏବଂ ନାଗରିକର କର୍ତ୍ତବ୍ୟସମୂହ ସମ୍ପର୍କରେ ବିଭିନ୍ନ ଆଇନ ସମ୍ବଳିତ ଦସ୍ତାବିଜ ହେଉଛି ଆମ ସମ୍ବିଧାନ । ସମ୍ବିଧାନର ମହତ ଆଦର୍ଶ, ମୂଲ୍ୟବୋଧ ଓ ନୈତିକତାକୁ ଆମେ ସମସ୍ତେ ଅନୁପାଳନ କରିବା ଉଚିତ ।

ଆଜି ଏହି ସ୍ମରଣୀୟ ଦିବସରେ ଆମ ସାଧାରଣତନ୍ତ୍ରର ମୁଖ୍ୟ ବିନ୍ଧାଣି ତଥା ସମ୍ବିଧାନ ପ୍ରଣେତାମାନଙ୍କୁ ସେମାନଙ୍କ ବହୁମୂଲ୍ୟ ଅବଦାନ ପାଇଁ ଗଭୀର କୃତଜ୍ଞତା ଜ୍ଞାପନ କରିବା ସଙ୍ଗେସଙ୍ଗେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇଥିବା ମହାମନୀଷୀମାନଙ୍କୁ ସେମାନଙ୍କ ତ୍ୟାଗ ଓ ତିତିକ୍ଷା ପାଇଁ ସେମାନଙ୍କ ପ୍ରତି ଆମର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ।

ସେହିପରି ମାତୃଭୂମିର ଗୌରବ ରକ୍ଷା କରିଥିବା ପ୍ରାତଃସ୍ମରଣୀୟ ଅମର ଶହୀଦମାନଙ୍କୁ ମଧ୍ୟ ଦେଶବାସୀ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହ କୃତଜ୍ଞତା ନିବେଦନ କରିବା ଉଚିତ ।

ଯେଉଁମାନଙ୍କ ଅପୂର୍ବ ସାହସ ଓ ତ୍ୟାଗ ବଳରେ ଆମେ ବିଦେଶୀ ଶାସନ କବଳରୁ ମୁକ୍ତି ପାଇ ସ୍ୱାଧୀନତା ହାସଲ କଲେ, ଆଜି ଏହି ପବିତ୍ର ଅବସରରେ ଓଡ଼ିଶାର ସେହି ମହାନ୍ ଦେଶପ୍ରେମୀ ଓ ଯଶସ୍ୱୀ ବରପୁତ୍ରମାନଙ୍କୁ ସକୃତଜ୍ଞ ସ୍ମରଣ କରୁଛୁ ।

ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅନେକାନେକ ଦେଶପ୍ରେମୀ, ସଂଗ୍ରାମୀ ଓ ନେତୃବୃନ୍ଦଙ୍କ ଅକ୍ଳାନ୍ତ ସାଧନା ଓ ଆତ୍ମବଳିଦାନ ଫଳରେ ପରାଧୀନ ଭାରତବର୍ଷ ସ୍ୱାଧୀନ ହୋଇଥିଲା ।

ଅନେକ ବିଶିଷ୍ଟ ରାଜନୀତିଜ୍ଞ, ଆଇନ୍ ବିଶେଷଜ୍ଞ ଓ ଶିକ୍ଷାବିତ୍ ସମ୍ବିଧାନ ପ୍ରଣୟନ କମିଟିର ସଭ୍ୟ ଥିଲେ । ସ୍ୱାଧୀନ ଭାରତର ପ୍ରଥମ ଆଇନ ମନ୍ତ୍ରୀ ଡଃ. ବାବାସାହେବ ଭୀମରାଓ ଆମ୍ବେଦକର ଏଥିରେ ଅଧ୍ୟକ୍ଷତା କରିଥିଲେ । ତାଙ୍କୁ ଭାରତୀୟ ସମ୍ବିଧାନର ଜନକ ବୋଲି ଅଭିହିତ କରାଯାଏ ।

ଓଡ଼ିଶା ଭାରତର ଏକ ଗୁରୁତ୍ୱପୂର୍ଣ୍ଣ ରାଜ୍ୟ ହେବା ସଙ୍ଗେ ସଙ୍ଗେ ସମଗ୍ର ଦେଶର ସାଂସ୍କୃତିକ ପଟ୍ଟଭୂମିରେ ଏହା ନିଜର ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିପାରିଛି । ଅର୍ଥନୈତିକ ଏବଂ ଯୁବଗୋଷ୍ଠୀର ଦକ୍ଷତା କ୍ଷେତ୍ରରେ ଓଡ଼ିଶା ସମଗ୍ର ଦେଶର ରୂପାନ୍ତରଣ ପ୍ରକ୍ରିୟାରେ ବିକାଶର ଗାଥା ସୃଷ୍ଟି କରିଛି । ଆମ ଶ୍ରୀଜଗନ୍ନାଥ ସଂସ୍କୃତି ଯାହାକି ସର୍ବଧର୍ମ ସମନ୍ୱୟର ସଙ୍ଗମସ୍ଥଳୀର ପ୍ରତୀକ ଓଡ଼ିଶାକୁ ଶାନ୍ତି ଓ ମୈତ୍ରୀର ଭୂଖଣ୍ଡ ଭାବେ ଗଢ଼ିତୋଳିଛି ।

ଓଡ଼ିଶାର ସାଂସ୍କୃତିକ ପରମ୍ପରାର ଏକ ନୂଆ ଯୁଗ ପ୍ରବର୍ତ୍ତନ ହୋଇଛି । ଶ୍ରୀମନ୍ଦିର ଐତିହ୍ୟ କରିଡ଼ର ପ୍ରକଳ୍ପର ଶୁଭାରମ୍ଭ ଅଗଣିତ ଜଗନ୍ନାଥପ୍ରେମୀ ଏବଂ ଭକ୍ତମାନଙ୍କ ନିମନ୍ତେ ଏକ ଦିବ୍ୟ ଅନୁଭୂତି ପ୍ରଦାନ କରିଛି । ସେହିପରି ସମଲେଇ ପ୍ରକଳ୍ପ ଲୋକାର୍ପଣ କାର୍ଯ୍ୟ ସମାପନ ହୋଇଯାଇଛି । ଓଡ଼ିଆ ବିଶ୍ୱବିଦ୍ୟାଳୟ କାର୍ଯ୍ୟକ୍ଷମ ହେବା ସଙ୍ଗେ ସଙ୍ଗେ ନିକଟ ଭବିଷ୍ୟତରେ ରାଜ୍ୟର ପ୍ରଥମ ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀ ଅନୁଷ୍ଠିତ ହେବାକୁ ଯାଉଛି ।

ବିପୁଳ ପ୍ରାକୃତିକ ସମ୍ପଦ ଏବଂ ଏକ ଅନୁକୂଳ ତଥା ଅଭିବୃଦ୍ଧିକାରକ ବାତାବରଣ ସହ ଏକ ସୁଦୃଢ଼ ତଥା ଦୂରଦୃଷ୍ଟିସଂପନ୍ନ ସରକାର ରାଜ୍ୟ ଓ ରାଜ୍ୟବାସୀଙ୍କ ପ୍ରଗତି ନିମନ୍ତେ ପର୍ଯ୍ୟାପ୍ତ ସୁଯୋଗ ଆଣିଦେଇଛନ୍ତି । ସାମର୍ଥ୍ୟରେ ଭରା ଓଡିଶା ଏବଂ ସମାବେଶୀ ବିକାଶ ଲକ୍ଷ୍ୟରେ ବିଗତ ବର୍ଷଗୁଡ଼ିକରେ ରାଜ୍ୟରେ ଅନେକ ଜନମଙ୍ଗଳକର ଯୋଜନାର ସଫଳ ରୂପାୟନ ହୋଇପାରିଛି ।

କାହାକୁ ବାଦ୍ ନ ଦେଇ, ସମାନ ଏବଂ ସମାବେଶୀ ବିକାଶ ଲକ୍ଷ୍ୟରେ ପ୍ରତିବଦ୍ଧତାର ସହ ରାଜ୍ୟ ସରକାରଙ୍କ ୫–ଟି କାର୍ଯ୍ୟକ୍ରମ ପ୍ରଶାସନିକ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ଆଣିପାରିଛି ।

ଦ୍ରୁତ ଅଭିବୃଦ୍ଧି ଲକ୍ଷ୍ୟରେ ରାଜ୍ୟ ସରକାର ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିଛନ୍ତି ଏବଂ ଗଣତନ୍ତ୍ରର ସୁଦୃଢ଼ିକରଣ ପାଇଁ ତୃଣମୂଳ ସ୍ତରରେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ସଶକ୍ତ କରିବା ନିମନ୍ତେ ନିରନ୍ତର ପ୍ରୟାସ ଜାରି ରଖିଛନ୍ତି ।

ରାଜ୍ୟ ସରକାର କୃଷକ, ଅନୁସୂଚିତ ଜନଜାତି ଓ ଜାତି ଏବଂ ସମାଜର ଦୁର୍ବଳ ବର୍ଗଙ୍କ ସାମାଜିକ ଓ ଆର୍ଥିକ ବିକାଶ ନିମନ୍ତେ ବିଭିନ୍ନ ଯୋଜନା ମାଧ୍ୟମରେ ପ୍ରତିବଦ୍ଧତାର ସହ ଉଦ୍ୟମ କରିଛନ୍ତି ।

ମିଶନ ଶକ୍ତି ଏକ ଆନ୍ଦୋଳନରେ ପରିଣତ ହୋଇଛି ଏବଂ ଏହା ସାମାଜିକ କ୍ଷେତ୍ରରେ ବିରାଟ ପରିବର୍ତ୍ତନ ଆଣିପାରିଛି । ସଶକ୍ତ ମହିଳାମାନେ ଉଦ୍ୟୋଗୀ ପଥରେ ଅଗ୍ରସର ହେଉଛନ୍ତି । କୃଷି, ଶିଳ୍ପ ବିକାଶ ଏବଂ ଅର୍ଥନୀତି

କ୍ଷେତ୍ରରେ ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟ ରୂପେ ଜାତୀୟ ସ୍ତରରେ ସ୍ୱୀକୃତି ହାସଲ କରିଛି । ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା, ଆମ ହସ୍ପିଟାଲ, ଉନ୍ନତମାନର ସ୍ୱାସ୍ଥ୍ୟସେବା ଓ ଜନସ୍ୱାସ୍ଥ୍ୟ ସୁରକ୍ଷା ଦିଗରେ ସୁପରିଣାମ ଆଣିପାରିଛି ।

ବିଗତ ୨୪ ବର୍ଷ ମଧ୍ୟରେ ଓଡ଼ିଶା ଖାଦ୍ୟଶସ୍ୟ ଏବଂ ବିଦ୍ୟୁତ୍‌ଶକ୍ତିର ବଳକା ରାଜ୍ୟ ଭାବେ ଉଭା ହୋଇଛି । ବିପୁଳ ପରିମାଣର ଇସ୍ପାତ୍ ଉତ୍ପାଦନ କରି ଓଡ଼ିଶା ଆଜି ପ୍ରଗତିର ରୂପାନ୍ତରଣ ଯାତ୍ରାରେ ନୂତନ ଶିଖର ଛୁଇଁପାରିଛି । ଯେତେବେଳେ ସମଗ୍ର ବିଶ୍ୱ କୋଭିଡ଼ରେ ଆଚ୍ଛାଦିତ ଥିଲା, ସେତେବେଳେ ଓଡ଼ିଶା ଅନ୍ୟ ରାଜ୍ୟମାନଙ୍କୁ ଅମ୍ଳଜାନ ଯୋଗାଇ ଦେବାରେ ସକ୍ଷମ ହୋଇଥିଲା ।

ଆମ ରାଜ୍ୟ ବର୍ତ୍ତମାନ ଏକ ଅଗ୍ରଣୀ ଦକ୍ଷତାର ହବ୍ ଭାବରେ ଉଭା ହୋଇଛି । ରାଜ୍ୟକୁ ଦ୍ରୁତ ବିକାଶ ପଥରେ ଆଗେଇ ନେବା ଲକ୍ଷ୍ୟରେ ତଥା ଶିକ୍ଷିତ ଯୁବଗୋଷ୍ଠୀଙ୍କୁ ପର୍ଯ୍ୟାପ୍ତ ନିଯୁକ୍ତି ସୁଯୋଗ ସୃଷ୍ଟି କ୍ଷେତ୍ରରେ ବିବିଧ ପଦକ୍ଷେପ, ଜନହିତକର ଯୋଜନାମାନ ଓ ବିଶ୍ୱ ଦକ୍ଷତା କେନ୍ଦ୍ର ସହାୟକ ହୋଇଛି । ଷ୍ଟାର୍ଟ–ଅପ୍‌ର ଏକ ଅନୁକୂଳ ବାତାବରଣ ସୃଷ୍ଟି ଲକ୍ଷ୍ୟ ରଖି ରାଜ୍ୟ ସରକାର ନିରନ୍ତର ଭାବରେ ପ୍ରୋତ୍ସାହନ ଯୋଗାଇ ଚାଲିଛନ୍ତି ଏବଂ ରାଜ୍ୟର ଦକ୍ଷ ଯୁବଗୋଷ୍ଠୀଙ୍କୁ ଆକୃଷ୍ଟ କରିପାରିଛନ୍ତି ।

ଦକ୍ଷତା ବିକାଶ, ପ୍ରତିଭା ବିକାଶ ଏବଂ ଉଦ୍ୟୋଗୀକରଣ ବିକାଶ କ୍ଷେତ୍ରରେ ଓଡ଼ିଶା ଅଗ୍ରଣୀ ରାଜ୍ୟରେ ପରିଣତ ହୋଇଛି ।

ରାଜ୍ୟ ସରକାର ଶୁଷ୍କ ଜମିରେ ଜଳସେଚନ ସୁବିଧା ବ୍ୟାପକ କରିଛନ୍ତି । ୨୭୨୩ କୋଟି ଟଙ୍କା ବ୍ୟୟରେ ରାଜ୍ୟରେ ଲୋୟର ସୁକ୍‌ତେଲ ପ୍ରକଳ୍ପ କାର୍ଯ୍ୟାନ୍ୱୟନ କରାଯାଇଛି ଏବଂ ଏହାଦ୍ୱାରା ବଲାଙ୍ଗିର ଓ ସୁବର୍ଣ୍ଣପୁର ଜିଲ୍ଲାର ୧ ଲକ୍ଷ ଏକର ଚାଷଜମି ଜଳସେଚିତ ହେବା ସହ ୮୦ ହଜାର କୃଷକ ଏଥିରୁ ଉପକୃତ ହେବେ ।

ପଶ୍ଚିମ ଓଡ଼ିଶାର କୃଷିକ୍ଷେତ୍ରର ବ୍ୟାପକ ଉନ୍ନତି ଲକ୍ଷ୍ୟରେ ହୀରାକୁଦ ଜଳଭଣ୍ଡାରରୁ ଜଳଆଣି ବରଗଡ଼ ଜିଲ୍ଲାର ବ୍ୟାପକ ଚାଷଜମିକୁ ଜଳସେଚିତ କରିବା ଲକ୍ଷ୍ୟରେ ନିର୍ମାଣାଧୀନ ଅଭିନବ ବୃହତ୍ ଜଳସେଚନ ପ୍ରକଳ୍ପ ଏକ ମାଇଲ୍‌ଖୁଣ୍ଟ ସଦୃଶ ।

ସହରାଞ୍ଚଳ ବିକାଶ ଲକ୍ଷ୍ୟରେ, ରୋଜଗାର ସୃଷ୍ଟିକାରୀ ଯୋଜନା 'ମୁକ୍ତା' କାର୍ଯ୍ୟକାରିତା ସହ କଠିନ ବର୍ଜ୍ୟବସ୍ତୁ ପରିଚାଳନା ସମେତ ପରିମଳ, ଡ୍ରିଙ୍କ୍ ଫ୍ରମ୍ ଟ୍ୟାପ୍ ପରି ଯୋଜନା କାର୍ଯ୍ୟକାରୀ ହେଉଛି । ଏ ପର୍ଯ୍ୟନ୍ତ ଏହି ଡ୍ରିଙ୍କ୍ ଫ୍ରମ୍ ଟ୍ୟାପ୍ ଯୋଜନା ସାରା ଦେଶରେ ଅନନ୍ୟ ସାବ୍ୟସ୍ତ ହୋଇଛି ।

ଲକ୍ଷ୍ମୀ ବସ୍ ସେବା ଯୋଜନା ଆଭ୍ୟନ୍ତରୀଣ ଗ୍ରାମାଞ୍ଚଳ ଓଡିଶାରେ ଯୋଗାଯୋଗ କ୍ଷେତ୍ରରେ ବୈପ୍ଳବିକ ରୂପାନ୍ତର ଆଣିପାରିଛି । ଗ୍ରାମୀଣ ବସ୍ ଯାତ୍ରୀଙ୍କ ଯାତାୟାତ ସୁବିଧା, ବ୍ୟବସାୟ ନିମନ୍ତେ ଜିନିଷ ପରିବହନକୁ ଏହା ସୁବ୍ୟବସ୍ଥିତ କରିପାରିଛି ।

ସାଧାରଣତନ୍ତ୍ର ଦିବସ ଆତ୍ମସମୀକ୍ଷା ଓ ସଂକଳ୍ପର ଦିନ । ଆମେ ନେଇଥିବା ସଂକଳ୍ପ ଆଜି କେତେଦୂର ସଫଳ ହୋଇପାରିଛି, ତାହାର ଅନୁଶୀଳନ କରିବା ଏହି ଦିବସର ମହତ ଉଦ୍ଦେଶ୍ୟ । ଏହି ମହାନ ଦେଶର ଗର୍ବିତ ନାଗରିକ ଭାବେ ଏବଂ ଐତିହାସିକ ଭୂମି ଉତ୍କଳ ତଥା ଆଧୁନିକ ଓଡିଶାର କର୍ତ୍ତବ୍ୟ ପରାୟଣ ନାଗରିକ ରୂପେ ଏକତା ମନ୍ତ୍ରରେ ବାନ୍ଧି ହୋଇ ଗଣତାନ୍ତ୍ରିକ ମୂଲ୍ୟବୋଧ ସହ ଆମର କର୍ତ୍ତବ୍ୟ ସମ୍ପାଦନ କରିଚାଲିବା । ସଭିଏଁ ଏକତ୍ରିତ ହୋଇ ଦେଶକୁ ପ୍ରଗତିର ସର୍ବୋଚ୍ଚ ଶିଖରରେ ପହଞ୍ଚାଇବା ଓ ସର୍ବବିଧ ଉନ୍ନତି ସାଧନ ଲକ୍ଷ୍ୟ ରଖି ଆଗେଇଯିବା ନିମନ୍ତେ ମୁଁ ଆହ୍ୱାନ କରୁଛି ।

**ଜୟ ହିନ୍ଦ୍ ।**



# ସାଧାରଣତନ୍ତ୍ର ଦିବସ –୨୦୨୪ ଅବସରରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ **ଶ୍ରୀ ନବୀନ ପଟ୍ଟନାୟକଙ୍କ ବାର୍ତ୍ତା**



ସାଧାରଣତନ୍ତ୍ର ଦିବସ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ଏହି ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ, ଡଃ ବି.ଆର. ଆମ୍ବେଦକର, ଡଃ ରାଜେନ୍ଦ୍ର ପ୍ରସାଦ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ସହିଦ୍ ଲକ୍ଷ୍ମଣ ନାଏକ, ବୀର ସୁରେନ୍ଦ୍ର ସାଏ, ମା' ରମାଦେବୀ, ମାଳତୀ ଚୌଧୁରୀ, ଡଃ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଓ ପାର୍ବତୀ ଗିରିଙ୍କ ପରି ମହାନ୍ ସଂଗ୍ରାମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶର ଶାନ୍ତି ଓ ସୁରକ୍ଷା ପାଇଁ ଶହୀଦ ହୋଇଥିବା ଆମର ଯବାନମାନଙ୍କ ପ୍ରତି ମଧ୍ୟ ଏହି ଅବସରରେ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆମ ଦେଶ ମହାତ୍ମା ଗାନ୍ଧୀ, ସୁଭାଷଙ୍କ ଦେଶ । ସତ୍ୟ, ଶାନ୍ତି ଅହିଂସା ନ୍ୟାୟ, ସମତା ଓ ବିକାଶର ରାସ୍ତାରେ ଆମେ ଚାଲୁଛୁ ।

ଆଜି ବିଭିନ୍ନ କ୍ଷେତ୍ରରେ ବିଶ୍ୱ ଦରବାରରେ ଭାରତର ପ୍ରତିଷ୍ଠା ବୃଦ୍ଧି ପାଉଛି ।

ଦେଶର ବିକାଶରେ ସବୁ ରାଜ୍ୟର ଅବଦାନ ରହିଛି । ଆମ ଓଡ଼ିଶାର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଗତ କୋଡ଼ିଏ ବର୍ଷ ମଧ୍ୟରେ ଓଡ଼ିଶା ବିକାଶର ସବୁ କ୍ଷେତ୍ରରେ ନୂଆ ଇତିହାସ ସୃଷ୍ଟି କରିଛି । ଓଡ଼ିଶା ରୂପାନ୍ତର ପଥରେ ଆଗେଇ ଚାଲିଛି । ଓଡ଼ିଶାର ବିକାଶ ଅନ୍ୟମାନଙ୍କ ଆଦର୍ଶ ହୋଇଛି ।

ମହାପ୍ରଭୁ ଜଗନ୍ନାଥ ଓଡ଼ିଆ ଜାତିର ଶ୍ରେଷ୍ଠ ପରିଚୟ । ତାଙ୍କ ଇଚ୍ଛାରେ ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ ସମ୍ପୂର୍ଣ୍ଣ ହୋଇଛି ।

ସମଲେଇ ପ୍ରକଳ୍ପ ମଧ୍ୟ ଖୁବ୍ ଶୀଘ୍ର ଲୋକାର୍ପିତ ହେବାକୁ ଯାଉଛି । ଆମର କୀର୍ତ୍ତି ହେଉଛି ଆମ ସ୍ୱାଭିମାନ ଓ ଅସ୍ମିତାର ପରିଚୟ । ସତ୍ୟବାଦୀଠାରେ ଓଡ଼ିଆ ବିଶ୍ୱବିଦ୍ୟାଳୟର ନୂତନ କ୍ୟାମ୍ପସ୍ ଲୋକାର୍ପିତ ହୋଇଛି । ଓଡ଼ିଆ ଭାଷା ସାହିତ୍ୟର ଅଭିବୃଦ୍ଧି କ୍ଷେତ୍ରରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ।

ଓଡ଼ିଶାର ଅର୍ଥନୈତିକ ବିକାଶ ଖୁବ୍ ପ୍ରଭାବୀ ଅଛି । ଜାତୀୟ ହାରଠାରୁ ଅଧିକ ଅଛି । ଗରିବୀ କମ୍ କରିବାରେ ଓଡ଼ିଶା ଏକ ଶ୍ରେଷ୍ଠ ପ୍ରଦର୍ଶକ । ନିତି ଆୟୋଗ ରିପୋର୍ଟ କହୁଛି ଗତ ନଅ ବର୍ଷ ମଧ୍ୟରେ ଏକ କୋଟିରୁ ଅଧିକ ଲୋକ ଗରିବୀରୁ ମୁକ୍ତ ହୋଇଛନ୍ତି ।

ଆମର 5T ନୀତି ଯୋଗୁଁ ପ୍ରଶାସନ ସକ୍ରିୟ ହେଉଛି । ଆମର ସବୁ ଯୋଜନାର ସୁଫଳ ଲୋକ ଠିକ୍ ଭାବେ ପାଉଛନ୍ତି । ଶିକ୍ଷାଠାରୁ ଆରମ୍ଭ କରି ସ୍ୱାସ୍ଥ୍ୟ ଯୋଗାଯୋଗ ଜଳସେଚନ ପରିବହନ କ୍ରୀଡ଼ା ସବୁ କ୍ଷେତ୍ରରେ ରୂପାନ୍ତର ଓଡ଼ିଶାର ବିକାଶକୁ ଉଜ୍ଜ୍ୱଳ କରିଛି ।

ମୋ ସରକାର ଗାଁକୁ ବିକାଶର କେନ୍ଦ୍ର କରିଛି । ଆମ ଓଡ଼ିଶା ନବୀନ ଓଡ଼ିଶା କାର୍ଯ୍ୟକ୍ରମରେ ଗାଁ ଗାଁରେ ଜଗନ୍ନାଥ ସଂସ୍କୃତିର ସୁରକ୍ଷା, ପ୍ରସାର କରାଯାଉଛି । ଗାଁରେ ଡିଜିଟାଲ ଭିତ୍ତିଭୂମିର ବିକାଶ କରାଯାଉଛି । ଲକ୍ଷ୍ମୀ ବସ୍ ଯୋଜନା ଗାଁରେ ଯୋଗାଯୋଗ କ୍ଷେତ୍ରରେ ରୂପାନ୍ତର ଆଣିଛି । ଗାଁର ସାମାଜିକ ଅର୍ଥନୈତିକ ବ୍ୟବସ୍ଥାକୁ ଏହା ନୂଆ ଜୀବନ ଦେଇଛି ।

ଚାଷ ଓ ଚାଷୀର ଉନ୍ନତି ପାଇଁ ମୁଁ ସବୁବେଳେ ଗୁରୁତ୍ୱ ଦେଇ ଆସିଛି ।

ମା'ମାନେ କେବଳ ପରିବାର ନୁହେଁ ଆମ ସମାଜର ଶକ୍ତି । ମିଶନ ଶକ୍ତି ଆଜି ୭୦ ଲକ୍ଷ ମା'ମାନଙ୍କୁ ବିକାଶର ସହଭାଗୀ କରିଛି । ମା'ମାନଙ୍କ ଉପରେ ମୋର ଖୁବ୍ ଭରସା ଅଛି ।

ଷ୍ଟାର୍ଟ ଅପ୍ କ୍ଷେତ୍ରରେ ଆଜି ଓଡ଼ିଶା ରାଜ୍ୟମାନଙ୍କ ମଧ୍ୟରେ ଶୀର୍ଷରେ । ଭାରତ ସରକାରଙ୍କଠାରୁ ଏଥିପାଇଁ ଆମେ ପୁରସ୍କାର ପାଇଛୁ । ଶିଳ୍ପ, ସୂଚନା ପ୍ରଯୁକ୍ତି, ଷ୍ଟାର୍ଟ ଅପ୍ ସବୁଥିରେ ଓଡ଼ିଶା ଏବେ ଆଗରେ ରହିଛି । ଆମର ନୀତି ଏବଂ ଯୁବ ସମାଜର ପାରଦର୍ଶିତା ଯୋଗୁଁ IBM, Deloitte, Accenture, Cognizant ଭଳି ବହୁରାଷ୍ଟ୍ରୀୟ କମ୍ପାନି ସେମାନଙ୍କର ସଂସ୍ଥାଗୁଡ଼ିକ ପ୍ରତିଷ୍ଠା ପାଇଁ ଓଡ଼ିଶାକୁ ପସନ୍ଦ କରୁଛନ୍ତି ।

ସବୁ ଜୀବନ ମୂଲ୍ୟବାନ । ଏହି ନୀତିରେ ଆମର ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ବହୁତ ଭଲ କାମ କରୁଛି । ଏହାକୁ ଆଗକୁ ନେଇ ଆମେ BSKY ନବୀନ କାର୍ଡ ଆରମ୍ଭ କରିଛୁ । ଏହାଦ୍ୱାରା ରାଜ୍ୟର ଚାରି କୋଟିରୁ ଅଧିକ ଲୋକଙ୍କ ଚିକିତ୍ସା ଚିନ୍ତା ଦୂର ହୋଇଛି ।

ଆମର ବିକାଶ Model ସମସ୍ତଙ୍କ ପାଇଁ ସୁଯୋଗ ଆଣିଛି । ସମସ୍ତେ ବିକାଶର ସହଭାଗୀ ହୋଇଛନ୍ତି । ସମସ୍ତଙ୍କ ସହଯୋଗରେ ଓଡ଼ିଶା ଆଗକୁ ବଢୁଛି । ସମସ୍ତଙ୍କ ସହଯୋଗରେ ଆମେ ନୂଆ ଓଡ଼ିଶା ଗଢ଼ିବା । ଆମ ଓଡିଶା ହେବ ଶ୍ରେଷ୍ଠ ଓଡ଼ିଶା । ସଶକ୍ତ ଓଡିଶା ।

**ଜୟ ହିନ୍ଦ୍ ।**
**ବନ୍ଦେ ଉତ୍କଳ ଜନନୀ ।**



# ସାଧାରଣତନ୍ତ୍ର ଦିବସ– ୨୦୨୪ ଅବସରରେ ଓଡ଼ିଶାର ମାନ୍ୟବର ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ **ଶ୍ରୀ ପ୍ରଦିପ କୁମାର ଅମାତଙ୍କ** ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ପବିତ୍ର ୭୫ତମ ସାଧାରଣତନ୍ତ୍ର ଦିବସ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ମୁଁ ଆନ୍ତରିକ ଶୁଭେଚ୍ଛା ଏବଂ ଅଭିନନ୍ଦନ ଜଣାଉଛି ।

ଅଗଣିତ ସ୍ୱାଧୀନତା ସଂଗ୍ରାମୀଙ୍କ ଅଦମ୍ୟ ସାହସ ଓ ବଳିଦାନର ଫଳସ୍ୱରୂପ ଆମ ପ୍ରିୟ ମାତୃଭୂମି ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ବହୁ ପ୍ରତୀକ୍ଷିତ ସ୍ୱାଧୀନତା ହାସଲ କରଥିଲା । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଭାରତୀୟ ସମ୍ବିଧାନ ବିଧିବଦ୍ଧ ଭାବେ କାର୍ଯ୍ୟକାରୀ ହୋଇଥିଲା ଏବଂ ଭାରତ ଏକ ସାର୍ବଭୌମ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ ହୋଇଥିଲା । ତେଣୁ ଆଜିର ଦିବସ ହେଉଛି ପ୍ରତି ଭାରତୀୟଙ୍କ ପାଇଁ ସ୍ମରଣୀୟ ଏବଂ ସଂକଳ୍ପର ଦିବସ ।

ଆଜିର ଏହି ଐତିହାସିକ ଦିବସରେ ମୁଁ ଜାତିରଜନକ ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ପଣ୍ଡିତ ଜବାହରଲାଲ ନେହେରୁ, ବାବାସାହେବ ଡ. ଭୀମରାଓ ଆମ୍ବେଦକର, ମୌଲାନା ଅବୁଲ କଲାମ ଆଜାଦ୍, ବୀର ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ, ଉତ୍କଳମଣି ଗୋପବନ୍ଧୁ ଦାସ, ସହିଦ୍ ବାଜି ରାଉତଙ୍କ ପରି ମହାନ୍ ସଂଗ୍ରାମୀଙ୍କ ସହିତ ଶହୀଦ ବୀର ଯବାନ ଓ ସମ୍ବିଧାନ ପ୍ରଣେତାମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଏହି ମହାମନୀଷୀମାନେ ହେଉଛନ୍ତି ଆମର ଅସରନ୍ତି ପ୍ରେରଣାର ଉତ୍ସ ।

ସମ୍ବିଧାନ ହେଉଛି ଦେଶର ସର୍ବୋଚ୍ଚ ନୀତି ନିର୍ଦ୍ଧାରକ । ଦେଶରେ ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ନ୍ୟାୟ ପ୍ରତିଷ୍ଠା କରିବା ହେଉଛି ସମ୍ବିଧାନର ମୁଖ୍ୟ ଉଦ୍ଦେଶ୍ୟ । ଗଣତନ୍ତ୍ର ଏବଂ ଧର୍ମନିରପେକ୍ଷତା ହେଉଛି ଆମ ସମ୍ବିଧାନର ଆତ୍ମା । ସମ୍ବିଧାନର ମହତ ନୀତି ଆଦର୍ଶକୁ ଅନୁପାଳନ କଲେ ଏହା ହେବ ଦେଶ ପ୍ରତି ସର୍ବୋଚ୍ଚ ସମ୍ମାନ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପବିତ୍ର ଭୂମି ହେଉଛି ଓଡ଼ିଶା । କଳା, ସଂସ୍କୃତି ଏବଂ ପ୍ରାକୃତିକ ସଂପଦରେ ଏହା ସମୃଦ୍ଧ । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ, ବିକାଶୋନ୍ମୁଖୀ ସରକାର, ପ୍ରାକୃତିକ ସଂପଦର ସୁବିନିଯୋଗ, ଅନୁକୂଳ ବାତାବରଣ ଏବଂ ଦକ୍ଷ ମାନବସମ୍ବଳ ରାଜ୍ୟର ବିକାଶକୁ ତ୍ୱରାନ୍ୱିତ କରିଛି ।

ବିବିଧତା ମଧ୍ୟରେ ଏକତା ହେଉଛି ଆମର ପରମ୍ପରା । ଦେଶର ଗର୍ବ, ଗୌରବ, ଏକତା ଏବଂ ସଂହତିକୁ ବଜାୟ ରଖିବା ପ୍ରତ୍ୟେକ ନାଗରିକଙ୍କର ନୈତିକ କର୍ତ୍ତବ୍ୟ ।

ଆସନ୍ତୁ, ସ୍ୱାଧୀନତା ସଂଗ୍ରାମୀଙ୍କ ତ୍ୟାଗ, ସଂଘର୍ଷ ଏବଂ ବଳିଦାନରୁ ପ୍ରେରଣା ନେଇ ସେମାନଙ୍କ ସ୍ୱପ୍ନର ବିକଶିତ ଓଡ଼ିଶା ଏବଂ ଭାରତବର୍ଷ ଗଠନ ପାଇଁ ସଂକଳ୍ପବଦ୍ଧ ହୋଇ ନିରନ୍ତର କଠିନ ପରିଶ୍ରମ କରିବା ।

**ଜୟ ହିନ୍ଦ୍ ।**



# ସମ୍ପାଦକୀୟ



ଭାରତର ସମ୍ବିଧାନ କାର୍ଯ୍ୟକାରୀ ହେବା ଓ ଦେଶ ଗଣତନ୍ତ୍ରରେ ପରିଣତ ହେବାର ଦିନକୁ ସ୍ମରଣୀୟ କରିବା ତଥା ସ୍ୱାଧୀନ ଭାରତର ସମ୍ବିଧାନକୁ ସମ୍ମାନ ଦେବା ପାଇଁ ପ୍ରତିବର୍ଷ ଜାନୁଆରୀ ୨୬ ତାରିଖରେ ଭାରତରେ ସାଧାରଣତନ୍ତ୍ର ଦିବସ ଗର୍ବ ଓ ଉତ୍ସାହର ସହ ପାଳନ କରାଯାଏ । ୧୯୫୦ ମସିହାରେ ଏହିଦିନ ହିଁ ଭାରତର ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା । ଚଳିତ ବର୍ଷ ୨୦୨୪ରେ, ଭାରତ ନିଜର ୭୫ତମ ସାଧାରଣତନ୍ତ୍ର ଦିବସ ପାଳନ କରୁଛି । 'ଏହି ଅବସରରେ, ଉତ୍କଳ ପ୍ରସଙ୍ଗ ତରଫରୁ ସମସ୍ତଙ୍କୁ ଅଶେଷ ଅଭିନନ୍ଦନ ଏବଂ ଶୁଭେଚ୍ଛା' । ଭାରତ ବିଶ୍ୱର ସର୍ବବୃହତ୍ ଏବଂ ଏକ ଶକ୍ତିଶାଳୀ ଗଣତନ୍ତ୍ର ବୋଲି ବିବେଚନା କରାଯାଏ । ସେହିପରି ଭାରତର ସମ୍ବିଧାନ ହେଉଛି ପୃଥିବୀର ସର୍ବବୃହତ୍ ଲିଖିତ ସମ୍ବିଧାନ । ବାବାସାହେବ ଡକ୍ଟର ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ପ୍ରଣୀତ ସମ୍ବିଧାନ ଭାରତକୁ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ଭାବେ ସମଗ୍ର ବିଶ୍ୱରେ ପରିଚିତ କରିପାରିଛି । 'ସମ୍ବିଧାନକୁ ଗୋଟିଏ ରାଷ୍ଟ୍ରର ଦର୍ପଣ ଭାବେ ଧରାଯାଏ । ସମ୍ବିଧାନରେ ଉଲ୍ଲିଖିତ ଧାରାଗୁଡିକ ଦେଶର ପ୍ରଶାସନ ସହିତ ଜଡ଼ିତ ବିଭିନ୍ନ କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ, ତେବେ ନାଗରିକର ଅଧିକାର ଏବଂ ଦାୟିତ୍ୱ ସମ୍ବନ୍ଧୀୟ ପ୍ରାବଧାନଗୁଡିକ ପ୍ରତ୍ୟେକ ଭାରତୀୟଙ୍କର ଜୀବନରେ ସମ୍ବିଧାନର ଏକ ସ୍ୱତନ୍ତ୍ର ମୂଲ୍ୟ ଓ ମହତ୍ୱ ବହନ କରେ । ଏକ ଗଣତାନ୍ତ୍ରିକ ରାଷ୍ଟ୍ର ପାଇଁ ସମ୍ବିଧାନ ହେଉଛି ଏକ ମୂଲ୍ୟବାନ ଦସ୍ତାବିଜ ଏବଂ ଏକ ଜୀବନ୍ତ ଗ୍ରନ୍ଥ । ସମାଜର ସ୍ୱପ୍ନ ଓ ବର୍ତ୍ତମାନର ଆବଶ୍ୟକତାକୁ ନେଇ ଏହା ସ୍ଥଳବିଶେଷରେ ପରିବର୍ତ୍ତିତ ହୋଇଛି, ତେବେ ଏହାର ମୁଖବନ୍ଧରେ ଉଲ୍ଲିଖିତ ଥିବା ଶବ୍ଦାବଳୀ ଏହାକୁ ମାନବିକତାର ଅଧିକାରର ଏକ ଶ୍ରେଷ୍ଠ ନିଦର୍ଶନ ଭାବରେ ସ୍ୱତନ୍ତ୍ର ପରିଚୟ ଦିଏ । 'ଭାରତରେ ୭୪ ବର୍ଷର ସାମ୍ବିଧାନିକ ଶାସନରେ ଆମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଅନେକ ଆହ୍ୱାନ ଓ ପ୍ରତିଆହ୍ୱାନର ସମ୍ମୁଖୀନ ହୋଇଛି ଏବଂ ସମ୍ବିଧାନ ମଧ୍ୟ ଅନେକ ଥର ସଂଶୋଧିତ ହୋଇଛି । ପରିବର୍ତ୍ତନଶୀଳ ରାଷ୍ଟ୍ରରେ ନାଗରିକଙ୍କର ଅଧିକାର ଏବଂ ଆବଶ୍ୟକତାକୁ ଚାହିଁ ସମ୍ବିଧାନର ପରିବର୍ତ୍ତନ ହେବା ଆବଶ୍ୟକ । କିନ୍ତୁ ବାରମ୍ବାର ପରିବର୍ତ୍ତନ ହେଲେ ଲୋକଙ୍କର ସମ୍ବିଧାନ ଉପରୁ ଭରସା ତୁଟିଯିବ ଏବଂ ତା'ର ମୌଳିକ ମୂଲ୍ୟବୋଧ ହରାଇ ବସିବ । ସମ୍ବିଧାନକୁ ଦଳୀୟ ସ୍ୱାର୍ଥ ବା ନୀତି ଭାବରେ ବ୍ୟବହାର ନ କରି ରାଷ୍ଟ୍ରର ସ୍ୱାର୍ଥକୁ ପ୍ରାଧାନ୍ୟ ଦେଇ ଆବଶ୍ୟକୀୟ ପରିବର୍ତ୍ତନ କରାଯାଇପାରେ । ଡକ୍ଟର ଆମ୍ବେଦକରଙ୍କ ଉକ୍ତି ଅନୁସାରେ ''ଗଣତନ୍ତ୍ର କେବଳ ଏକ ସରକାରର ରୂପ ନୁହେଁ । ଏହା ମୁଖ୍ୟତଃ ସହାବସ୍ଥାନର ଏକ ମାଧ୍ୟମ, ଏକ ସାମୂହିକ ଭାବ ବିନିମୟ ଅନୁଭୂତି । ଏହା ବସ୍ତୁତଃ ଅନ୍ୟ ସବୁ ମଣିଷଙ୍କ ପ୍ରତି ସ୍ନେହ ଓ ସମ୍ମାନବୋଧମୂଳକ ମନୋବୃତ୍ତି'' । ଗଣତନ୍ତ୍ରର ଅର୍ଥ କେବଳ ଏକ ନିର୍ଦ୍ଦିଷ୍ଟ ଶାସନ ବ୍ୟବସ୍ଥା କିମ୍ବା ନିର୍ବାଚନରେ ନାଗରିକଙ୍କ ମତଦାନ ଅଧିକାର ଅଥବା ବ୍ୟବସ୍ଥାକୁ ନିୟନ୍ତ୍ରଣ

କରିବାକୁ ବୁଝାଏ ନାହିଁ । ଗଣତନ୍ତ୍ରରେ ନାଗରିକଙ୍କ ଦୈନନ୍ଦିନ ଜୀବନରେ ଦାବି କରାଯାଉଥିବା ଅଧିକାର ଅନ୍ତର୍ଭୁକ୍ତ । ଗଣତନ୍ତ୍ରରେ ବ୍ୟକ୍ତି ନିଜର ମତ ପ୍ରକାଶ କରିବା ଏବଂ ନିଜର ନିଷ୍ପତ୍ତି ନେବାର ଅଧିକାର, ନିଷ୍ପତ୍ତି ପ୍ରକ୍ରିୟାରେ ସାମିଲ ହେବା ଏବଂ ଅନ୍ୟ କାହାର ଅଧୀନରେ ନ ରହିବାର ଅଧିକାର ରହିଛି ମଧ୍ୟ । ଦାରିଦ୍ର୍ୟ ଦୂରୀକରଣ, ଶିକ୍ଷାର ଉନ୍ନତି ଏବଂ ସମାନତା ପାଇଁ ପ୍ରୟାସ ଭଳି ଅନ୍ୟାନ୍ୟ କ୍ଷେତ୍ରରେ ବିକାଶ ସହିତ ଗଣତନ୍ତ୍ରର ବିକାଶ ଏକା ସାଙ୍ଗରେ ହୋଇଥାଏ । ଯେଉଁ ସମାଜରେ ସୂଚନା ଲୋକଙ୍କ ପାଖରେ ବ୍ୟାପକ ଭାବେ ତତ୍କାଳ ପହଞ୍ଚିପାରିବ ସେଠାରେ ଗଣତନ୍ତ୍ରକୁ ଅଧିକ ସୁଦୃଢ଼ କରାଯାଇପାରିବ । ଗଣତନ୍ତ୍ର କେବଳ ଏକ ଲକ୍ଷ୍ୟସ୍ଥଳ ନୁହେଁ ବରଂ ଏକ ନିରନ୍ତର ପ୍ରକ୍ରିୟା । ଚଳିତ ସାଧାରଣତନ୍ତ୍ର ଦିବସରେ 'ଭାରତ–ଗଣତନ୍ତ୍ରର ମାତା ଏବଂ ବିକଶିତ ଭାରତ' ପ୍ରସଙ୍ଗ ନେଇ ୨୦୨୪ ଜାନୁଆରୀ ୨୬ ତାରିଖ ୭୫ତମ ସାଧାରଣତନ୍ତ୍ର ଦିବସ ପରେଡ୍ ମହିଳାକୈନ୍ଦ୍ରିକ ହେବ । ''କର୍ତ୍ତବ୍ୟ ପଥରେ'' ଦେଶର ସମୃଦ୍ଧ ସାଂସ୍କୃତିକ ବିବିଧତା, ଏକତା ଏବଂ ପ୍ରଗତିକୁ ପ୍ରଦର୍ଶିତ କରିବା ସହ ମହିଳା ଶୋଭାଯାତ୍ରା ଦଳ ଏହି ପରେଡର ମୁଖ୍ୟ ଅଂଶ ହେବେ । ପ୍ରଥମ ଥର ପାଇଁ ଭାରତୀୟ ବାଦ୍ୟଯନ୍ତ୍ର ବଜାଇ ୧୦୦ ଜଣ ମହିଳା କଳାକାର ଏହି ପରେଡରେ ଯୋଗଦେବେ । ମହିଳା କଳାକାରଙ୍କ ଦ୍ୱାରା ଶଙ୍ଖ, ନାଦ ସ୍ୱରମ୍, ନଗଡ଼ା ଆଦି ବାଦ୍ୟଯନ୍ତ୍ର ସହିତ ସଙ୍ଗୀତ ପରିବେଷଣ ସହ ପରେଡ ଆରମ୍ଭ ହେବ । ଏଥିରେ ପ୍ରଥମ ଥର ପାଇଁ ତିନି ସେନାରୁ ମହିଳା ପଦାଧିକାରୀମାନେ ''କର୍ତ୍ତବ୍ୟ ପଥ''ରେ ପଦଯାତ୍ରା କରିବେ । ସିଏପିଏଫ୍ ବଳରେ ମହିଳା କର୍ମଚାରୀ ମଧ୍ୟ ରହିବେ । ଏହା ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ ପଦକ୍ଷେପ । ବାସ୍ତବରେ ପ୍ରକୃତ ଗଣତନ୍ତ୍ର ମାନବାଧିକାର ଏବଂ ଲିଙ୍ଗଗତ ସମାନତାର ଉପଲବ୍ଧି ଉପରେ ଆଧାରିତ । ଗଣତନ୍ତ୍ର ଦିବସ କେବଳ ଉତ୍ସବ ନୁହେଁ ବରଂ କାର୍ଯ୍ୟ ପାଇଁ ଆହ୍ୱାନ । ଏହା ମାନବିକ ଅଧିକାରର ସୁରକ୍ଷା, ନାଗରିକ ସହଭାଗିତା ଏବଂ ସମଗ୍ର ଦେଶରେ ଶାନ୍ତି ଏବଂ ସ୍ଥିରତା ସୁନିଶ୍ଚିତ କରିବାରେ ଗଣତନ୍ତ୍ରର ମହତ୍ୱକୁ ସୂଚିତ କରେ । ଅଧିକ ଗଣତାନ୍ତ୍ରିକ ତଥା ସମାବେଶୀ ଭବିଷ୍ୟତ ଗଠନ ପାଇଁ ପରବର୍ତ୍ତୀ ପିଢ଼ିକୁ ସଶକ୍ତ କରିବା ଏହାର ଅନ୍ୟତମ ଉଦ୍ଦେଶ୍ୟ । 'ଓଡିଶା ସରକାର ମାନବିକ ଅଧିକାର ସୁରକ୍ଷାକୁ କେବଳ ଏକ ସ୍ଲୋଗାନରେ ସୀମିତ ନ ରଖି ଏହାକୁ ଏକ ସଂସ୍କାରରେ ପରିଣତ କରିଛନ୍ତି ଏବଂ କରୁଛନ୍ତି ମଧ୍ୟ । ରାଜ୍ୟରେ ଚାଲିଥିବା ସୁଶାସନ ମଧ୍ୟରେ ମହିଳା, ଗରିବ, ବଞ୍ଚିତ, ବୟସ୍କ, ଭିନ୍ନକ୍ଷମ, ସଂଖ୍ୟାଲଘୁ ଏବଂ ଶୋଷିତ ସମାଜରେ ପଛୁଆ ହୋଇ ରହିଥିବା ବ୍ୟକ୍ତିମାନଙ୍କ ସମ୍ମାନକୁ ସୁନିଶ୍ଚିତ କରିବା ଏବଂ ସେମାନଙ୍କର ଜୀବନଶୈଳୀରେ ଉଲ୍ଲେଖନୀୟ ଉନ୍ନତି ଆଣିବାକୁ ସର୍ବବିଧ ପ୍ରୟାସ କରାଯାଇଛି । ଏହା ମାନବ ଅଧିକାର ସୁରକ୍ଷାକୁ ସୁନିଶ୍ଚିତ କରିବାରେ ସାହାଯ୍ୟ କରୁଛି । ବିଗତ ଦିନରେ ଯେତେସବୁ ଯୋଜନାମାନ ପ୍ରସ୍ତୁତ କରାଯାଇଛି, କାର୍ଯ୍ୟକାରୀ ହୋଇଛି, ପ୍ରତ୍ୟେକଟିର ଉଦ୍ଦେଶ୍ୟ ହେଉଛି ଲୋକଙ୍କର ହିତ ସାଧନ, ମୌଳିକ ଆବଶ୍ୟକତା ପୂରଣ ଏବଂ ଅଧିକାରକୁ ସୁନିଶ୍ଚିତ କରିବା । ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶ ପାଇଁ ଅଧିକାର ଏକ ଅପରିହାର୍ଯ୍ୟ ବାସ୍ତବତା । ଏହି ସମ୍ବିଧାନ ପ୍ରଦତ୍ତ ଅଧିକାରଗୁଡିକ ସୁରକ୍ଷିତ ତଥା ସାର୍ବଜନୀନ । ସମସ୍ତଙ୍କୁ ଶିକ୍ଷାଦାନର ସୁଯୋଗ ପ୍ରଦାନ, ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ସର୍ବୋଚ୍ଚ ମାନ ଉପଭୋଗ କରିବାର ଅଧିକାର, ସମସ୍ତଙ୍କୁ ଔଷଧ ଯୋଗାଣ, ସମସ୍ତଙ୍କ ପାଇଁ ରୋଜଗାର, ସମସ୍ତଙ୍କୁ ପର୍ଯ୍ୟାପ୍ତ ଖାଦ୍ୟ ବିଶେଷ କରି ଏକ କ୍ଷୁଧାମୁକ୍ତ ଓଡ଼ିଶା ପାଇଁ ଖାଦ୍ୟ ନିରାପତ୍ତା ଯୋଜନା ମିଆଦ ବୃଦ୍ଧି ପରି ଯୋଜନା ଓଡ଼ିଶାବାସୀଙ୍କ କଲ୍ୟାଣ ପାଇଁ ମୁଖ୍ୟମନ୍ତ୍ରୀଙ୍କ ଅଙ୍ଗୀକାରବଦ୍ଧତାର ଗୋଟିଏ ଗୋଟିଏ ଦୃଢ଼ ପ୍ରମାଣ । ମଣିଷର ଅଧିକାର ପ୍ରତିଶ୍ରୁତି ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ରହିଛି କର୍ତ୍ତବ୍ୟର ଶୃଙ୍ଖଳ । ସ୍ୱାଧୀନତା ମାନବର ଜନ୍ମଗତ ଅଧିକାର । ସ୍ୱାଧୀନ ଭାବେ ବଞ୍ଚିବାକୁ କିଏ ବା ନ ଚାହେଁ ? ସେଥିପାଇଁ ସମସ୍ତଙ୍କ ସୁରକ୍ଷା ଓ ନିରାପତ୍ତା ମଧ୍ୟ ଆବଶ୍ୟକ । ତାହା ଗଣତାନ୍ତ୍ରିକ ପ୍ରକ୍ରିୟାରେ ନିର୍ବାଚିତ ପ୍ରତ୍ୟେକ ଜନପ୍ରତିନିଧିଙ୍କର କର୍ତ୍ତବ୍ୟ । 'ପରିଶେଷରେ, ଆସନ୍ତୁ,

ନିଜର ଆତ୍ମସମୀକ୍ଷା କରିବା, ଗଣତନ୍ତ୍ରର ଏକ ଜାଗ୍ରତ ପ୍ରହରୀ ଭାବେ ସ୍ୱାଧୀନତା ଓ ସାର୍ବଭୌମତ୍ୱକୁ ଅକ୍ଷୁଣ୍ଣ ରଖିବା, ଆମ ସମ୍ବିଧାନରେ ଲିପିବଦ୍ଧ ଥିବା ସ୍ୱାଧୀନତା, ସମାନତା, ଗଣତାନ୍ତ୍ରିକ ଓ ଧର୍ମନିରପେକ୍ଷତା ମୂଲ୍ୟବୋଧର ସୁରକ୍ଷାର ଦାୟିତ୍ୱ ନେବା ଏବଂ ମାନବିକ ଅଧିକାର ସୁନିଶ୍ଚିତ କରିବା ପାଇଁ ପ୍ରତିବଦ୍ଧତାକୁ ଅଧିକ ସୁଦୃଢ କରିବା ।

ସାଧାରଣତନ୍ତ୍ର ଦିବସ ପାଳନ ଅବସରରେ, ଦେଶ ସ୍ୱାଧୀନତାରେ ସର୍ବୋଚ୍ଚ ତ୍ୟାଗ ସ୍ୱୀକାର କରିଥିବା ମହାମନୀଷୀ, ଦେଶ ଶାସନ ଖସଡ଼ା ପ୍ରସ୍ତୁତି ତଥା ସମ୍ବିଧାନ ପ୍ରଣୟନରେ ନିଜର ବୁଦ୍ଧିମତ୍ତା ପ୍ରୟୋଗ କରିଥିବା ମହାପୁରୁଷମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇବା ସହ ସେମାନେ ଦେଖିଥିବା ସ୍ୱପ୍ନକୁ ଚରିତାର୍ଥ କରିବା ପାଇଁ, ଆସନ୍ତୁ, ସାମ୍ବିଧାନିକ ପରିଧି ମଧ୍ୟରେ ନିଜନିଜର କର୍ତ୍ତବ୍ୟ ସମ୍ପାଦନା କରିବା ।

**ସମ୍ପାଦିକା**
(କସ୍ତୁରୀ ମହାପାତ୍ର)



# ରାଜ୍ୟର ପ୍ରଥମ ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀ : ଏକ ପକ୍ଷପାତ

**ଗୁରୁକଲ୍ୟାଣ ମହାପାତ୍ର**

ଆସନ୍ତା ଫେବୃଆରୀ ମାସ ୩, ୪ ଓ ୫ ତାରିଖରୁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରର ଜନତା ମଇଦାନଠାରେ ତ୍ରିଦିବସୀୟ 'ପ୍ରଥମ ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀ'ର ଆୟୋଜନ କରାଯାଉଛି । ରାଜ୍ୟ ଐତିହ୍ୟ ମନ୍ତ୍ରିମଣ୍ଡଳର ବୈଠକରେ ଓଡ଼ିଶାର ଜନପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଅଧ୍ୟକ୍ଷତା କରି ଏ ସମ୍ପର୍କରେ ନିଷ୍ପତ୍ତି ନେଇଥିବା ପ୍ରକୃତରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ।

ଗତ ଡିସେମ୍ବର ମାସ ୧୯ ତାରିଖ(୨୦୨୩)ରେ ଐତିହ୍ୟ ମନ୍ତ୍ରିମଣ୍ଡଳର ବୈଠକ ଅନୁଷ୍ଠିତ ହେବା ପରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗର ମନ୍ତ୍ରୀ ଶ୍ରୀ ଅଶ୍ୱିନୀ କୁମାର ପାତ୍ରଙ୍କ ସମେତ ରାଜ୍ୟର ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରଦୀପ ଜେନା ଓ ବିଭାଗୀୟ ଶାସନ ସଚିବ ଶ୍ରୀମତୀ ସୁଜାତା ଆର୍. କାର୍ତ୍ତିକେୟନ ଗଣମାଧ୍ୟମକୁ ସୂଚନା ଦେଇ ଏପରି ଏକ ସମ୍ମିଳନୀକୁ ସଫଳ କରିବାକୁ ନିବେଦନ କରିଛନ୍ତି ।

ଗତ ୨୦୨୦ ମସିହାରେ ମେସିନ୍ ଲାର୍ଣ୍ଣିଂର ବିଶ୍ୱ ସମ୍ମିଳନୀ ଆଭାସି ମାଧ୍ୟମରେ ଅନୁଷ୍ଠିତ ହୋଇଥିଲା । ଶ୍ରୀ ଅଞ୍ଜନ କୁମାର ପଣ୍ଡା ଏହାର ଆବାହକ ଥିଲେ । ଶ୍ରୀ ଶ୍ୟାମ ସୁନ୍ଦର ଦାସ ମଧ୍ୟ ଏଥିରେ ଅଂଶଗ୍ରହଣ କରିଥିଲେ । ଓଡ଼ିଶା ସରକାରଙ୍କ ତରଫରୁ ତତ୍କାଳୀନ ଇଲେକ୍ଟ୍ରୋନିକ୍ସ ଓ ଆଇ.ଟି.ର ଶାସନ ସଚିବ ଶ୍ରୀ ମନୋଜ କୁମାର ମିଶ୍ର ଏଥିରେ ପ୍ରତିନିଧିତ୍ୱ କରି ପ୍ରଶାସନିକ ଓ ଉଦ୍ୟୋଗ ସ୍ତରରେ ଓଡ଼ିଆ ଭାଷାର ତଥା କୃତ୍ରିମ ବୁଦ୍ଧିମତ୍ତାର ଭୂମିକା ସମ୍ପର୍କରେ ଆଲୋଚନା କରିଥିଲେ ।

ଅତୀତରେ ଓଡ଼ିଶା ବିଧାନସଭାର ପୂର୍ବତନ ବାଚସ୍ପତି ସ୍ୱର୍ଗୀୟ ଯୁଧିଷ୍ଠିର ଦାଶଙ୍କ ଅଧ୍ୟକ୍ଷତାରେ କଟକଠାରେ ବିଶ୍ୱ ଓଡ଼ିଆ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ମାତ୍ର ପରବର୍ତ୍ତୀ କାଳରେ ସେପରି ବୈଠକ ହୋଇପାରିନଥିଲା ଆଉ ବୈଠକର ଉଦ୍ଦେଶ୍ୟ ଫଳପ୍ରଦ ହୋଇପାରି ନଥିଲା ବୋଲି ମନେ ହୋଇଥିଲା ।

୧୯୬୮ ମସିହାରେ ବିଦେଶରେ ସମ୍ଭବତଃ ମାଲେସିଆର କୁଆଲାଲୁମ୍ପୁରଠାରେ ବିଶ୍ୱ ତାମିଲ ସମ୍ମିଳନୀ ପାଇଁ ଆୟୋଜନ ହୋଇଥିଲା । ଏଥିପାଇଁ ବିଶିଷ୍ଟ ଓଡ଼ିଆ ସାହିତ୍ୟିକ ତଥା ତତ୍କାଳୀନ ସଂସ୍କୃତି ବିଭାଗର ମନ୍ତ୍ରୀ ନିତ୍ୟାନନ୍ଦ ମହାପାତ୍ର ନିମନ୍ତ୍ରଣପତ୍ର ପାଇଥିଲେ । ମାତ୍ର ତାଙ୍କୁ ଯିବା ଲାଗି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଅନୁମତି ଦେଇ ନଥିଲେ । ଏ ସଂକ୍ରାନ୍ତରେ ସ୍ୱର୍ଗୀୟ ମହାପାତ୍ର ତାଙ୍କ ଆତ୍ମଜୀବନୀରେ କ୍ଷୋଭର ସହିତ ଲେଖିଛନ୍ତି, ''ମୁଁ ମନ୍ତ୍ରୀ ଥିବା ସମୟରେ ବିଶ୍ୱ ତାମିଲ ସମ୍ମିଳନୀ ପାଇଁ ଆମନ୍ତ୍ରଣ ପାଇଥିଲି । ଏହି ସମ୍ମିଳନୀ ଭାରତ ବାହାରେ ସେ ବର୍ଷ ଅନୁଷ୍ଠିତ ହେବାର ଥିଲା । ସେତେବେଳେ ମୁଁ ଜଣେ ସାଧାରଣ ମନ୍ତ୍ରୀ ହିସାବରେ ବିଦେଶକୁ ଯିବାକୁ ହେଲେ ମୁଖ୍ୟମନ୍ତ୍ରୀଙ୍କଠାରୁ ଅନୁମତି ନେବାକୁ ପଡ଼ିବ ବୋଲି ମୋର ଅଧସ୍ତନ ସେକ୍ରେଟେରୀ ନିର୍ଦ୍ଦେଶ ଦେଲେ । ତଦନୁସାରେ ମୁଁ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ ପାଇଁ ଫାଇଲ ତାଙ୍କ ନିକଟକୁ ପଠାଇଦେଲି । ସେ ନାସ୍ତି କରିଦେଲେ । ତେଣୁ ମୁଁ ସେଠାରେ ଯୋଗଦେଇ ପାରିଲି ନାହିଁ । କିନ୍ତୁ ବିଶ୍ୱ ନିଖିଳ ତାମିଲ ସମ୍ମିଳନୀର ଆଦର୍ଶରେ

ଅନୁପ୍ରାଣୀତ ହୋଇ ମୁଁ ଗୋଟାଏ All India Conference on Orissan Studies ବା ଓଡ଼ିଶାର ତତ୍ତ୍ୱ ଅଧ୍ୟୟନ ନିମନ୍ତେ ଏକ ନିଖିଳ ଭାରତୀୟ ସମ୍ମିଳନୀ ଗଠନ କରିବାକୁ ନିର୍ଦ୍ଦେଶ ଦେଇଥିଲି । ସାଂସ୍କୃତିକ କ୍ଷେତ୍ରରେ ଓଡ଼ିଶାର ଅବଦାନ ଏବଂ ସାମୁଦ୍ରିକ ସଂଚାଳନ (Maritime Activities) ସମ୍ବନ୍ଧରେ ଆଲୋକପାତ କରିବା ହିଁ ଏହାର ଲକ୍ଷ୍ୟ ଥିଲା । ଏହି ସମ୍ମିଳନୀରେ ସଭାପତିତ୍ୱ କରିବା ନିମନ୍ତେ ମାଡ୍ରାସର (ଏବେ ତାମିଲନାଡୁର) ସ୍ୱନାମଧନ୍ୟ ସଂସ୍କୃତ କ୍ଷେତ୍ରରେ ପ୍ରବୀଣ ଅଧ୍ୟାପକ ପ୍ରଫେସର ଭି.ରାଘବନ୍ ସମ୍ମତି ପ୍ରଦାନ କରିଥିଲେ । ପଣ୍ଡିତ ରାଘବନଙ୍କ ମତ ଅନୁସାରେ କବି ଜୟଦେବଙ୍କ ଜନ୍ମ ଓ କର୍ମସ୍ଥାନ ଓଡ଼ିଶା ହିଁ ଥିଲା । ବିଶେଷତଃ ସେଥିପାଇଁ ଏ ପ୍ରସ୍ତାବିତ ସଙ୍ଗଠନର ସଭାପତି ହେବା ପାଇଁ ସେ ସ୍ଥିର କରିଥିଲେ । କିନ୍ତୁ ଅତି ଦୁଃଖର କଥା ଯେ, ସଂସ୍କୃତି ବିଭାଗର ଉଦାସୀନତା ଓ ଅସହଯୋଗ ପାଇଁ ଅଳ୍ପ କ୍ଷଣସ୍ଥାୟୀ ମନ୍ତ୍ରିମଣ୍ଡଳରେ ସଭ୍ୟ ରୂପେ ମୁଁ ଏ ଦିଗରେ ଆଗେଇ ପାରିଲି ନାହିଁ ।' ('ନିତ୍ୟାନନ୍ଦ ମହାପାତ୍ର ସଞ୍ଚୟନ' ପୁସ୍ତକର ୩୩ ଓ ୩୪ ପୃଷ୍ଠା, ବିଷୟ–'ମୁଁ ଯେବେ ମନ୍ତ୍ରୀ ହେଲି', ସଙ୍କଳନ ଓ ସମ୍ପାଦନା–ଗୁରୁକଲ୍ୟାଣ ମହାପାତ୍ର, ପ୍ରକାଶକ–ସାହିତ୍ୟ ଅକାଦମୀ, ନୂଆଦିଲ୍ଲୀ,୨୦୧୯)

ଦୁଃଖର କଥା, ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଅବସ୍ଥା ଏବେ ବି ସୁଧୁରି ନାହିଁ । ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନିଜେ ଜଣେ ଲେଖକ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି ପାଇଁ ସେ ଧ୍ୟାନ ରଖୁଥିବା ଆନନ୍ଦର କଥା । ବିଭାଗୀୟ ମନ୍ତ୍ରୀ ଶ୍ରୀ ଅଶ୍ୱିନୀ କୁମାର ପାତ୍ର ଓ ବିଭାଗୀୟ ଶାସନ ସଚିବ ଶ୍ରୀମତୀ ସୁଜାତା ଆର୍. କାର୍ତ୍ତିକେୟନ୍‌ଙ୍କର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ଆନ୍ତରିକତା ଥିବାରୁ ଏହି ସମ୍ମିଳନୀକୁ ସେମାନେ ସଫଳ କରାଇ ପାରିବେ ବୋଲି ଆଶା କରାଯାଉଛି । କାରଣ ଆସନ୍ତା ଫେବୃଆରୀ ମାସରେ ହେବାକୁ ଥିବା ଏହି ସମ୍ମିଳନୀରେ ବିଶ୍ୱର ବିଭିନ୍ନ ପ୍ରାନ୍ତରେ ଥିବା ଭାଷାବିତ୍ ଓ ଗବେଷକମାନଙ୍କୁ ଆମନ୍ତ୍ରଣ କରାଯିବ ବୋଲି ବିଭାଗୀୟ ଶାସନ ସଚିବ ଶ୍ରୀମତୀ କାର୍ତ୍ତିକେୟନ ପ୍ରକାଶ କରିଛନ୍ତି । ରାଜ୍ୟର ଯୁବକ ଓ ଛାତ୍ରମାନଙ୍କୁ ଏହି ସମ୍ମିଳନୀରେ ସାମିଲ କରାଯିବା ପ୍ରକୃତରେ ବଡ଼ କଥା । ବିଭିନ୍ନ ଶିକ୍ଷାନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟମାନଙ୍କୁ ଏହି ସମ୍ମିଳନୀରେ ମଧ୍ୟ ସାମିଲ କରାଯାଉଛି । ରାଜ୍ୟ ସରକାର ପ୍ରକାଶ କରିଛନ୍ତି ଯେ ଏହି 'ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀ' ଆୟୋଜିତ ହୋଇ ରାଜ୍ୟ ମଧ୍ୟରେ ଓ ରାଜ୍ୟ ବାହାରେ ଓଡ଼ିଆ ଭାଷାର ପ୍ରଚାର, ପ୍ରସାର ତଥା ଗବେଷଣା କାର୍ଯ୍ୟ ତ୍ୱରାନ୍ୱିତ ହେବ ଏବଂ ଭବିଷ୍ୟତରେ ଓଡ଼ିଆ ଭାଷାର ଅସ୍ମିତାକୁ ବଜାୟ ରଖିବା ଲାଗି ଏହି ସମ୍ମିଳନୀର ସୁଦୂରପ୍ରସାରୀ ପ୍ରଭାବ ରହିବ ବୋଲି ଆଶା କରାଯାଉଛି ।

ଉଲ୍ଲେଖନୀୟ ଯେ, ୧୯୨୧ ମାର୍ଚ୍ଚ ୨୩ ତାରିଖ ସକାଳେ, ଦୋଳପୂର୍ଣ୍ଣିମା ଦିନ ଗାନ୍ଧିଜୀ ପ୍ରଥମ ଓଡ଼ିଶା ଗସ୍ତରେ ଆସି କଟକଠାରେ ପହଞ୍ଚିଥିଲେ । ସେଦିନ ସନ୍ଧ୍ୟାରେ କଟକର କାଠଯୋଡ଼ି ନଦୀଶଯ୍ୟାରେ ଏକ ବିରାଟ ଜନସମାବେଶରେ ଗାନ୍ଧିଜୀ ଉଦ୍‌ବୋଧନ ଦେଇଥିଲେ । ସେହି ସଭାରେ ଗାନ୍ଧିଜୀ ଇଂରାଜୀ ଶିକ୍ଷାର ବ୍ୟର୍ଥତା ପ୍ରତିପାଦିତ କରି ଆଞ୍ଚଳିକ ଭାଷା ବା ଓଡ଼ିଆ ଭାଷାର ଗୁରୁତ୍ୱ ବିଷୟରେ ପ୍ରକାଶ କରିଥିଲେ, ଯାହା ବେଶ୍ ପ୍ରଭାବଶାଳୀ ଥିଲା । ଅବଶ୍ୟ ଗାନ୍ଧିଜୀଙ୍କ ଏହି କଥାକୁ ସେତେବେଳେ କତିପୟ ଇଂରେଜ ଶିକ୍ଷିତ ବ୍ୟକ୍ତି, ବ୍ରାହ୍ମ ସମାଜର ସମର୍ଥକ ଓ କେତେକ ଇଂରାଜୀ ଭାଷାର ସମ୍ବାଦପତ୍ର ବିରୋଧ କରିଥିଲେ । ମାତ୍ର ଗାନ୍ଧିଜୀ ସେ କଥାକୁ ବିରୋଧ କରାଯାଉଥିଲା ବୋଲି ଜାଣି ପାରି ନଥିଲେ ସେତେବେଳେ । ପରେ ୧୯୨୧ ଏପ୍ରିଲ ମାସର 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ଗାନ୍ଧିଜୀ ତାହାର ସ୍ପଷ୍ଟୀକରଣ ଦେଇଥିଲେ ଏହିପରି– 'ଜଣେ ବନ୍ଧୁ ଇଂରାଜୀ ଶିକ୍ଷା ସମ୍ପର୍କରେ ତଥା କଟକରେ ମୋ ବକ୍ତୃତା ବିଷୟରେ ମତ ଦେବା ପାଇଁ ଲେଖିଛନ୍ତି । ମୋ ବକ୍ତୃତାର ବିବରଣୀ ମୁଁ ପଢ଼ିନାହିଁ । କିନ୍ତୁ ବନ୍ଧୁଙ୍କ ଇଚ୍ଛାକୁ ମୁଁ ଆନନ୍ଦ ମନରେ ଗ୍ରହଣ କରୁଛି । ଏହା ମୋର ସ୍ଥିର ନିର୍ଦ୍ଦିଷ୍ଟ ମତ ଯେ ଯେଉଁପରି ଭାବରେ ଇଂରାଜୀ ଶିକ୍ଷା ଦିଆଯାଉଛି, ସେଥିରେ ଇଂରାଜୀ ଶିକ୍ଷିତ ଓ ଭାରତବାସୀ ନିର୍ଜୀବ ହୋଇଯାଉଛନ୍ତି । ଏହା ଭାରତୀୟ ଛାତ୍ରଙ୍କର ସ୍ନାୟୁବିକ ଶକ୍ତିର ଅପଚୟ ଘଟାଉଛି ଏବଂ ଏହା ଆମମାନଙ୍କୁ ଅନୁକରଣକାରୀ କରାଇ ଦେଉଛି । ଦେଶୀୟ ଭାଷାକୁ ଯେପରି ଉଠାଇ ଦିଆଗଲା, ତାହା ଭାରତ ସହିତ

ବ୍ରିଟିଶ ସଂପର୍କର ଇତିହାସରେ ସବୁଠାରୁ ଦୁଃଖଦାୟକ ଅଧ୍ୟାୟ' । ('ଗାନ୍ଧିଜୀ ଓଡ଼ିଶାରେ ପାଦ ଦେବାର ଶହେ ବର୍ଷ ପରେ', ଲେ.–ଗୁରୁକଲ୍ୟାଣ ମହାପାତ୍ର, ଦୈନିକ 'ନିତିଦିନ', ୨୩ ମାର୍ଚ୍ଚ, ୨୦୨୧ ପୃଷ୍ଠା–୮)

ଗାନ୍ଧିଜୀ ଆଞ୍ଚଳିକ ଭାଷା ଉପରେ ଗୁରୁତ୍ୱ ଦେଇ ବକ୍ତୃତା ଦବାର ପ୍ରାୟ ଶହେ ବର୍ଷ ପରେ ଉଭୟ ଭାରତ ସରକାର ଓ ରାଜ୍ୟ ସରକାର ଏବେ ରାଜ୍ୟରେ ବୈଷୟିକ ଶିକ୍ଷା ପ୍ରଦାନ ଯଥା ଇଂଜିନିଅରିଙ୍ଗ ଓ ଡାକ୍ତରୀ ପାଠ୍ୟକ୍ରମକୁ ଓଡ଼ିଆ ଭାଷାରେ ଆରମ୍ଭ କରିବା ଲାଗି ଯେଉଁ ଉଦ୍ୟମ ଜାରି ରଖିଛନ୍ତି, ତାହା ପ୍ରଶଂସନୀୟ । ତେଣୁ ପ୍ରଥମ ଥର ଲାଗି ରାଜ୍ୟରେ ହେବାକୁ ଥିବା ଏହି 'ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀ'ର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିବ ବୋଲି ଆଶା କରାଯାଉଛି ।

ଓଡ଼ିଶା ସରକାରଙ୍କ ଆନ୍ତରିକତା ଓ ଭାରତ ସରକାରଙ୍କ ଅନୁମୋଦନକ୍ରମେ ୨୦୧୪ରେ ଓଡ଼ିଆ ଭାଷା ଭାରତର ଷଷ୍ଠ ଶାସ୍ତ୍ରୀୟ ଭାଷା ଭାବରେ ସ୍ୱୀକୃତି ଲାଭ କରିପାରିଛି । ଅତୀତରେ ଅଣ ଓଡ଼ିଆ ପ୍ରଶାସକ ରେଭେନ୍ସା ସାହେବ ଓ ଜନ ବୀମ୍‌ସ ମଧ୍ୟ ରାଜ୍ୟ ସ୍କୁଲମାନଙ୍କରେ ବଙ୍ଗଳା ଭାଷା ପରିବର୍ତ୍ତେ ଓଡ଼ିଆ ଭାଷାର ପ୍ରଚଳନ କରାଇଥିଲେ । ଏ କଥା ବ୍ୟାସକବି ଫକୀର ମୋହନ ସେନାପତି ମଧ୍ୟ ସ୍ୱୀକାର କରିଛନ୍ତି । ବାଲେଶ୍ୱର ଜିଲ୍ଲା ସ୍କୁଲର ତତ୍‌କାଳୀନ ପଣ୍ଡିତ ଥିଲେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ । 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ' (ନୁହେଁ) ଶୀର୍ଷକ ଏକ ପୁସ୍ତକ ଲେଖି ସ୍କୁଲମାନଙ୍କରୁ ଓଡ଼ିଆ ଭାଷାକୁ ଉଠାଇ ବଙ୍ଗଳା ଭାଷାର ପ୍ରଚଳନ ପାଇଁ ସେ ଉଦ୍ୟମ କରିଥିଲେ । ଫକୀର ମୋହନଙ୍କ ଭାଷାରେ– 'ସେହି ସମୟରେ ସରକାରୀ କାର୍ଯ୍ୟ ଉପଲକ୍ଷେ ଉତ୍କଳରେ ବାସ କରୁଥିବା ସମଗ୍ର ବଙ୍ଗବାସୀ କାନ୍ତି ବାବୁଙ୍କର ପୃଷ୍ଠପୋଷକତା କରିବାକୁ ଲାଗିଲେ । ବାଲେଶ୍ୱରବାସୀ କେତେଜଣ ଯୁବକ ମାତୃଭାଷା ରକ୍ଷା ନିମନ୍ତେ ଭୟଙ୍କର ଆନ୍ଦୋଳନ କରିବାକୁ ଲାଗିଲେ' । କଟକରେ 'ଉତ୍କଳ ଦୀପିକା' ସେହି ସମୟରେ ଆପଣା କର୍ତ୍ତବ୍ୟ କର୍ମ ସାଧନାରେ ତ୍ରୁଟି କରି ନଥିଲେ । ଆନ୍ଦୋଳନ କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇ ରାଜପୁରୁଷମାନଙ୍କ କର୍ଣ୍ଣଗୋଚର ହେଲା । ଉତ୍କଳର ତତ୍‌କାଳିକ କମିଶନର ମହାମତି ରେଭେନ୍ସା ଏବଂ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଭାଷାତତ୍ତ୍ୱବିତ୍ ଶ୍ରୀଯୁକ୍ତ ବୀମ୍‌ସ ସାହେବ ମହୋଦୟମାନଙ୍କ ଆଦେଶରେ ଉତ୍କଳ ବିଦ୍ୟାଳୟମାନଙ୍କରୁ ବଙ୍ଗ ଭାଷା ଏକାବେଳକେ ବିଦାୟ ପ୍ରାପ୍ତ ହେଲା । ଉତ୍କଳ– ଭାଷା ଇତିହାସରେ ଏହା ଗୋଟିଏ ନିତାନ୍ତ ଶୁଭଙ୍କର ଏବଂ ବିଶେଷ ଘଟନା ଅଟେ । ଉତ୍କଳବାସୀମାନେ ଚିରକାଳ ଏହି ମହାତ୍ମାମାନଙ୍କ ନାମ ସ୍ମରଣ କରିବେ । ('ଉତ୍କଳ ଭାଷାର ଭୂତ ଭବିଷ୍ୟତ'– ୧୯୧୫ରେ ଉତ୍କଳ ସାହିତ୍ୟ ସମାଜରେ ଫକୀର ମୋହନଙ୍କ ବକ୍ତୃତାରୁ କିୟଦଂଶ)

ଆମ ଅଦାଲତମାନଙ୍କରେ ଓଡ଼ିଆ ଭାଷା ପ୍ରଚଳିତ ହୋଇପାରିନାହିଁ । ସ୍ୱାଧୀନତାର ୭୬ ବର୍ଷ ଏବଂ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ୮୭ ବର୍ଷ ପରେ ମଧ୍ୟ ସାଧାରଣ ଲୋକେ କ୍ଳିଷ୍ଟ ଇଂରାଜୀ ଭାଷାରେ ଆବେଦନ, ଯୁକ୍ତିତର୍କ, ଆଦେଶ ଓ ରାୟ ପ୍ରଭୃତିକୁ ବୁଝିବା କଷ୍ଟକର ବୋଲି ମନେ ହେଉଛି । ଅବଶ୍ୟ କେତେକ ସାଂସ୍କୃତିକ ସଂସ୍ଥାର ଦାବି ଫଳରେ ଭାରତ ସରକାର ଓ ସର୍ବୋଚ୍ଚ ଅଦାଲତ ଏବେ ଅଦାଲତମାନଙ୍କରେ ଆଞ୍ଚଳିକ ଭାଷାର ପ୍ରଚଳନ ଉପରେ ଗୁରୁତ୍ୱାରୋପ କରିଛନ୍ତି । ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଏ ସଂକ୍ରାନ୍ତରେ ସୁନ୍ଦର ଦୃଷ୍ଟାନ୍ତଟିଏ ରହିଛି । ତାଙ୍କ ଭାଷାରେ – 'ଗଞ୍ଜାମରେ ଓଡ଼ିଆର ସ୍ୱତ୍ତ୍ୱ ଓ ଅଧିକାର ସରକାର ସ୍ୱୀକାର କରିଅଛନ୍ତି । ଓଡ଼ିଆ ସ୍କୁଲର ସଂଖ୍ୟା ଦିନ ଦିନ ବଢ଼ୁଅଛି । ମାତ୍ର ବିଚାର ଅଦାଲତରେ ଓଡ଼ିଆ ଏ ପର୍ଯ୍ୟନ୍ତ ଉପଯୁକ୍ତ ସ୍ଥାନ ପାଇନାହିଁ । କେବଳ ଘୁମୁସର ତାଲୁକାରେ ଓଡ଼ିଆ ଏକମାତ୍ର କଚେରୀ ଭାଷା ରୂପେ ଜାରି ହୋଇଅଛି । ଅନ୍ୟାନ୍ୟ ପୂରା ଓଡ଼ିଆ ଭାଷା ତାଲୁକାରେ ଏ ପର୍ଯ୍ୟନ୍ତ ପୂର୍ଣ୍ଣ ଅଧିକାର ମିଳିନାହିଁ ।... ( 'ଓଡ଼ିଆ ଭାଷା'– ଭାଷା ଭାବନା, ସଂକଳନ ଓ ସଂପାଦନା – ବିଜୟଲକ୍ଷ୍ମୀ ମହାନ୍ତି )

ଆଗାମୀ 'ପ୍ରଥମ ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀ'ରେ ଓଡ଼ିଆ ଭାଷାର ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟ ସ୍ଥାନ ପାଇବ ବୋଲି ଆମେମାନେ ଆଶା କରୁଛୁଁ ।

ଭୁବନେଶ୍ୱର

# ଗାନ୍ଧିବାଦ : ସମୟର ଏକ ପ୍ରବହମାନ ଧାରା

**ଡ. ପ୍ରଫୁଲ୍ଲ କୁମାର ସାହୁ**

ଭାରତୀୟ ମୁକ୍ତି ସଂଗ୍ରାମର ମହାନାୟକ ମହାତ୍ମା ଗାନ୍ଧି । ବିଶ୍ୱ ଇତିହାସର ସର୍ବମାନ୍ୟ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ । ଜଣେ ସତ୍ୟନିଷ୍ଠ ମୁକ୍ତିଯୋଦ୍ଧା, ସମାଜ ସଂସ୍କାରକ, ମାନବବାଦୀ ଚିନ୍ତାନାୟକ ତଥା ଜଣେ ଧର୍ମନିରପେକ୍ଷ ଓ ଧର୍ମପ୍ରାଣ ସନ୍ଥ– ଏମିତି ବହୁଳ ବିଭବରେ ବିମଣ୍ଡିତ ତାଙ୍କ ଅସାଧାରଣ ବ୍ୟକ୍ତିତ୍ୱକୁ ଆବଦ୍ଧ କରି ରଖିପାରିନି ନିର୍ଦ୍ଦିଷ୍ଟ କୌଣସି ଦେଶ, ସମୟ ଖଣ୍ଡ ବା ଭୌଗୋଳିକ ପରିସୀମା । ଭାରତୀୟ ଇତିହାସର ଦିଗ୍‌ଭ୍ରଷ୍ଟ ଓ ଅସଂଗଠିତ ପ୍ରବାହମାନଙ୍କୁ ଏକତ୍ର କରି ସେ ମୁକ୍ତିସଂଗ୍ରାମରେ ଭରିଦେଲେ ଏକ ନୂତନ ଦିଶା ଓ ଦିଗନ୍ତ । ସାମ୍ରାଜ୍ୟବାଦ ଓ ଔପନିବେଶିକ ଶାସନ ବିରୋଧରେ ତାଙ୍କର ମୁଖ୍ୟ ଅସ୍ତ୍ର ଥିଲା ସତ୍ୟାଗ୍ରହ । ସେହି ଅସ୍ତ୍ର ବଳରେ ସେ ମଣିଷରୁ ମହାମାନବ ଓ ଶେଷରେ ମହାତ୍ମା ପାଲଟି ଯାଇ ବ୍ୟକ୍ତିରୁ ହୋଇଗଲେ ଏକ ବିରଳ ବିଚାର । ତେବେ କେଉଁଠୁ ପାଇଲେ ସେହି ଅସ୍ତ୍ର ? କ'ଣ ଥିଲା ତାଙ୍କ ବାର୍ତ୍ତାର ଅନୁପମ ଐଶ୍ୱର୍ଯ୍ୟ ? ଜାତି, ଧର୍ମ, ସଂପ୍ରଦାୟ ଓ ଭାଷାର ପ୍ରାଚୀରକୁ ଅତିକ୍ରମ କରି ଜନଗଣଙ୍କ ଭିତରେ ସେ କେମିତି ସୃଷ୍ଟି କରିପାରିଲେ ଏକ ଦୃଷ୍ଟାନ୍ତକାରୀ ସଂଯୋଗ ? କିପରି ଭେଦକଲେ ଲକ୍ଷ ଲକ୍ଷ ମୂକ ନିର୍ବାକ୍ ଜନଗଣଙ୍କ ମନ ଓ ହୃଦୟ? ମନକୁ ଆନ୍ଦୋଳିତ କରୁଥିବା ଏଭଳି ଅସୁମାରି ପ୍ରଶ୍ନର ଉତ୍ତର ଖୋଜି ବସିଲେ ସ୍ୱତଃ ଆଖି ଆଗକୁ ଆସେ ତାଙ୍କ ବ୍ୟକ୍ତିତ୍ୱ ନିର୍ମାଣ ପକ୍ରିୟାର ଭିନ୍ନ ଭିନ୍ନ ପର୍ଯ୍ୟାୟ ।



ଗାନ୍ଧିଜୀଙ୍କ ତାରୁଣ୍ୟର ଆବେଗିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ସଚେତନତା ନିର୍ମାଣ ଅନ୍ତରାଳରେ ରହିଛି ତାଙ୍କ ମାତା ପୁତୁଳି ବାଇ(ଯିଏ ଥିଲେ ଅତ୍ୟନ୍ତ ଧର୍ମପ୍ରାଣା)ଙ୍କ ଜୀବନାଦର୍ଶ ତଥା ଭକ୍ତିଭାବଧାରା ଅନୁପ୍ରେରିତ ଭାରତୀୟ ସନ୍ଥ ସନ୍ନ୍ୟାସୀମାନଙ୍କ ପ୍ରଭାବ । ବିଶେଷତଃ ତାଙ୍କ ଆଧ୍ୟାତ୍ମିକ ଗୁରୁ ସନ୍ଥ ନରସିଂହ ମେହେଟାଙ୍କ ଏକ ରଚନା–''ବୈଷ୍ଣବ ଜନ ତୋ ...'' । ଅର୍ଥାତ୍ ଯିଏ ଅନ୍ୟର ପୀଡ଼ାକୁ ଅନୁଭବ କରିଥାଏ, ସେହିଁ ବୈଷ୍ଣବ ଜନ । ସନ୍ଥ ମେହେଟାଙ୍କ ଉପରୋକ୍ତ ଗୀତରେ ଥିବା ତତ୍ତ୍ୱ ତରୁଣ ଗାନ୍ଧିଙ୍କ ଭିତରେ ଭରିଦେଇଥିଲା ସେବା ଓ ତ୍ୟାଗ ନିମନ୍ତେ ଆତ୍ମଶକ୍ତିକୁ ଉଜାଗ୍ରତ କରିବାର ଆବେଗିକ ସ୍ପନ୍ଦନ ।

ଆଇନ୍ ଅଧ୍ୟୟନ ନିମନ୍ତେ ଲଣ୍ଡନ ଯାତ୍ରା (୧୮୮୮) ତରୁଣ ଗାନ୍ଧିଙ୍କୁ ନେଇ ପହଞ୍ଚାଇ ଦେଲା

ପାଶ୍ଚାତ୍ୟ ସଂସ୍କୃତିର ଭିନ୍ନତା ପାଖରେ । ପରିବ୍ୟାପ୍ତ ହେଲା ତାଙ୍କ ଧର୍ମୀୟ ଚେତନାର ଦିଗନ୍ତ । ଏଠାରେ ଇଂରେଜ ଲେଖକ ଏଡ୍‌ଉଇନ୍ ଆର୍ଣ୍ଣୋଲଡ୍‌ଙ୍କ 'ଭଗବତ ଗୀତା'ର ଇଂରାଜୀ ଅନୁବାଦ ପଢି ପାଇଥିଲେ ଅନ୍ତର୍ଜ୍ୟୋତିକୁ ନିରୀକ୍ଷଣ କରିବା ନିମନ୍ତେ ଏକ ଦିବ୍ୟ ପ୍ରେରଣା । ଏଥିସହିତ ଖ୍ରୀଷ୍ଟିୟାନ ଧର୍ମର ଅନେକ ମୌଳିକ ଗ୍ରନ୍ଥ ଅଧ୍ୟୟନ ଫଳରେ ତାଙ୍କର ହୃଦ୍‌ବୋଧ ହେଲା ଯେ ଭିନ୍ନ ଭିନ୍ନ ଧର୍ମର ଆଚରିତ ପ୍ରଥା ଅଲଗା ଅଲଗା ହେଲେ ବି ସବୁଧର୍ମର ସାରତତ୍ତ୍ୱ ଏକ ଓ ଅଭିନ୍ନ ।

ଗାନ୍ଧିଜୀ ଲଣ୍ଡନରୁ ଫେରି (୧୮୯୧) ଆଇନ୍ ବ୍ୟବସାୟ ପାଇଁ ଯେତେବେଳେ (୧୮୯୩) ଦକ୍ଷିଣ ଆଫ୍ରିକାରେ ପହଞ୍ଚିଲେ, ସେତେବେଳେ ସେଠାରେ ଉତ୍କଟ ବର୍ଣ୍ଣବୈଷମ୍ୟ ଭେଦଭାବ ଯୋଗୁଁ ଦାରୁଣ ନିର୍ଯ୍ୟାତନାର ଶିକାର ହେଉଥିଲେ ସେଠାକାର ମୂଳ ଅଧିବାସୀ କୃଷ୍ଣକାୟ ଆଫ୍ରିକୀୟ ଏବଂ ବ୍ୟବସାୟ କରିବାକୁ ଯାଇଥିବା ଅଣ ଶ୍ୱେତାଙ୍ଗ ଭାରତୀୟମାନେ । ସେମାନଙ୍କ ଦୃଷ୍ଟିରେ ଭାରତୀୟମାନେ ଥିଲେ କୁଲି । ସେଥିପାଇଁ ସେମାନେ ବିଦେଶୀ ପୋଷାକ ପରିହିତ ଓ ବିଲାତରେ ବାରିଷ୍ଟରୀ ପଢିଥିବା ସୌଖିନ୍ ସୌଭାଗ୍ୟବନ୍ତ ମୋହନଦାସ କରମଚାନ୍ଦ ଗାନ୍ଧିଙ୍କୁ ମଧ୍ୟ କହୁଥିଲେ କୁଲି ବାରିଷ୍ଟର । ସେମାନଙ୍କ ଅମାବନୀୟ ଅତ୍ୟାଚାରକୁ ବରଦାସ୍ତ କରି ଦକ୍ଷିଣ ଆଫ୍ରିକାରେ ଆଇନ୍ ବ୍ୟବସାୟ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ବୋଲି ଭାବିନେଇଥିଲେ ଗାନ୍ଧି । ମାତ୍ର ଡରବାନରୁ ପ୍ରିଟୋରିଆ ଅଭିମୁଖେ ରେଳଯାତ୍ରାର ତିକ୍ତ ଅନୁଭୂତି ବଦଳେଇ ଦେଇଥିଲା ତାଙ୍କ ଜୀବନର ଗତିପଥ । ଟ୍ରେନ୍‌ରେ ପ୍ରଥମ ଶ୍ରେଣୀ ବଗିରେ ବସିବାର ଅଧିକାରରୁ ବଞ୍ଚିତ ହୋଇ ସାରାରାତି ନିର୍ଜନ ପ୍ଲାଟଫର୍ମରେ ବସି ଶୀତରେ ଥରୁଥିବା ବେଳେ ତାଙ୍କ ଚେତନାରେ ଯେଉଁ ଉଷ୍ମତା ଭରି ଯାଇଥିଲା, ସେହି ଉଷ୍ମତାରୁ ସେ ପାଇଥିଲେ ସତ୍ୟାଗ୍ରହ ଅସ୍ତ୍ର । ସେହି ଐତିହାସିକ ରେଳଯାତ୍ରାରେ ଟିକଟ ନିରୀକ୍ଷକ ଓ କୋଚ ଲିଡ଼ରଙ୍କ ଦୁର୍ବ୍ୟବହାର ତାଙ୍କୁ ମର୍ମାନ୍ତିକ ଯନ୍ତ୍ରଣା ଦେଇଥିଲେ ବି ବ୍ୟକ୍ତିଗତ ଅପମାନଠାରୁ ତାଙ୍କ ପ୍ରାଣକୁ ଅଧିକ ବିଦ୍ଧ ଓ ବିଦୀର୍ଣ୍ଣ କରିଦେଇଥିଲା ସେଠାରେ ଭାରତୀୟମାନେ ଭୋଗୁଥିବା ଦୁଃଖ, ଦୁର୍ଦ୍ଦଶା, ଲାଞ୍ଛନା, ନିର୍ଯ୍ୟାତନା ଓ ଅପମାନ । ସେଥିପାଇଁ ନିର୍ଦ୍ଦିଷ୍ଟ ଭାବରେ କାହା ପ୍ରତି ଆଇନଗତ ପଦକ୍ଷେପ ନେବା ପରିବର୍ତ୍ତେ ବର୍ଣ୍ଣ ବୈଷମ୍ୟବାଦ ବିରୁଦ୍ଧରେ ଲଢିବା ପାଇଁ ତାଙ୍କ ଭିତରେ ଚେଇଁ ଉଠିଲା ସଂକଳ୍ପ ଓ ପ୍ରବୃତ୍ତି । ତେଣୁ ଆଇନ୍ ବ୍ୟବସାୟ ଅବସରରେ ନେତୃତ୍ୱ ନେବା ପାଇଁ ନିଜେ ନିଜକୁ ପ୍ରସ୍ତୁତ କଲେ ଏବଂ ପ୍ରବାସୀ ଭାରତୀୟଙ୍କୁ ଏକଜୁଟ କରି ସେମାନଙ୍କ ଭିତରେ ଭରିଦେଲେ ଅନ୍ୟାୟ ବିରୋଧରେ ଅହିଂସା ଲଢେଇ ଲଢିବାର ନୈତିକ ସାହସ । ଗାନ୍ଧିଜୀଙ୍କ ନେତୃତ୍ୱରେ ଅନ୍ୟାୟର ପ୍ରତିବାଦ ପାଇଁ ହଜାର ହଜାର ଭାରତୀୟ ସଂଗଠିତ ହେବା ଦେଖି ଅଧିକ କଠୋର ହୋଇଉଠିଲେ ଦକ୍ଷିଣ ଆଫ୍ରିକା ସରକାର । ସେଠାରେ ଭାରତୀୟମାନଙ୍କୁ ଅତ୍ୟନ୍ତ ହୀନ ବୋଲି ପ୍ରମାଣ କରିବା ତଥା ସେଠାରୁ ନିକାଳିବା ପାଇଁ ଟ୍ରାନ୍ସଭାଲ ସରକାରଙ୍କ ପକ୍ଷରୁ ପ୍ରଣୟନ ହେଲା (୧୯୦୬)'ଏସିଆଟିକ ଲ' ଆମେଣ୍ଡମେଣ୍ଟ ଅର୍ଡ଼ିନାନ୍ସ' ନାମରେ ଏକ ଆଇନ୍ । ଏହାକୁ ଏକ କଳା ଆଇନ୍ ବୋଲି ଅଭିହିତ କରି ଗାନ୍ଧିଜୀ ଜନମତ ସୃଷ୍ଟି କଲେ ଏବଂ ଏହି ଆଇନକୁ ଅମାନ୍ୟ କରି ଆରମ୍ଭ କଲେ ସତ୍ୟାଗ୍ରହ ।

ସତ୍ୟ ପ୍ରତି ଆଗ୍ରହ ହିଁ ସତ୍ୟାଗ୍ରହ । ନୈତିକତା ଏହାର ଆଧାର । । ଯିଏ ଏହି ଅସ୍ତ୍ର ପ୍ରୟୋଗ କରେ ଏବଂ ଯାହା ଉପରେ ଏହାର ପ୍ରୟୋଗ ହୁଏ , ଉଭୟଙ୍କର କଲ୍ୟାଣ କରେ ସତ୍ୟାଗ୍ରହ ଅସ୍ତ୍ର । ରୁଷୀୟ ଔପନ୍ୟାସିକ ଲିଓ ଟଲ୍‌ଷ୍ଟୟଙ୍କ 'ଦି କିଙ୍ଗଡ଼ମ ଅଫ୍ ଗଡ଼ ଇଜ ଉଇଦିନ୍ ୟୁ' ଗ୍ରନ୍ଥରୁ ସେ ପାଇଥିଲେ 'ସତ୍ୟାଗ୍ରହ'ର ସୂତ୍ର ବା ଶ୍ରଦ୍ଧା ଓ ସମ୍ବେଦନା ଦ୍ୱାରା ମାନବ ସମାଜକୁ ଏକ ଉନ୍ନତ ସ୍ତରକୁ ଉତ୍ତୀର୍ଣ୍ଣ କରିବାର ଅବବୋଧ । ମହାପୁରୁଷ ଟଲ୍‌ଷ୍ଟୟଙ୍କ ଏହି ବିଚାରଧାରାରେ ଗାନ୍ଧି ଏତେ ମାତ୍ରାରେ ଅନୁପ୍ରାଣିତ ହୋଇଥିଲେ ଯେ ଜୋହାନ୍ସବର୍ଗଠରେ ପ୍ରତିଷ୍ଠା କରିଥିବା ଆଶ୍ରମ(୧୯୧୦) ର ନାମ ରଖିଥିଲେ

'ଟଲ୍‌ଷ୍ଟୟ ଆଶ୍ରମ'। ଏହି ଆଶ୍ରମର ସାରାଂଶ ଥିଲା ଉଚ୍ଚ ଆଦର୍ଶ ଓ ଶୁଦ୍ଧ ଅଚାରଣ, ଯାହା ଅଭିପ୍ରେତ ଥିଲା ପ୍ରତ୍ୟେକ ଅନ୍ତେବାସୀଙ୍କ ଅନ୍ତ୍ୟୋଦୟ ପାଇଁ । ଏହି ସର୍ବୋଦୟର ସୂତ୍ର ମଧ୍ୟ ସେହି ଦକ୍ଷିଣ ଆଫ୍ରିକାରେ ସେ ପାଇଥିଲେ ଖ୍ରୀଷ୍ଟିଆନ ସମାଜବାଦୀ ନେତା ଜନ୍ ରସ୍କିନ୍ ବର୍ଣ୍ଣଙ୍କ ରଚିତ 'ଅନ୍ ଟୁ ଦ ଲାଷ୍ଟ' ପଢିଲା ପରେ। ଏହା ହିଁ ଥିଲା ସେ ଟ୍ରାନ୍ସଭାଲ ପ୍ରଦେଶର ଜୋହାନ୍‌ସବର୍ଗଠାରୁ ଆରମ୍ଭ କରିଥିବା (୧୧ ସେପ୍ଟେମ୍ବର ୧୯୦୬) ଐତିହାସିକ ଆନ୍ଦୋଳନର ମୂଳସୂତ୍ର। ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶରେ ଆକର୍ଷିତ ହୋଇ ଏକ ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ହେଲେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ପାର୍ସି, ହିନ୍ଦୁସ୍ଥାନୀ, ଗୁଜରାଟୀ, ତାମିଲ, ତେଲଗୁ ଆଦି ଜାତି, ଧର୍ମ, ବର୍ଣ୍ଣ ଓ ଭାଷା ନିର୍ବିଶେଷରେ ସେଠାରେ ରହୁଥିବା ଭାରତୀୟମାନେ। ଫଳରେ କ୍ରମଶଃ ବ୍ୟାପକ ହେବାକୁ ଲାଗିଲା ଗାନ୍ଧିଜୀଙ୍କର ଅହିଂସା ଆନ୍ଦୋଳନ । ଆଇନ ଅମାନ୍ୟ କରି ଗିରଫ ହେଲେ ହଜାର ହଜାର ସତ୍ୟାଗ୍ରହୀ। ଦୀର୍ଘ ଆଠବର୍ଷ ଧରି (୧୯୦୬ରୁ ୧୯୧୪) ନିରବଚ୍ଛିନ୍ନ ଭାବରେ ଚାଲିଲା ସଂଗ୍ରାମ । ଶେଷରେ ସତ୍ୟାଗ୍ରହକୁ ରାଜନୈତିକ ଅସ୍ତ୍ର ଭାବରେ ଗ୍ରହଣ କରି ଦକ୍ଷିଣ ଆଫ୍ରିକାର ସରକାରଙ୍କ ହୃଦୟକୁ ଜୟ କଲେ ଗାନ୍ଧିଜୀ। ଭାରତୀୟଙ୍କ ନ୍ୟାୟୋଚିତ ଦାବିକୁ ଗ୍ରହଣ କରି ସେଠାକାର କେନ୍ଦ୍ରିୟ ପାର୍ଲାମେଣ୍ଟରେ ଗୃହୀତ ହେଲା 'ଇଣ୍ଡିଆନ ରିଲଫ ଆଇନ''। ଅବସାନ ହେଲା ଦୀର୍ଘ ଦିନର ରାଜନୈତିକ ଦାସତ୍ୱ । ବର୍ଣ୍ଣ ବୈଷମ୍ୟ ଜର୍ଜରିତ ପ୍ରବାସ ଭୂଇଁରେ ଗାନ୍ଧିଙ୍କର ଏହି ସଫଳତା ପରେ ପ୍ରମାଣ ହେଲା ସତ୍ୟାଗ୍ରହ ଭୀରୁ କାପୁରୁଷର ଅସ୍ତ୍ର ନୁହେଁ, ସତ୍ୟ ଓ ଅହିଂସାର ଶାଣଦିଆ ଅସ୍ତ୍ର। ଗାନ୍ଧିଜୀଙ୍କର ଏହି ସତ୍ୟାଗ୍ରହ ଅସ୍ତ୍ର ତଥା ତାଙ୍କର ନୀତି, ନୈତିକତା ଓ ନିର୍ଭୀକ ନେତୃତ୍ୱକୁ ପ୍ରଶଂସା କଲା ସମଗ୍ର ବିଶ୍ୱ। ଏଠାରେ ଅନୁଭବ କରିଥିବା ଆଧ୍ୟାତ୍ମିକ ସ୍ୱଚ୍ଛତାକୁ ସ୍ମରଣ କରି ପରବର୍ତ୍ତୀ ସମୟରେ ଗାନ୍ଧିଜୀ କହିଛନ୍ତି – 'ମୁଁ ଦକ୍ଷିଣ ଆଫ୍ରିକା ଯାଇଥିଲି ମୋର ଜୀବିକା ଉପାର୍ଜନ ପାଇଁ । ମାତ୍ର ସେଠାରେ ଆରମ୍ଭ କରିଦେଲି ଭଗବତ୍ ଅନ୍ୱେଷଣ, ଆତ୍ମାନୁଶୀଳନ ଓ ଆତ୍ମ ଉପଲବ୍ଧିର ପ୍ରୟାସ' ।

ଦକ୍ଷିଣ ଆଫ୍ରିକାର ଦୀର୍ଘ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ (୧୮୯୩–୧୯୧୪) ସଂଗ୍ରାମୀ ଜୀବନ ଅତିବାହିତ କଲା ପରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ ଗାନ୍ଧିଜୀ। ଭାରତରେ ପଦାର୍ପଣ (୯ ଜାନୁଆରୀ ୧୯୧୫) କରିବାର ଅଳ୍ପ କେତେମାସ ପରେ ଅହମଦାବାଦର କୋଚରାବଠାରେ ପ୍ରତିଷ୍ଠା କଲେ (୨୫ ମେ ୧୯୧୫) 'ସତ୍ୟାଗ୍ରହ ଆଶ୍ରମ'। ଦକ୍ଷିଣ ଆଫ୍ରିକାର ଟଲ୍‌ଷ୍ଟୟ ଆଶ୍ରମର ନୀତି ନିୟମକୁ ଅନୁସରଣ କରି ପରିଚାଳିତ ଏହି ଆଶ୍ରମ ଥିଲା ସତ୍ୟାଗ୍ରହ ବ୍ରତର ଏକ ପ୍ରୟୋଗଶାଳା। ସତ୍ୟାଗ୍ରହ ଆଶ୍ରମ ପ୍ରତିଷ୍ଠା ହୋବାର ଦୁଇବର୍ଷ ପରେ ଏହା ସ୍ଥାନାନ୍ତରିତ ହେଲା (୧୭ ଜୁନ୍ ୧୯୧୭) ଅହମଦାବାଦଠାରୁ ୯ କି.ମି. ଦୂର ସାବରମତୀ କୂଳକୁ । ଏଠାରେ ସତ୍ୟ ଓ ଅହିଂସାର ଆଧ୍ୟାତ୍ମିକ ପରୀକ୍ଷା ନିରୀକ୍ଷା ଚାଲିବା ସହିତ ଦାନା ବାନ୍ଧିଲା ଭାରତର ଅର୍ଥନୈତିକ ସ୍ୱାଧୀନତା ହାସଲ ପାଇଁ ଏକ ବିନମ୍ର ଆନ୍ଦୋଳନ। ପୃଥିବୀର ସବୁଠାରୁ ଉଦ୍ଧତ ଓ ପ୍ରଭାବଶାଳୀ ସାମ୍ରାଜ୍ୟକୁ ଜିଣିବା ପାଇଁ ଏହି ସାବରମତୀ ଆଶ୍ରମରେ ଗାନ୍ଧିଜୀ ପ୍ରସ୍ତୁତ କଲେ ଅହିଂସା ଆନ୍ଦୋଳନର ଖସଡ଼ା ।

ଗାନ୍ଧିଜୀ ଭାରତ ଫେରିବାର ୪ବର୍ଷ ପର୍ଯ୍ୟନ୍ତ ଦେଶର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ଜନସାଧାରଣଙ୍କ ଦୈନ୍ୟକ୍ଲିଷ୍ଟ ଜୀବନଧାରାକୁ ଅନୁଧ୍ୟାନ କରିଥିଲେ ଏବଂ ଏହା ତାଙ୍କ ସମ୍ବେଦନଶୀଳ ପ୍ରାଣକୁ ଏତେ ପ୍ରଭାବିତ କରିଥିଲା ଯେ ସେ ଦରିଦ୍ର, ଦୁର୍ବଳ, ଅସହାୟ ମଣିଷଙ୍କ ନିରାଡ଼ମ୍ବର ଜୀବନ ଧାରାକୁ ଆଦରି ନେଇଥିଲେ ଅତି ନିଷ୍ଠାର ସହିତ। ନିଜର ସ୍ୱାଭାବିକ ପୋଷାକ ପରିହାର କରି ଆଣ୍ଠୁ ପର୍ଯ୍ୟନ୍ତ ଲୁଗା ଖଣ୍ଡେ ପିନ୍ଧି ଏବଂ ଫୁଙ୍ଗୁଳା ଦେହରେ ଚାଦର ଖଣ୍ଡେ ପକାଇ ବିତେଇ ଦେଇଥିଲେ ଅବଶିଷ୍ଟ ଜୀବନ । ଦେଶ ପରିଭ୍ରମଣ ଅବସରରେ ଗୁଜରାଟର ଏକ ଗ୍ରାମରେ ୩ଜଣ ବ୍ୟକ୍ତି ଚରଖାରେ ସୂତାକାଟି ଜୀବିକା ନିର୍ବାହ କରୁଥିବା ଦେଖି ସେ ଅନୁଭବ କରିଥିଲେ କୁଟୀରଶିଳ୍ପର ମହତ୍ତ୍ୱ। ସେଥିପାଇଁ ଚରଖାକୁ

ସେ ଗ୍ରହଣ କରିନେଇଥିଲେ ସ୍ୱାବଲମ୍ବନଶୀଳତାର ପ୍ରତୀକ ଭାବରେ । ସମଗ୍ର ଦେଶ ବୁଲିବୁଲି ନିଷ୍ପେଷିତ ଚାଷୀ ଓ ଶ୍ରମିକଙ୍କ ବିଷଣ୍ଣତା ଭିତରୁ ଯେଉଁ ଭାରତୀୟ ଆତ୍ମାକୁ ଆବିଷ୍କାର କଲେ, ସେ ଆତ୍ମାର ଜାଗରଣ ପାଇଁ ତାଙ୍କ ଚିନ୍ତା ଓ ଚେତନାର ପରୀକ୍ଷାଗାର ହେଲା ଖେଡ଼ା, ଚମ୍ପାରଣ ଓ ଅହମଦାବାଦ ।

ଦକ୍ଷିଣ ଆଫ୍ରିକାରୁ ଫେରି ଭାରତୀୟ ଜାତୀୟ କଂଗ୍ରେସ ସହ ସକ୍ରିୟ ଭାବେ ଜଡ଼ିତ ହୋଇସାରିଥିଲେ ବି ୧୯୧୯ ପର୍ଯ୍ୟନ୍ତ ଆଦୌ ଶାଣିତ ହୋଇ ପାରିନଥିଲା ତାଙ୍କ ବ୍ରିଟିଶ ବିରୋଧୀ ଆଭିମୁଖ୍ୟ । ମାତ୍ର ପ୍ରଥମ ବିଶ୍ୱଯୁଦ୍ଧ ପରେ ଭାରତବାସୀଙ୍କୁ ଅବଦମିତ କରି ରଖିବା ଲକ୍ଷ୍ୟରେ ବ୍ରିଟିଶ ଶାସକ ଯେଉଁ 'ରାଓଲାଟ୍ ଆଇନ' (୧୯୧୯) ପ୍ରଣୟନ କଲେ, ସେଥିରେ ବ୍ରିଟିଶ ସାମାଜ୍ୟବାଦର ନଗ୍ନରୂପ ଦେଖି ବିଚଳିତ ହୋଇ ପଡ଼ିଲେ ଗାନ୍ଧିଜୀ । ସେ ସମସ୍ତ ନୈତିକ ଶକ୍ତି ପ୍ରୟୋଗ କରି 'ରାଓଲାଟ ଆଇନ'କୁ ବିରୋଧ କଲେ ଏବଂ ତାଙ୍କ ଆହ୍ୱାନକ୍ରମେ ସାରା ଦେଶରେ ଚାଲିଲା ହରତାଳ ଓ ପ୍ରତିବାଦ ସଭା । ଦେଶବ୍ୟାପୀ ଅସନ୍ତୋଷର ବହ୍ନି ତେଜି ଉଠୁଥିବା ବେଳେ ପଞ୍ଜାବର ଅମୃତସର ସହର ଜାଲିଆନୱାଲାବାଗଠାରେ ସାମରିକ ଉଚ୍ଚ ଅଧିକାରୀ ଜେନେରାଲ ଡ଼ାୟାରଙ୍କ ଦ୍ୱାରା ଘଟିଲା (୧୩ ଏପ୍ରିଲ୧୯୧୯) ଏକ ଅମାନବୀୟ ନରସଂହାର । ସରକାରୀ ତଥ୍ୟ ଅନୁଯାୟୀ ସେଥିରେ ପ୍ରାୟ ୩୯୭ ଜଣ ଲୋକ ପ୍ରାଣ ହାରାଇବା ସହ ଗୁରୁତର ଭାବେ ଆହତ ହେଲେ ୧୧୩୩ ଜଣ ଲୋକ । ଜାଲିଆନୱାଲାବାଗର ଏହି ଜଘନ୍ୟ ହତ୍ୟାକାଣ୍ଡ ଗାନ୍ଧିଜୀଙ୍କୁ ଏଭଳି ମର୍ମାହତ କଲା ଯେ ସେ ଜାତୀୟ କଂଗ୍ରେସ ଅଧିବେସନରେ ଆଗତ କଲେ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ । ଏହି ପ୍ରସ୍ତାବ କଲିକତା ଅଧିବେଶନ (ସେପ୍ଟେମ୍ବର ୧୯୨୦)ରେ ଗୃହୀତ ହୋଇ ନାଗପୁର ଅଧିବେଶନ (ଡିସେମ୍ବର ୧୯୨୦)ରେ ଅନୁମୋଦନ ଲାଭ କଲାପରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଆରମ୍ଭ ହେଲା ଅସହଯୋଗ ଆନ୍ଦୋଳନ । ଗାନ୍ଧିଜୀଙ୍କ ଅହିଂସା ନୀତି ଯାଦୁବିଦ୍ୟା ପରି ଦେଶବାସୀଙ୍କ ମନକୁ ଛୁଇଁଲା ଏବଂ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ପାଇଁ ସେମାନଙ୍କ ଭିତରେ ଖେଳିଗଲା ଅଭୁଦ ଉନ୍ମାଦନା । କଂଗ୍ରେସର ଜଣେ ଅପ୍ରତିହତ ନେତା ରୂପେ ଉଭା ହୋଇସାରିଥିବା ଗାନ୍ଧିଜୀଙ୍କୁ ନ ଦେଖି ମଧ ତାଙ୍କର କାର୍ଯ୍ୟାବଳୀ ଓ ଆହ୍ୱାନକୁ ଐଶ୍ୱରିକ ମୁକ୍ତିଦାତାର ଅକାଟ୍ୟ ବାଣୀ ରୂପେ ଗ୍ରହଣ କରି ସ୍କୁଲ, କଲେଜ, ସରକାରୀ ଚାକିରି ଛାଡ଼ି ଆନ୍ଦୋଳନରେ ଝାସ ଦେଲେ ଲକ୍ଷଲକ୍ଷ ଛାତ୍ର, ଯୁବକ ଓ ସରକାରୀ କର୍ମଚାରୀ ।

ବାସ୍ତବରେ ରାଜନୀତି କ୍ଷେତ୍ରରେ ମୋହନ ଦାସଙ୍କର ଥିଲା ଏକ ମୋହିନୀ ଶକ୍ତି ଏବଂ ସମମ୍ମୋହନକାରୀ ବ୍ୟକ୍ତିତ୍ୱ । ଅଳ୍ପ କେତୋଟି ମାସର ଅବଧି ମଧ୍ୟରେ ସେ ୩୫ ବର୍ଷର ଭାରତୀୟ ଜାତୀୟ କଂଗ୍ରେସକୁ ଦେଲେ ଏକ ନୂତନ ବିଶ୍ୱାସ ଓ ଅବବୋଧ । ଚାହୁଁ ଚାହୁଁ ସାରା ଭାରତରେ ସର୍ବପ୍ରଥମ ବ୍ୟାପକ ଗଣ ଆନ୍ଦୋଳନର ରୂପ ନେଲା ଅସହଯୋଗ ଆନ୍ଦୋଳନ । ଦକ୍ଷିଣ ଆଫ୍ରିକାରେ ଅବସ୍ଥାନ କାଳରେ ସେ ପାଇଥିଲେ ଏହି ଅସହଯୋଗ ଆନ୍ଦୋଳନର ସୂତ୍ର । ଇଂଲଣ୍ଡର ଅଭିଜାତ ପରିବାରର ଶିକ୍ଷିତା ନାରୀମାନେ ପୁଲିସର ଘେର ଭାଂଗି ପାର୍ଲାମେଣ୍ଟରେ ପ୍ରବେଶ ପାଇଁ ଚେଷ୍ଟା କରିଥିଲେ (୧୯୦୬) ନିଜ ପାଇଁ ଭୋଟ ଅଧିକାର ଦାବିରେ । ପାଞ୍ଚ ପାଉଣ୍ଡ ଜରିମାନା ଦେବାକୁ ଅରାଜି ହୋଇ ବରଣ କରିଥିଲେ ଜେଲଦଣ୍ଡ । ଏଭଳି ଅସହଯୋଗ ନୀତି ଗାନ୍ଧିଜୀଙ୍କ ହୃଦୟକୁ ସ୍ପର୍ଶ କରିଥିଲା ଏବଂ ଏହାକୁ 'ନିଷ୍କ୍ରିୟ ପ୍ରତିରୋଧ' ବୋଲି ସେ ଅଭିହିତ କରିଥିଲେ 'ଇଣ୍ଡିଆନ ଓପିନିୟନ' ପତ୍ରିକାରେ । ମାତ୍ର ଦକ୍ଷିଣ ଆଫ୍ରିକାରେ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଅସହଯୋଗର ଅହିଂସା ନୀତି ଏଠାରେ ନିଷ୍ଠାପର ଭାବରେ ପାଳନ ନ ହେବା କାରଣରୁ ଅନେକ ସ୍ଥାନରେ ପ୍ରକାଶ ପାଇଲା ହିଂସାତ୍ମକ ଆଚରଣ । ବିଶେଷ କରି ଉତ୍ତରପ୍ରଦେଶର ଗୋରଖପୁର ଜିଲ୍ଲାର ଚୌରୀଚୌରାଠାରେ (୫ ଫେବୃଆରୀ ୧୯୨୨) କ୍ରୁଦ୍ଧ ଆନ୍ଦୋଳନକାରୀ କେତେଜଣ ପୋଲିସ୍‌ଙ୍କୁ ପୋଡ଼ିମାରିଦେବା ଘଟଣା ଜାଣିବା ପରେ ଦୁଃଖରେ

ଫାଟିପଡ଼ିଲା ଅହିଂସାର ଅଗ୍ରଦୂତ ଗାନ୍ଧିଜୀଙ୍କ ଛାତି । ସେ ସ୍ୱୟଂ ଥିଲେ ନିଜ ବିଫଳତା ଓ ଦୁର୍ବଳତା ସଂପର୍କରେ ଏକାନ୍ତ ଶାଣିତ ଭାବରେ ସଚେତନ । ସେ କହୁଥିଲେ ଜ୍ଞାତରେ ହେଉକି ଅଜ୍ଞାତରେ ଆଚରିତ ଆପଣା ତ୍ରୁଟି ବିଚ୍ୟୁତିକୁ ସ୍ୱୀକାର କରିବା ହେଉଛି ଜଣକ ଚରିତ୍ରର ଅସଲ ଶକ୍ତିମତା ଓ ସାମର୍ଥ୍ୟ । ଏହି ଦୃଷ୍ଟିରୁ ତାଙ୍କର ସର୍ବୋତ୍ତମ ଶୌର୍ଯ୍ୟ ଓ ସାମର୍ଥ୍ୟ ନିହିତ ତାଙ୍କର ସ୍ୱୀକାରୋକ୍ତି ତଥା ଅନୁଶୋଚନା ଜନିତ ପ୍ରାର୍ଥନା ଓ ଉପବାସରେ । ତେଣୁ ଚୌରୀଚୌରା ଘଟଣା ପାଇଁ ସେ ନିଜକୁ ଦାୟୀ କଲେ ଏବଂ ଆତ୍ମଶୁଦ୍ଧି ତଥା ହିଂସାତ୍ମକ ମାର୍ଗରୁ ଲୋକଙ୍କୁ ନିବୃତ୍ତ ରଖିବା ପାଇଁ ଅବଲମ୍ବନ କଲେ ୫ ଦିନ ବ୍ୟାପୀ ଅନଶନ ବ୍ରତ । ତାଙ୍କର ହୃଦ୍‌ବୋଧ ହେଲା ଅହିଂସା ମାର୍ଗରେ ଆନ୍ଦୋଳନ ଚଳାଇ ରଖିବା ପାଇଁ ହେଲେ ଲୋକମାନଙ୍କ ପାଇଁ ଆହୁରି ତାଲିମ ଆବଶ୍ୟକ । ଏହି ଦୃଷ୍ଟିରୁ ସେ ସମଗ୍ର ଦେଶରୁ ସତ୍ୟାଗ୍ରହ ପ୍ରତ୍ୟାହାର କରିନେଲେ ଏବଂ ତାଙ୍କର ଏ ନିଷ୍ପତ୍ତିକୁ ଅନୁମୋଦନ କରିଥିଲା (୧୨ ଫେବୃଆରୀ ୧୯୨୨) କଂଗ୍ରେସ କାର୍ଯ୍ୟକାରୀ କମିଟି ।

କେବଳ ଭାରତର ରାଜନୈତିକ ସ୍ୱାଧୀନତା ପାଇଁ ନୁହେଁ, ଏଥିସହିତ ସେ ଲଢୁଥିଲେ ସାମାଜିକ ନ୍ୟାୟ ତଥା ଦେଶର କୋଟି କୋଟି ମୂକ, ନିର୍ବାକ ଜନତାର ବିଷଣ୍ଣ ଓ ବିଷାଦଗ୍ରସ୍ତ ମୁଖରେ ଟିକିଏ ଉଲ୍ଲାସ ଓ ହସ ଭରିଦେବା ପାଇଁ । ସଂଗଠନ ଗଢିବା କ୍ଷେତ୍ରରେ ତାଙ୍କ ପାଖରେ ଥିଲା ଅପରିସୀମ ଦକ୍ଷତା, ଧୈର୍ଯ୍ୟ ଓ ପାରଦର୍ଶିତା । ଗାନ୍ଧିଜୀଙ୍କୁ ଜଣେ ସୃଜନାତ୍ମକ, ଅବିଚଳିତ ଓ ସମ୍ବେଦନଶୀଳ ନିର୍ମାତା ଭାବେ ଅଭିହିତ କରି ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି– ''ସେ ଥିଲେ ସ୍ନିଗ୍ଧ, ସତେଜ ପବନର ଏକ ଶକ୍ତିଶାଳୀ ସ୍ରୋତ ସଦୃଶ୍ୟ, ଯାହା ଆମକୁ ଗ୍ରୀବା ପଲମ୍ବିତ କରି ଗହିରିଆ ପ୍ରଶ୍ୱାସରେ ମୁକ୍ତବାୟୁ ଗ୍ରହଣ କରିବାକୁ ସମର୍ଥ କଲା । ସେ ଥିଲେ ଆଲୋକର ଏକ ଦୀପ୍ତିମନ୍ତ ରେଖା, ଯିଏ ଚିରି ଦେଲା ଅନ୍ଧକାର ଏବଂ ଆମ ଆଖି ଆଗରୁ ହଟାଇଦେଲା ପରଦା: ସେ ଥିଲେ ଏକ ଘୂର୍ଣ୍ଣିବାତ୍ୟା, ଯାହା ବିପର୍ଯ୍ୟସ୍ତ ବିବର୍ତ୍ତିତ କରି ପକାଇଲା ଅନେକ ପୁରୁଣା, ଗତାନୁଗତିକ କଥା ବିଶେଷ ଭାବେ ଜନମାନସର ଚିନ୍ତନ ଓ କ୍ରିୟାଶୀଳତା ।''

ସତ୍ୟ ଓ ଅହିଂସା କେବଳ ଏକ ବିଶ୍ୱାସ ନୁହେଁ, ଗାନ୍ଧିଜୀଙ୍କ ପାଇଁ ଏହା ଥିଲା ଜୀବନ ସଂହିତା । ତାଙ୍କ ସମଗ୍ର ଜୀବନକୁ ଧାରଣ କରିଥିବା ଏକ ମହାନ୍ ଆଦର୍ଶ । ସେଥିପାଇଁ ସେ ଭାରତ ସ୍ୱାଧୀନତା ସଂଗ୍ରାମର ନାମ ରଖିଥିଲେ 'ସତ୍ୟାଗ୍ରହ' । ଏହା କେବଳ ଏକ ଆନ୍ଦୋଳନ ନଥିଲା, ବରଂ ଏହା ଥିଲା ସତ୍ୟ ପ୍ରତି ଆଗ୍ରହର ରଖିଥିବା ବ୍ୟକ୍ତିମାନଙ୍କ ପାଇଁ ଜୀବନ ଗଢିବାର ଏକ ବିଦ୍ୟାଳୟ । ସତ୍ୟାଗ୍ରହୀମାନଙ୍କୁ ସଚେତନ କରେଇବା ପାଇଁ ଗାନ୍ଧିଜୀ କହିଛନ୍ତି, 'ଗୋଟିଏ ଗାଲରେ ଚାପୁଡ଼ା ମାରିଲେ ଅନ୍ୟ ଗାଲଟି ଦେଖାଇବା କେବେ ଏକ ନିର୍ବୋଧତା ନୁହେଁ । ବରଂ ତାହା ଅକଳ୍ପନୀୟ ସହନଶୀଳତା । ସେହି ସହନଶୀଳତାର ପ୍ରଭାବରେ ଅନୁତାପ ଦଗ୍ଧ ହୁଏ ପ୍ରତିପକ୍ଷ । ଅନ୍ୟ ପକ୍ଷରେ ଇଟା ବଦଳରେ ପଥର ଫିଙ୍ଗିଲେ କିମ୍ବା ଆଖି ବଦଳରେ ଆଖି ତାଡ଼ିଲେ ସମସ୍ତେ ଆମେ ଅନ୍ଧ ହୋଇଯିବା ଦିନେନା ଦିନେ ।' ତେଣୁ ହିଂସା ହେଉଛି ବିନାଶର ଅନ୍ଧଗଳି । ଏହା ମଣିଷକୁ ସଜେଇ ଦିଏ ପଶୁ । ଏହି ଦୃଷ୍ଟିଭଙ୍ଗୀ ନେଇ ଗାନ୍ଧିଜୀ ପରବର୍ତ୍ତୀ ଅହିଂସ ଆନ୍ଦୋଳନର ରୂପରେଖ ପ୍ରସ୍ତୁତ କରିବା ସହିତ ନିଜକୁ ନିୟୋଜିତ କଲେ ବିଭିନ୍ନ ରଚନାତ୍ମକ କାର୍ଯ୍ୟରେ ।

ଗାନ୍ଧିଜୀ କହୁଥିଲେ ଗାଁରେ ଅଛି ଭାରତର ସାଂସ୍କୃତିକ ଆତ୍ମା । ତେଣୁ ଗାଁରେ ବାସ କରୁଥିବା ଦରିଦ୍ର ଖଟିଖିଆ ଓ କୃଷକମାନଙ୍କ ଆର୍ଥିକ ବିକାଶ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ତାଙ୍କ ସ୍ୱରାଜ୍ୟ ପରିକଳ୍ପନାରେ । ସେ ଜାଣିଥିଲେ ଗାଁ ଗହଳର ଗରିବ ଲୋକଙ୍କର ଦୈନନ୍ଦିନ ବ୍ୟବହୃତ ଦ୍ରବ୍ୟ ମଧ୍ୟରେ ମୁଖ୍ୟ ହେଉଛି ଲୁଣ । ତେଣୁ ଇଂରେଜ ସରକାରଙ୍କ ଦ୍ୱାରା ଲୁଣ ଉପରେ ମନମୁଖୀ ବର୍ଦ୍ଧିତ ଟିକସ ଥିଲା ଗରିବଙ୍କ ଉପରେ ପାହାର । ଏହାର ପ୍ରତିବାଦ ବାଞ୍ଛନୀୟ ଭାବି ହୃଦୟର

ଆହ୍ୱାନକ୍ରମେ ସେ ଗ୍ରହଣ କଲେ ସରକାରଙ୍କ ଏକଚାଟିଆ ଲୁଣ ଆଇନକୁ ଅମାନ୍ୟ କରିବା ପାଇଁ ସିଦ୍ଧାନ୍ତ । ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ୭୮ଜଣ ଉତ୍ସର୍ଗୀକୃତ ସହଯୋଗୀଙ୍କୁ ନେଇ ସାବରମତୀରୁ ଆରମ୍ଭ କଲେ (୧୨ ମାର୍ଚ୍ଚ ୧୯୩୦) ଐତିହାସିକ ଦାଣ୍ଡିଯାତ୍ରା । ୨୪ ଦିନ ମଧ୍ୟରେ ଅହମଦାବାଦଠାରୁ ଦାଣ୍ଡି ପର୍ଯ୍ୟନ୍ତ ପ୍ରାୟ ୨୪୧ ମାଇଲ୍ ଯାତ୍ରା ଭାରତର ୪୦କୋଟି ଜନତାକୁ ସଂଗଠିତ କରିବା ସହିତ ବ୍ରିଟିଶ ସାମ୍ରାଜ୍ୟରେ ସୃଷ୍ଟି କଲା କମ୍ପନ । ବନାଗ୍ନି ଭଳି ଦେଶ ବିଦେଶରୁ ଆସି ପହଞ୍ଚିଲେ ବହୁ ସାମ୍ବାଦିକ ଓ ଖବରକାଗଜ ପ୍ରତିନିଧି । ଆନ୍ଦୋଳନକୁ ପ୍ରଶମିତ କରିବା ଲକ୍ଷ୍ୟରେ ନିଶାର୍ଦ୍ଧରେ (୪ମଇ ୧୯୩୦) ଗାନ୍ଧିଜୀଙ୍କୁ ଗିରଫ କଲେ ଇଂରେଜ ସରକାର । ପରଦିନ ଏହି ଘଟଣା ପ୍ରଚାର ହେବା ମାତ୍ରେ ଆହୁରି ତୀବ୍ର ରୂପ ଧାରଣ କଲା ଆଇନ୍ ଅମାନ୍ୟ ଆନ୍ଦୋଳନ । ଏଥିରେ ସକ୍ରିୟ ଅଂଶ ଗ୍ରହଣ କରି ପର୍ଯ୍ୟାୟକ୍ରମେ କାରାବରଣ କଲେ ୬୦ ହଜାର ସତ୍ୟାଗ୍ରହୀ । ଶେଷରେ ସମାଧାନର ସୂତ୍ର ଖୋଜିବା ପାଇଁ ଗାନ୍ଧିଜୀ ଓ କଂଗ୍ରେସ ୱାର୍କିଂ କମିଟିର ଅନ୍ୟାନ୍ୟ ସଭ୍ୟମାନଙ୍କୁ ଖଲାସ ଘୋଷଣା କଲେ (୨୫ ଜାନୁୟାରୀ ୧୯୩୧) ବଡ଼ଲାଟ୍ । ‘ ଗାନ୍ଧି ଇନ୍‌ୱିନ ଚୁକ୍ତିନାମା’ (୫ ମାର୍ଚ୍ଚ୧୯୩୧) ଅନୁଯାୟୀ ପ୍ରତ୍ୟାହୃତ ହେଲା ଆଇନ ଅମାନ୍ୟ ଆନ୍ଦୋଳନ ।

ସାଧାରଣତଃ ଭାରତୀୟଙ୍କ ଦୃଷ୍ଟିରେ ଗାନ୍ଧି ଥିଲେ ଏକ ମହତ୍ତର ଚେତନା । ଏକ ସ୍ଫୁଲିଙ୍ଗର ସ୍ୱର । ତାଙ୍କ ଡାକରେ ସମ୍ମୋହିତ ହେଲା ଜାତି । ଜାଗି ଉଠିଲା ଆବାଳ ବୃଦ୍ଧ ବନିତା । କିଏ କାରାଗାରରେ ସଢ଼ିଲା ତ କିଏ ପ୍ରାଣ ହରାଇଲା ଫିରିଙ୍ଗ ପୋଲିସର ଗୁଳି ଚୋଟରେ । ବାଜିଆ ଭଳି ବାଳକ, ପରି ବେଓ୍ୱା (ଇରମ୍) ଭଳି ମହିଳା, ଲକ୍ଷ୍ମଣ ନାୟକ ପରି ଜନଜାତିର ମଣିଷ ମୃତ୍ୟୁକୁ ହାତ ମୁଠାରେ ଧରି ଗାଇଗଲେ ଦେଶ ପ୍ରେମର ମନ୍ତ୍ର ।

ଏହି କ୍ରମରେ ଗାନ୍ଧିଜୀଙ୍କର ‘ଭାରତ ଛାଡ଼ ଆନ୍ଦୋଳନ’(୧୯୪୨) ଥିଲା ଭାରତୀୟ ସ୍ୱାଧୀନତା ସଂଗ୍ରାମର ଏକ ନିର୍ଣ୍ଣାୟକ ମୋଡ଼ । ସାରା ଦେଶରେ ଖେଳିଯାଇଥିଲା ତାଙ୍କର ଆବେଗପୂର୍ଣ୍ଣ ‘କର ବା ମର’ ଡାକରାର ବୈଦ୍ୟୁତିକ ପ୍ରଭାବ । ପରିସ୍ଥିତି ଭୟାବହତାକୁ ଲକ୍ଷ୍ୟ କରି ଗାନ୍ଧିଜୀ ଏବଂ କଂଗ୍ରେସର ଅନ୍ୟାନ୍ୟ ନେତାଙ୍କୁ ଇଂରେଜ ସରକାର ଗିରଫ କରିନେବା ସହ କଠୋର କାର୍ଯ୍ୟାନୁଷ୍ଠାନ ଦ୍ୱାରା ଆନ୍ଦୋଳନକୁ ସାମୟିକ ଭାବରେ ଦବାଇ ଦେଲେ ସତ, କିନ୍ତୁ ଆଗାମୀ ଘଟଣା ପ୍ରବାହ ଉପରେ ପଡ଼ିଲା ତା’ର ଭୂକମ୍ପ ପ୍ରାୟ ପ୍ରଭାବ । ତ୍ୱରାନ୍ୱିତ ହେଲା ଭାରତ ମାଟିରୁ ଇଂରେଜଙ୍କର ପ୍ରସ୍ଥାନ ପ୍ରକ୍ରିୟା । ଶେଷରେ ଅସୁମାରି ସ୍ୱପ୍ନ ଓ ସମ୍ଭାବନାର ସୁନେଲି କିରଣ ବିଛୁରିତ କରି ଉଦୟ ହେଲା (୧୯୪୭ ଅଗଷ୍ଟ ୧୫) ସ୍ୱାଧୀନତାର ସୂର୍ଯ୍ୟ । ରଙ୍ଗ ବେରଙ୍ଗର ଆଲୋକମାଳାରେ ସଜ୍ଜିତ ହେଲା ରାଜଧାନୀ ଦିଲ୍ଲୀ । ଏକ ଅବର୍ଣ୍ଣନୀୟ ଆନନ୍ଦ ଓ ଉଲ୍ଲାସର ସହିତ ଦେଶ ପାଳନ କଲା ପ୍ରଥମ ସ୍ୱାଧୀନତା ଦିବସ । କିନ୍ତୁ ଅଖଣ୍ଡ ଭାରତର ବିଡ଼ମ୍ବିତ ସ୍ୱପ୍ନ ନେଇ ସ୍ୱାଧୀନ ଭାରତର ପ୍ରଥମ ସକାଳର ସୂର୍ଯ୍ୟଙ୍କୁ ଗାନ୍ଧିଜୀ କଲିକତାର କେଉଁ ଏକ ଅଖ୍ୟାତ ସ୍ଥାନରେ ରହି ପ୍ରଣତି ଜଣାଇଲେ ଅତି ବିମର୍ଷ ଭାବରେ ।

ଗାନ୍ଧିଜୀଙ୍କ ପରିକଳ୍ପିତ ସ୍ୱରାଜ୍ୟ ଥିଲା ସର୍ବଧର୍ମ ସମନ୍ୱୟର ମଞ୍ଚ । ହିନ୍ଦୁ ପରଂପରାକୁ ସେ ଗଣ୍ଠିଧନ କରିଥିଲେ ଏବଂ ହିନ୍ଦୁ ଧର୍ମ ଦର୍ଶନର ରୂପକଳ୍ପକୁ ସେ ବାରମ୍ବାର ବ୍ୟବହାର କରୁଥିଲେ ନିଜ ରଚନା ଓ ଉଚ୍ଚାରଣରେ । ଏହାକୁ ଭିତ୍ତିକରି ତାଙ୍କ ଚିନ୍ତନ ଓ କର୍ମ ହିନ୍ଦୁତ୍ୱ ଉପରେ ପର୍ଯ୍ୟବସିତ ବୋଲି ଯେଉଁମାନେ କହନ୍ତି, ସେମାନେ ଜାଣି ରଖିବା ଉଚିତ ଅନ୍ୟ ଧର୍ମପ୍ରତି ଯଥେଷ୍ଟ ଉଦାରତା ଓ ସର୍ବୋଚ୍ଚ ସମ୍ମାନ ପ୍ରଦର୍ଶନ କରିବାରେ କେବେ ହେଳା କରିନାହାନ୍ତି ଗାନ୍ଧିଜୀ । ସେଥିପାଇଁ ପ୍ରତିଦିନ ପ୍ରାର୍ଥନା ସଭାରେ ସେ ଉଦ୍ଧାର କରୁଥିଲେ ଭିନ୍ନଭିନ୍ନ ଧର୍ମର ଶାସ୍ତ୍ରବାଣୀ । ଧର୍ମକୁ ନେଇ ସେ ଅତି ସରଳ ଓ ଅକପଟ ଭାବେ କହିଛନ୍ତି – ‘‘ମୁଁ କହେ ଯେ ମୁଁ ଜଣେ ହିନ୍ଦୁ, ଜଣେ ସନାତନୀ ହିନ୍ଦୁ । ଖାସ୍ ଏହି କାରଣ ପାଇଁ ଯେ ମୁଁ ବିଚାର କରେ ମୁସଲମାନ, ଶିଖ୍, ପାର୍ସୀ, ଖୀରସ୍ତାନ, ଇହୁଦୀ ଏବଂ ଅନ୍ୟ ସମସ୍ତ ସଂପ୍ରଦାୟର ସଦସ୍ୟମାନେ

ହେଉଛନ୍ତି ଏକ ବିଶାଳ ଦ୍ରୁମର ଶାଖା ସମୂହ । ଈଶ୍ୱର ହିଁ ଏକ ଅଦୃଶ୍ୟ ଶକ୍ତି । ଭାରତର ସଂସ୍କୃତି ମୋତେ ଶିକ୍ଷା ଦେଇଛି ଯେ ସମସ୍ତ ସଂପ୍ରଦାୟର ମଣିଷମାନଙ୍କୁ ଆବୋରି ରଖିଛି ଗୋଟିଏ ମାତ୍ର ସାରଭୂତ ଐକ୍ୟ । ''ଅର୍ଥାତ ତାଙ୍କର ଧର୍ମ ଥିଲା ମାନବ ଧର୍ମ । ରାମ, ରହିମ, ଯୀଶୁ, ବୁଦ୍ଧ ସମସ୍ତେ ଥିଲେ ତାଙ୍କ ପାଇଁ ବନ୍ଦନୀୟ । 'ସବ୍‌କୋ ସନମତି ଦେ ଭଗବାନ' ଥିଲା ତାଙ୍କର ପ୍ରାର୍ଥନା । ମାନବ ଦୁଃଖରେ ସଦା ବିଗଳିତ ଥିଲା ଏହି ମହାମାନବଙ୍କ ପ୍ରାଣ । ତାଙ୍କ ହୃଦୟକୁ ଆଘାତ ଦେଇଥିଲା ହିନ୍ଦୁ ସମାଜର ଅସ୍ପୃଶ୍ୟତା ଓ ଦଳିତ ଜନତାର ଦୁଃଖ । ତେଣୁ ସ୍ୱାଧୀନତା ସଂଗ୍ରାମ ବେଳେ ତାଙ୍କ ୧୮ ଦଫା ରଚନାତ୍ମକ କାର୍ଯ୍ୟକ୍ରମରେ ଅସ୍ପୃଶ୍ୟତା ନିରାକରଣକୁ ସେ ଦେଇଥିଲେ ପ୍ରମୁଖ ସ୍ଥାନ । ଗାନ୍ଧିଜୀଙ୍କ ମତରେ, ମଦ୍ୟପାନ ଥିଲା ଚୋରି, ଡକାୟତି ଓ ବେଶ୍ୟାଗୃହ ଗମନଠାରୁ ଆହୁରି ହୀନ । ସେଥିପାଇଁ ସେ କହୁଥିଲେ ସ୍ୱାଧୀନତା ପ୍ରାପ୍ତିର ୨୪ ଘଣ୍ଟା ମଧ୍ୟରେ ନିଶା ନିବାରଣ ହେବା ଉଚିତ୍ ।

ପୁଞ୍ଜି ଓ ଶ୍ରମ ମଧ୍ୟରେ ସଂଘର୍ଷ ନୁହେଁ, ସେ ଚାହୁଁଥିଲେ ଏକ ସହଯୋଗଭିତ୍ତିକ ସଂପର୍କ । ତାଙ୍କ ମତରେ ପୁଞ୍ଜି ଓ ଶ୍ରମ ମଧ୍ୟରେ ଐକ୍ୟତାନ ସୃଷ୍ଟି କରାଯାଇ ପାରିଲେ ଯାଇ ସମ୍ଭବ ହେବ ରାଷ୍ଟ୍ରର ବିକାଶ । ଏହି ଆଭିମୁଖ୍ୟ ନେଇ ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ଥିବା ବିଭେଦ ଓ ବିଦ୍ୱେଷକୁ ସହମତି ଭିତ୍ତିରେ ଦୂର କରିବା ପାଇଁ ପରୀକ୍ଷା ନିରୀକ୍ଷା କରି ସେ ପାଇଥିଲେ ଇପ୍‌ସିତ ଫଳ । କେବଳ ଶିଳ୍ପ କ୍ଷେତ୍ରରେ ନୁହେଁ, ଆଲୋଚନା ଦ୍ୱାରା ସହମତି ହାସଲ ଥିଲା ସମାଜ ପରିଚାଳନାକୁ ତାଙ୍କର ଏକ ଅମୂଲ୍ୟ ଅବଦାନ । ଗାନ୍ଧି ଅର୍ଥନୀତିର ପ୍ରଥମ ଓ ପ୍ରଧାନ ଆଦର୍ଶ ହେଲା ସହଯୋଗିତା ଓ ସ୍ୱାବଲମ୍ବନଶୀଳତା । ଯେଉଁ ଅର୍ଥନୈତିକ ବ୍ୟବସ୍ଥା ଦ୍ୱାରା ଦରିଦ୍ର ଅଧିକ ଦରିଦ୍ର ହୁଏ ଏବଂ ଧନିକ ଅଧିକ ଧନୀ ହୁଏ, ସେ ବ୍ୟବସ୍ଥାର ଗାନ୍ଧି ଥିଲେ ଘୋର ବିରୋଧୀ । ଦେଶରେ କୁଟୀର ଶିଳ୍ପକୁ ପ୍ରାଧାନ୍ୟ ଦେଇ ସେ କହୁଥିଲେ ଉତ୍ପାଦନ ପାଇଁ ଯନ୍ତ୍ର ମୌଳିକ ହେବା ଆବଶ୍ୟକ । ଏହା ସତ୍ତ୍ୱେ ସେ ଶିଳ୍ପାୟନ ବିରୋଧୀ ବୋଲି କହିବା ଅନୁଚିତ୍ । ହରିଜନ ପତ୍ରିକାରେ (୨୨ଜୁନ୍ ୧୯୩୫) ସେ ଲେଖିଥିଲେ ''ଯେଉଁ ଉଦ୍ଭାବନ ଲୋକଙ୍କର ଉପକାର କରିବ ମୁଁ ତା'ର ପ୍ରଶଂସକ । ଲୋକଙ୍କ ହାତରେ ଯେଉଁ କାମ କରି ନ ହେବ, ତାହା ଯନ୍ତ୍ର ସାହାଯ୍ୟରେ ହେବା ଆବଶ୍ୟକ ମାତ୍ର ସେ ଯନ୍ତ୍ର ରାଷ୍ଟ୍ର ଅଧୀନରେ ରହିବା ଜରୁରୀ ।''

ମହିଳାଙ୍କ ମୌଳିକ ପ୍ରୟୋଜନ କ୍ଷେତ୍ରରେ ଗାନ୍ଧି ଯୋଡ଼ିଲେ ନୂଆ ଦିଗନ୍ତ । ସମାଜରେ ସେମାନଙ୍କ ପ୍ରତି ଯୁଗ ଯୁଗ ଧରି ଆଚରିତ ଅନ୍ୟାୟ ବିରୁଦ୍ଧରେ ସେ ପ୍ରକାଶ୍ୟ ପ୍ରତିବାଦ କଲେ ଏବଂ ମହିଳାଙ୍କ ଅଧିକାର ସପକ୍ଷରେ ଲଢ଼ିଲେ ସାଲିସ ବିହୀନ ଲଢେଇ । ନାରୀ ପ୍ରତି 'ଅବଳା' ଓ 'ଦୁର୍ବଳା' ଆଦି ଶବ୍ଦ ପ୍ରୟୋଗ ପ୍ରତିବାଦରେ ସେ କହନ୍ତି ଯଦି ବଳ କହିଲେ ନୃଶଂସ ଓ ପାଷାଣ୍ଡ ବଳକୁ ବୁଝାଏ, ତେବେ ମହିଳାମାନେ ସବୁଠାରୁ କମ୍ ପାଷାଣ୍ଡ । ଯଦି ଏହା ନୈତିକ ବଳକୁ ସୂଚାଏ, ତେବେ ମହିଳାମାନେ ପୁରୁଷଠାରୁ ଅମାପ ଓ ଅସୀମ ଭାବେ ଉତ୍କୃଷ୍ଟତର, ଉଚ୍ଚତର ଓ ମହତ୍ତର । ସ୍ୱାଧୀନତା କାଳରେ ସେ ମହିଳାମାନଙ୍କୁ ପ୍ରଦାନ କଲେ ପରିପୂରକ ଲିଙ୍ଗଗତ ଭୂମିକା । ରୋଷେଇ ଶାଳାରୁ ସ୍ୱାଧୀନତା ସଂଗ୍ରାମ ପର୍ଯ୍ୟନ୍ତ ଆକର୍ଷି ଆଣି ସେମାନଙ୍କ ଭିତରେ ଭରିଦେଲେ ସାହସ, ସାମର୍ଥ୍ୟ ଓ ଆତ୍ମପ୍ରତ୍ୟୟ । ତାଙ୍କରି ପ୍ରେରଣାରେ ରାଜନୈତିକ ଦୃଶ୍ୟପଟରେ ଉଭା ହେଲେ ବିପୁଳ ସଂଖ୍ୟକ ମହିଳା ।

ସରଳ, ସତ୍ୟଶୀଳ ଓ ନିରାଡ଼ମ୍ବର ଜୀବନ ପାଇଁ ଗାନ୍ଧିଜୀ ଥିଲେ ଭାରତୀୟତାର ପ୍ରତୀକ । ତାଙ୍କ ମତରେ ଆବଶ୍ୟକତାଠାରୁ ଅଧିକ ଦ୍ରବ୍ୟ ଗ୍ରହଣ ଓ ବ୍ୟବହାର ବିଷପାନ ସହିତ ସମାନ । ସେଥିପାଇଁ ସେ ନିଜକୁ ଶୂନ୍ୟ ଆବଶ୍ୟକତାକୁ କମାଇ ଦେବାକୁ ଚାହୁଁଥିଲେ ଏବଂ ତାହା ହିଁ ଦେଖେଇ ଦେଲେ ନିଜ ଜୀବନରେ । ହଳେ ଚପଲ, ଗୋଟିଏ ଚଷମା, ପକେଟ ଘଡ଼ିଟେ, ଆଣ୍ଠୁ ଲୁଚୁନଥିବା ଦିଖଣ୍ଡ ଖଦଡ଼ ଧୋତି ଓ ଚାଦର ଏବଂ ବାଡ଼ିଖଣ୍ଡେ । ବାସ୍, ଏତିକିରେ ବିତେଇ ଦେଲେ ଜୀବନ । ଗାନ୍ଧିଜୀ କହୁଥିଲେ ଆମର ଆବଶ୍ୟକତା ପୂରଣ ପାଇଁ ପ୍ରକୃତି ସବୁ ଜିନିଷ ସାଇତି ରଖିଛି ଖୁବ୍ ଯତ୍ନର ସହିତ । ମାତ୍ର

ଆମର ଲୋଭ ମେଣ୍ଟାଇବା ପାଇଁ ସେ ଶୂନ୍ୟଗର୍ଭା । ତେଣୁ ଅବିଚାରିତ ଭାବେ ଆମେ ଯଦି ପ୍ରାକୃତିକ ସଂପଦର ଲୁଣ୍ଠନ ଓ ଅପବ୍ୟବହାର କରିବା ତେବେ ଭୂପୃଷ୍ଠରୁ ଦିନେ ନିଶ୍ଚିହ୍ନ ହୋଇ ଯିବ ଜୀବସତ୍ତା ।

ଗାନ୍ଧିଜୀ ଥିଲେ ପ୍ରେମମୟ । ସେ ପ୍ରେମ ଶିଶୁର କପଟହୀନ ପ୍ରେମ ପରି ସରଳ ଓ ନିର୍ମଳ । ରୋଗୀ, ଅସହାୟ ମଣିଷ ବିଶେଷ କରି କୁଷ୍ଠାକ୍ରାନ୍ତମାନଙ୍କର ସେବା ପାଇଁ ସେ ଯେପରି ନିଜକୁ ଉନ୍ମୁଖ ରଖୁଥିଲେ, ତାହା କେବଳ ତାଙ୍କର ସେବା ଓ ତ୍ୟାଗ ନୁହେଁ, ସେଥିରେ ଥିଲା ହୃଦୟର ଗଭୀର ପ୍ରେମ ଓ ଆନ୍ତରିକତା । ପ୍ରସିଦ୍ଧ ସଂସ୍କୃତ ପଣ୍ଡିତ ପରଚୁରେ ଶାସ୍ତ୍ରୀଙ୍କର ରୋଗଗ୍ରସ୍ତ ଶରୀରକୁ ହେପାଜତ କରିବା ପାଇଁ ଯେତେବେଳେ କେହି ପ୍ରସ୍ତୁତ ନଥିଲେ, ସେତେବେଳେ ବେଦନା ଜର୍ଜରିତ ହୋଇ ପଡ଼ିଥିଲା ଗାନ୍ଧିଜୀଙ୍କ ହୃଦୟ । ସେ ନିଜେ ଆଦରି ନେଲେ କୁଷ୍ଠରୋଗୀ ପରଚୁରେଙ୍କ ଶରୀରକୁ ନିଜ କୋମଳ ହସ୍ତରେ ମାଲିସ କରିବାର ଦାୟିତ୍ୱ । ଏକା ପରୁଚୁରେ ନୁହଁନ୍ତି , ତାଙ୍କ ପ୍ରେମପୂର୍ଣ୍ଣ ସ୍ପର୍ଶ ପାଇ ଶାନ୍ତି ଅନୁଭବ କରିଛନ୍ତି ଏମିତି ଅନେକ ଅସୁସ୍ଥ ବ୍ୟକ୍ତି ।

ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱରେ ଥିଲା ଏକ ଚୁମ୍ବକୀୟ ଆକର୍ଷଣ । ତାଙ୍କର ଅନେକ ସମାଲୋଚକ ଥିଲେ, କିନ୍ତୁ ଜଣେ ହେଲେ ବି ନଥିଲେ ଶତ୍ରୁ । ଆହୁରି ଆଶ୍ଚର୍ଯ୍ୟର ବିଷୟ ହେଉଛି ତାଙ୍କୁ ସବୁଠାରୁ ବେଶି ଭକ୍ତି, ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ ତାଙ୍କ ନୀତି,ଆଦର୍ଶ ଓ କର୍ମପନ୍ଥା ସହିତ ଏକମତ ହୋଇପାରୁନଥିବା ବ୍ୟକ୍ତିମାନେ । ବାସ୍ତବରେ ଯେଉଁ ଦୁଇଜଣ ମହାନ୍ ଦେଶଭକ୍ତ ଗାନ୍ଧିଜୀଙ୍କୁ ଜାତିର ପିତା ଓ ମହାତ୍ମା ଭାବରେ ଅଭିହିତ କରିଛନ୍ତି, ସେ ଦୁଇଜଣ ଯାକ ଥିଲେ ଗାନ୍ଧିଜୀଙ୍କର କଠୋର ସମାଲୋଚକ । ଭାରତବର୍ଷକୁ ସ୍ୱାଧୀନ କରିବା ଥିଲା ଉଭୟ ଗାନ୍ଧିଜୀ ଓ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଚରମ ଓ ପରମ ଲକ୍ଷ୍ୟ । ମାତ୍ର ଲକ୍ଷ୍ୟ ହାସଲର ମାର୍ଗକୁ ନେଇ ଉଭୟଙ୍କ ମଧ୍ୟରେ ଥିଲା ମତଭେଦ । ଗାନ୍ଧିଜୀ ଅହିଂସାକୁ ଅସ୍ତ୍ର କରି ଜନ ଆନ୍ଦୋଳନ ଗଢି ତୋଳୁଥିବା ବେଳେ ନେତାଜୀ ଚାହୁଁଥିଲେ ସଶସ୍ତ୍ର ସଂଗ୍ରାମ । ସେଥିପାଇଁ ନେତାଜୀ ଦେଶଛାଡ଼ି ବିଦେଶ ମାଟିରେ ଗଢିଥିଲେ 'ଆଜାଦ୍ ହିନ୍ଦ୍ ଫୌଜ' । ଫୌଜର ଦେଶପ୍ରେମୀ ଯୋଦ୍ଧାମାନଙ୍କୁ ଉଦ୍‌ବୋଧନ ଦେବା ଅବସରରେ ସେ କହିଥିଲେ – ''ଗାନ୍ଧିଜୀଙ୍କ ସହିତ ମୋର ବିଚାରଧାରାରେ ପାର୍ଥକ୍ୟ ଥାଇପାରେ, ମାତ୍ର ସେ ହେଉଛନ୍ତି ଜାତୀୟ ଚେତନାର ମନ୍ତ୍ରଦାତା । ଏକ ମହାଜାତିର ଜନକ'' । 'ଆଜାଦ୍ ହିନ୍ଦ୍ ଫୌଜ' ରେଙ୍ଗୁନ୍ ଦେଇ ସ୍ଥଳପଥରେ ଅଗ୍ରସର ହେବା ପୂର୍ବରୁ ରାଷ୍ଟ୍ରପିତାଙ୍କର ଆଶୀର୍ବାଦ କାମନା କରି ନେତାଜୀ ରେଙ୍ଗୁନ୍ ରେଡ଼ିଓ ମାଧ୍ୟମରେ କହିଥିଲେ (୧୯୪୪)– ''ଭାରତର ସ୍ୱାଧୀନତା ପାଇଁ ଯୁଦ୍ଧ ଆରମ୍ଭ ହୋଇ ସାରିଲାଣି । ହେ ରାଷ୍ଟ୍ରପିତା! ଭାରତର ଏହି ପବିତ୍ର ମୁକ୍ତି ସଂଗ୍ରାମରେ ଆପଣଙ୍କର ଆଶୀର୍ବାଦ ଓ ଶୁଭେଚ୍ଛା ଆମର କାମ୍ୟ ।''

ଜାତୀୟତାର ଆକୃତି ଓ ପ୍ରକୃତିକୁ ନେଇ ଗାନ୍ଧିଜୀ ଏବଂ କବିଗୁରୁ ରବିନ୍ଦ୍ରନାଥ ଟାଗୋରଙ୍କ ମଧ୍ୟରେ ଥିଲା ମତଭେଦ । ଜାଲିଆନୱାଲା ବାଗ୍ ହତ୍ୟାକାଣ୍ଡ ପରେ ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନକୁ ଖୋଲାଖୋଲି ବିରୋଧ କଲେ କବିଗୁରୁ । ତାଙ୍କ ମତରେ ଛାତ୍ରଛାତ୍ରୀମାନେ ସ୍କୁଲ, କଲେଜ ଛାଡ଼ି ଆନ୍ଦୋଳନରେ ଯୋଗଦେବା ଦେଶପାଇଁ ଅହିତକର । ଏସବୁ ସତ୍ତ୍ୱେ ଉଭୟଙ୍କ ମଧ୍ୟରେ ଥିଲା ଏକ ମର୍ମସ୍ପର୍ଶୀ ଆନ୍ତରିକତା । ଗାନ୍ଧିଜୀଙ୍କ ପ୍ରଚଣ୍ଡ ଆତ୍ମବିଶ୍ୱାସ, ଦୃଢ ମନୋବଳ, ଅପରିସୀମ ଦେଶଭକ୍ତି, ବିଚକ୍ଷଣ ଦୂରଦୃଷ୍ଟି ତଥା ତ୍ୟାଗପୂତ ସନ୍ନ୍ୟାସୀ ଜୀବନ କବିଗୁରୁଙ୍କୁ ଏଭଳି ପ୍ରଭାବିତ ଓ ଆକର୍ଷିତ କରିଥିଲା ଯେ ସେ ତାଙ୍କୁ ସ୍ୱତଃ ସମ୍ବୋଧନ କରିଥିଲେ ମହାତ୍ମା ଭାବରେ ।

ଗାନ୍ଧିଜୀ କହୁଥିଲେ ତାଙ୍କ ସ୍ୱପ୍ନର ସ୍ୱରାଜ୍ୟ ଗଢିବା ପାଇଁ ସେ ଅନ୍ୟୂନ ୧୨୫ ବର୍ଷ ବଞ୍ଚିବେ, କିନ୍ତୁ ଚାଲିଗଲେ ୩୦ ଜାନୁଆରୀ ୧୯୪୮ରେ । ଜୀବନ ବ୍ୟାପୀ ଅହିଂସାରେ ଅଖଣ୍ଡ ବିଶ୍ୱାସ ରଖିଥିବା ଏହି ସତ୍ୟସନ୍ଧ ତପସ୍ୱୀଙ୍କର ଜୀବନଯାତ୍ରା ଶେଷରେ ମହାଯାତ୍ରାରେ ପରିଣତ ହେଲା ।

ଗାନ୍ଧିଜୀଙ୍କ ନିଧନ ପରେ ବ୍ରିଟେନ୍‌ର ତତ୍କାଳୀନ ଅର୍ଥମନ୍ତ୍ରୀ କହିଥିଲେ, ଆମ ସମୟର ଅନ୍ୟ କୌଣସି ବ୍ୟକ୍ତି ଏତେ ପ୍ରଭାବଶାଳୀ ଭାବେ ପ୍ରମାଣ କରିପାରିନଥିଲେ ଯେ, କୌଣସି ଭୌତିକ ବସ୍ତୁଠାରୁ ଗୋଟିଏ ଚିନ୍ତାଧାରା, ଆଦର୍ଶ ଓ ଆତ୍ମବଳ ଅଧିକ ଶକ୍ତିଶାଳୀ । ବାପୁଙ୍କ ସମ୍ପର୍କରେ ଏ ବିବୃତ୍ତିର ପ୍ରାସଙ୍ଗିକତା ସେତେବେଳେ ଯାହା ଥିଲା, ଆଜି ସାତ ଦଶନ୍ଧି ପରେ ବି ତାହା ଅପରିବର୍ତ୍ତିତ । ସେଥିପାଇଁ ଆଜି କେବଳ ଦେଶରେ ନୁହେଁ ବିଦେଶରେ ବି ବଢିଚାଲିଛି ତାଙ୍କ ନୀତି ଓ ଆଦର୍ଶର ପ୍ରସାର ଓ ପ୍ରଚାର । ଗାନ୍ଧି ବିଚାରକୁ ନେଇ ଦେଶ ବିଦେଶରେ ପ୍ରତିଦିନ ପ୍ରକାଶ ପାଉଛି ହଜାର ହଜାର ଲେଖା ।

ଗତ ୨୦୦୬ ମସିହା ଜାନୁଆରୀ ୩୦ ତାରିଖ ଗାନ୍ଧିଜୀଙ୍କ ମହାପ୍ରୟାଣ ସ୍ମୃତିରେ ନୂଆଦିଲ୍ଲୀ ସ୍ଥିତ ବିଜ୍ଞାନ ଭବନରେ ଅନୁଷ୍ଠିତ ହୋଇଥିବା 'ଶାନ୍ତି, ଅହିଂସା, ସଶକ୍ତିକରଣ ଏବଂ ଏକବିଂଶ ଶତାବ୍ଦୀର ଗାନ୍ଧି ଦର୍ଶନ' (Peace, Non-violence & Empowerment, Gandhian Philosophy in 21st Century) ଶୀର୍ଷକ ଆନ୍ତର୍ଜାତିକ ମହାସମ୍ମିଳନୀରେ ଯୋଗ ଦେଇଥିଲେ ଗାନ୍ଧି ଦର୍ଶନ ଉପରେ ବିଶ୍ୱାସ ରଖୁଥିବା ପୃଥିବୀର ୯୦ଜଣ ବିଶିଷ୍ଟ ପ୍ରତିନିଧି । ସେମାନଙ୍କ ମଧ୍ୟରେ ଥିଲେ ଜାମ୍ବିଆର ପୂର୍ବତନ ରାଷ୍ଟ୍ରପତି କେନେଥ କାଉଣ୍ଡା (Keneth Kaunda), ପୋଲାଣ୍ଡର ଲିଚ୍ ୱାଲେସ୍ (Lech walesh) ଓ ବିଶପ୍ ଦେଶମଣ୍ଡ ଟୁଟୁ ପ୍ରମୁଖ ନୋବେଲ ଶାନ୍ତି ପୁରସ୍କାର ବିଜେତା । ବିଂଶ ଶତାବ୍ଦୀରେ ଗାନ୍ଧିଙ୍କ ପ୍ରବର୍ତ୍ତିତ ସତ୍ୟାଗ୍ରହ ଏବଂ ତାଙ୍କ ରାଜନୈତିକ, ଅର୍ଥନୈତିକ ଓ ମାନବବାଦୀ ଦର୍ଶନ ସମ୍ପର୍କରେ ତାତ୍ତ୍ୱିକ ଆଲୋଚନା ପୂର୍ବକ ପ୍ରତିନିଧିମାନେ ସମସ୍ୱରରେ କହିଥିଲେ ଯେ, ଏକବିଂଶ ଶତାବ୍ଦୀର ମାନବ ଜାତିକୁ ଧ୍ୱଂସ ଆଡ଼କୁ ଟାଣି ନେଉଥିବା ପରମାଣୁ ଅସ୍ତ୍ରଶସ୍ତ୍ର ଓ ହିଂସା କବଳରୁ ରକ୍ଷା କରିବା ପାଇଁ ଦିନକୁ ଦିନ ଅଧିକ ପ୍ରାସଙ୍ଗିକ ହୋଇପଡୁଛି ଗାନ୍ଧିଙ୍କ ଅହିଂସା ନୀତି ।

ବାସ୍ତବରେ ନିଜର ଆଚରଣ ନିର୍ଭୀକତା ଓ ମାନବ ପ୍ରୀତିକୁ ଏକ ସୁସଂହତ ଦର୍ଶନରେ ପରିଣତ କରି ସାରା ପୃଥିବୀକୁ ଚମତ୍କୃତ କରିଦେଇଥିବା ଏହି ବିଶ୍ୱନାୟକଙ୍କ ଜୀବନ ଥିଲା ସତ୍ୟ ଓ ଅହିଂସାର ଏକ ଅନିର୍ବାଣ ଯଜ୍ଞ । ସମୟର ଏକ ପ୍ରବହମାନ ଧାରା । ସେଥିପାଇଁ କୁହାଯାଏ ଗାନ୍ଧିବାଦ ଫଳପୁଷ୍ପ ଧାରଣ କରିଥିବା ଏବଂ ପ୍ରତିଦିନ ପଲ୍ଲବିତ ହେଉଥିବା ଏକ ମହାଦ୍ରୁମ । ତା'ର ଛାଇ ତଳେ ଆଶ୍ରୟ ନେଇଛନ୍ତି ପୃଥିବୀର ଲକ୍ଷ ଲକ୍ଷ ମଣିଷ । ଅଥଚ ଆମେ ଭାରତବାସୀ ଏକବିଂଶ ଶତାବ୍ଦୀରେ ଗାନ୍ଧିବାଦ ତା'ର ପ୍ରାସଙ୍ଗିକତା ହରାଇଛି ବୋଲି କହି ତାଙ୍କର ବିଚାରଧାରା ଓ ଆଦର୍ଶଠାରୁ ଦୂରେଇ ଯାଉଛୁ ।

ବିଜୁ ପଟ୍ଟନାୟକ ନଗର
ମହତାବ ଛକ, ଭଦ୍ରକ



# ଭାରତୀୟ ସମ୍ବିଧାନର ଜନକ ଭାରତରତ୍ନ ଡକ୍ଟର ବି.ଆର. ଆମ୍ବେଦକର

ଜୟଶଙ୍କର ନାୟକ

ସମ୍ବିଧାନକୁ ଗୋଟିଏ ରାଷ୍ଟ୍ରର ଦର୍ପଣ ଭାବେ ଗ୍ରହଣ କରାଯାଇଥାଏ । ଗୋଟିଏ ସ୍ୱାଧୀନ ରାଷ୍ଟ୍ରର ଶାସନ ପରିଚାଳନା ନିମନ୍ତେ ଅନୁସୃତ ନିୟମାବଳୀର ସମଷ୍ଟିକୁ ସମ୍ବିଧାନ କୁହାଯାଏ । ଭାରତୀୟ ସମ୍ବିଧାନ ହେଉଛି ବିଶ୍ୱର ଦୀର୍ଘତମ ଲିଖିତ ସମ୍ବିଧାନ । ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଭାରତ ସ୍ୱାଧୀନତା ହାସଲ କଲା ବେଳେ ଦେଶରେ ଏକ ସ୍ଥାୟୀ ସମ୍ବିଧାନ ନ ଥିଲା । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ବ୍ରିଟିଶ ସାମ୍ବିଧାନିକ ବ୍ୟବସ୍ଥାରୁ ଅପସାରଣ ହୋଇ ଭାରତ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହେବା ସହ ଏକ ଲିଖିତ ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା । ଭାରତୀୟ ସମ୍ବିଧାନ, ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମ୍ବିଧାନ ସଭା ଦ୍ୱାରା ଗୃହୀତ ହୋଇଥିଲା । ଏହା ତା' ପରେ କାର୍ଯ୍ୟକାରୀ ହୋଇଥିଲା । ସମ୍ବିଧାନର ମୂଳ କପି ଏବେ ମଧ୍ୟ ପାର୍ଲାମେଣ୍ଟ ଲାଇବ୍ରେରୀରେ ରଖାଯାଇଛି । ସେତେବେଳେ ଏହା ସପକ୍ଷରେ ସଂସଦର ୨୮୪ ଜଣ ସଦସ୍ୟ ଦସ୍ତଖତ କରିଥିଲେ । ସେମାନଙ୍କ ମଧ୍ୟରେ ୧୫ଜଣ ମହିଳା ସଦସ୍ୟା ଥିଲେ । ସେତେବେଳେ ବିଶ୍ୱର ବିଭିନ୍ନ ରାଷ୍ଟ୍ରର ସମ୍ବିଧାନରେ ୨୨ ଗୋଟି ଭାଗ ବା ଅଧ୍ୟାୟ ମଧ୍ୟରେ ୩୯୫ଟି ଧାରା ୮ ଗୋଟି ପରିଶିଷ୍ଟ ରହିଥିଲା । ବର୍ତ୍ତମାନ ଭାରତୀୟ ସମ୍ବିଧାନରେ ଏକ ପ୍ରସ୍ତାବନା ଓ ୨୫ଟି ଭାଗରେ ୪୭୦ଟି ଧାରା ରହିଛି । ତା' ସହିତ ଏଥିରେ ୧୨ଟି ପରିଶିଷ୍ଟ ରହିଛି ।



ଆମ୍ବେଦକର ଭାରତର ସମ୍ବିଧାନକୁ ଦୁଇବର୍ଷ ଏଗାର ମାସ ୧୮ ଦିନରେ ପ୍ରସ୍ତୁତ କରି ରାଷ୍ଟ୍ରକୁ ସମର୍ପି ଦେଇଥିଲେ । ୨୬ ଜାନୁଆରୀ ୧୯୫୦ ମସିହାରେ କାର୍ଯ୍ୟକାରୀ କରାଯାଇଥିବା ଭାରତର ସମ୍ବିଧାନ, ପ୍ରଥମ ଥର ପାଇଁ ଭାରତ ସରକାରଙ୍କ ଦ୍ୱାରା ୨୦୧୫ ମସିହାରେ ''ସମ୍ବିଧାନ ଦିବସ'' ରୂପେ ପାଳନ କରାଗଲା । ସେହି ବର୍ଷ ଭାରତୀୟ ସମ୍ବିଧାନର ଜନକ ବାବାସାହେବ ଭୀମରାଓ ରାମଜୀ ଆମ୍ବେଦକରଙ୍କ ଶହେ ପଚିଶତମ ଜୟନ୍ତୀ ପାଳିତ ହୋଇଥିଲା । ତାଙ୍କ ସମ୍ମାନାର୍ଥେ ''ସମ୍ବିଧାନ ଦିବସ'' ପାଳନ ନିମନ୍ତେ କେନ୍ଦ୍ର ସରକାର ନିଷ୍ପତ୍ତି ନେଇଥିଲେ । ତାହାକୁ ବିଭିନ୍ନ ମହଲରେ ସ୍ୱାଗତ କରାଯାଇଥିଲା ।

ଡକ୍ଟର ଭୀମରାଓ ଆମ୍ବେଦକର ୧୮୯୧ ମସିହା ଏପ୍ରିଲ ମାସ ୧୪ ତାରିଖରେ ମଧ୍ୟପ୍ରଦେଶର ଏକ ମରାଠୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଛୋଟ ବେଳୁ ସାମାଜିକ-ଅର୍ଥନୈତିକ ଭେଦଭାବର ଶିକାର ହୋଇଥିଲେ । ଆମ୍ବେଦକରଙ୍କୁ ଯେତେବେଳେ ପାଞ୍ଚ ବର୍ଷ ତାଙ୍କ ମା' ଇହଧାମ ପରିତ୍ୟାଗ କଲେ । ମା' ଛେଉଣ୍ଡ ହୋଇ ଆମ୍ବେଦକର ଦୁଃଖ, ଆର୍ଥିକ ଅନଟନ, ସାମାଜିକ ନିର୍ଯ୍ୟାତନା, ଦାରିଦ୍ର୍ୟର

ପକ୍ଷାଘାତ ଓ ବହୁକୁଟୁମ୍ବ ପାରିବାରିକ ବାଧାଦେଇ ମଧ୍ୟ ବିଦ୍ୟା ଅଧ୍ୟୟନରୁ କେବେହେଲେ ବିରତ ହୋଇ ନ ଥିଲେ । ଭାଇଭଉଣୀଙ୍କ ମଧ୍ୟରୁ କେବଳ ସେ ହାଇସ୍କୁଲ ଯାଏଁ ପହଞ୍ଚି ପାରିଥିଲେ । ଏଲଫିନ୍‌ଷ୍ଟୋନ ହାଇସ୍କୁଲରେ ଏକମାତ୍ର ଦଳିତ ଛାତ୍ର ଭାବେ ଆମ୍ବେଦକର ଯୋଗ ଦେଇଥିଲେ । ଏହା ପରେ ଏଲ୍‌ଫିଲଷ୍ଟୋନ କଲେଜରୁ ସ୍ନାତକ ହାସଲ କରିବା ପରେ ସେ ବିଦେଶକୁ ଉଚ୍ଚଶିକ୍ଷା ଲାଭ ପାଇଁ ଅର୍ଥନୀତିରେ ପିଏଚ୍.ଡି. ଡିଗ୍ରୀ ଲାଭକଲେ । ଇଂଲଣ୍ଡର ପ୍ରଖ୍ୟାତ ଅର୍ଥନୀତି ସ୍କୁଲରେ ଅଧିକ ଗବେଷଣା କରି ଡି.ଏସ୍.ସି. ଡିଗ୍ରୀ ଉପାର୍ଜନ କଲେ । ଭାରତ ଫେରି ସେ ଡେନହମ୍ କଲେଜରେ ପ୍ରଫେସର ଥିବା ବେଳେ ସେ ଅନ୍ୟ ଅଧ୍ୟାପକଙ୍କ ଦ୍ୱାରା ଭେଦଭାବର ଶିକାର ହୋଇଥିଲେ ତେଣୁ ସେ ଅଧାପନା ଛାଡି ଓକିଲାତି କରିବା ସଙ୍ଗେ ସଙ୍ଗେ ଦଳିତ ହରିଜନ ଅଧିକାର ଆରମ୍ଭ କରିଥିଲେ । ସାମାଜିକ ଭେଦଭାବ ବିରୋଧରେ ଲଢିବା ପାଇଁ ଆହ୍ୱାନ କରି ସେ ନିଷ୍ପେଷିତ ବର୍ଗର ପ୍ରତିନିଧି ସାଜି ଥିଲେ । ବାବା–ସାହେବ ନାମରେ ପ୍ରସିଦ୍ଧ ଏହି ରାଜନେତା ଜଣକ ଆଇନ ଉପାଧି ହାସଲ କରିବା ସହ ଅର୍ଥନୀତି ଓ ରାଜନୀତି ବିଜ୍ଞାନ ଅଧ୍ୟୟନ ଅନୁସନ୍ଧାନ କରିଥିବାରୁ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଲଣ୍ଡନ ସ୍କୁଲ୍ ଅଫ୍ ଇକୋନୋମିକ୍ସ ପକ୍ଷରୁ ତାଙ୍କୁ ଡକ୍ଟରେଟ ଉପାଧିରେ ସମ୍ମାନିତ କରାଯାଇଥିଲା । ଜବାହରଲାଲ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ସ୍ୱାଧୀନ ଭାରତର ପ୍ରଥମ ଆଇନ ମନ୍ତ୍ରୀ ଭାବେ ବାବା ସାହେବ ଦାୟିତ୍ୱ ନିର୍ବାହ କରିଥିଲେ । ମଧୁମେହ ରୋଗରେ ପୀଡିତ ହୋଇ ଆମ୍ବେଦକରଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଅବନତି ହେବାରୁ ୧୯୫୬ ଡିସେମ୍ବର ମାସ ୬ ତାରିଖରେ ମହାପ୍ରୟାଣ ହୋଇଥିଲା । ଭାରତ ସରକାର ତାଙ୍କୁ ୧୯୯୦ ମସିହାରେ ସ୍ମୃତିକୁ ଚିର ସ୍ମରଣୀୟ କରି ରଖିବା ପାଇଁ ମରଣୋତ୍ତର ଭାବେ 'ଭାରତରତ୍ନ' ଉପାଧି ପ୍ରଦାନ କରିଥିଲେ । ତେଣୁ ସେ ଏକାଧାରରେ ଜଣେ ଭାରତୀୟ ନୀତି ପ୍ରଣେତା, ରାଜନୀତିକ ନେତା, ଦାର୍ଶନିକ, ଐତିହାସିକ, ବାଗ୍ମୀ, ଅର୍ଥନୀତିଜ୍ଞ ଓ ସାମ୍ବାଦିକ ଥିଲେ । ସମ୍ବିଧାନର ଖସଡ଼ା ପ୍ରସ୍ତୁତ କରିବା ଓ ଛୁଆଁ ଅଛୁଆଁ ଭେଦଭାବକୁ ବେଆଇନ୍ କରିବାରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା ।

ଆମ ପାଇଁ ସ୍ୱାଧୀନତା ଏକ ଦାନ ସ୍ୱରୂପ ନ ଥିଲା । ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡିଛି । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆଜି ଆମର ଚିର ନମସ୍ୟ । ସେମାନଙ୍କୁ ସ୍ମରଣ କରିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ, ଭାରତ ଆଜି ତାଙ୍କ ନିକଟରେ ଚିରକୃତଜ୍ଞ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହେବା ପରେ ଆମେ ଆମ ଦେଶକୁ କିପରି ଚଳାଇବୁ ସେଥିଲାଗି ଆଇନ୍ କାନୁନ ପ୍ରସ୍ତୁତ କଲୁ । ଏହି ନିୟମାବଳୀରେ କେଉଁ ଉପାୟରେ ସରକାର ଗଠନ ହେବ, ଦେଶର ନୀତି କଣ ରହିବ, ସବୁ ଉଲ୍ଲେଖ କରାଗଲା । ଏହାକୁ କୁହାଗଲା ସମ୍ବିଧାନ । ଏହି ସମ୍ବିଧାନରେ ବିଦେଶୀ ଶାସନରୁ ମୁକ୍ତ ହେବା ପରେ ଦେଶ କିପରି ଶାସିତ ହେବ ଏବଂ କେଉଁ ଆଧାରରେ ଦେଶର ଶାସନ ବ୍ୟବସ୍ଥା କାର୍ଯ୍ୟ କରିବ ଏଥିପାଇଁ ବହୁ ସମସ୍ୟା ଥିଲା । ଦେଶ ସ୍ୱାଧୀନତା ଲାଭ ପରେ ସମ୍ବିଧାନ ପ୍ରସ୍ତୁତି ପାଇଁ ଏକ ସମ୍ବିଧାନ ସଭା ଗଠନ ହେଲା । ସେତେବେଳେ ଏହାର ପ୍ରଥମ ବୈଠକ ୧୯୪୬ ମସିହା ଡିସେମ୍ବର ମାସ ୯ ତାରିଖରେ ବସିଥିଲା ଏବଂ ସେହି ସମୟରେ ଏହାର ସଭ୍ୟ ସଂଖ୍ୟା ୨୯୯ ଥିଲା । ୨୮ ଅଗଷ୍ଟ ୧୯୪୭ରେ ଡକ୍ଟର ଭୀମରାଓ ଆମ୍ବେଦକରଙ୍କ ନେତୃତ୍ୱରେ ଭାରତୀୟ ସମ୍ବିଧାନ କମିଟି ଆରମ୍ଭ ହେଲା । ସମ୍ବିଧାନ ପ୍ରଣୟନ କାର୍ଯ୍ୟ ଆରମ୍ଭ ହୋଇ ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମାପ୍ତ ହୋଇଥିଲା ଏବଂ ଗଭୀର ଅଧ୍ୟୟନ ଓ ବହୁବିଚାର ବିମର୍ଶ ପରେ ତାହା ଗୃହୀତ ହୋଇଥିଲା । ଏଥିରେ ବଛା ବଛା ରାଜନୀତିଜ୍ଞ, ସମ୍ବିଧାନ ବିଶେଷଜ୍ଞ, ଆଇନଜ୍ଞ ଓ ଶିକ୍ଷାବିତ୍‌ମାନେ ସଭ୍ୟ ଥିଲେ । ଏଥିରେ ଅଧ୍ୟକ୍ଷତା କରିଥିଲେ ଭାରତର ଆଇନ ମନ୍ତ୍ରୀ ଡକ୍ଟର ବାବାସାହେବ ଆମ୍ବେଦକର, ତାଙ୍କର ବିଶେଷ ଅବଦାନ ଯୋଗୁଁ ତାଙ୍କୁ ଭାରତୀୟ ସମ୍ବିଧାନର ପିତା ବୋଲି କୁହାଯାଏ । ଆମ ସମ୍ବିଧାନର ନିର୍ମାତାମାନେ ଅନ୍ୟ ଦେଶର ସମ୍ବିଧାନ ଅଧ୍ୟୟନ କରି ଆମ ଦେଶ ପାଇଁ ଯାହା ଉପଯୋଗ ତାହା ଆମ ସମ୍ବିଧାନରେ ଖଞ୍ଜି

ଦେଇଥିଲେ । ଏହି ସମ୍ବିଧାନରେ ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରା ଦେଶବାସୀଙ୍କ ଆଶା ଆକାଂକ୍ଷା ଓ ଭାରତର ଯେଉଁ ମହାନ୍ ପରମ୍ପରା ଓ ଦର୍ଶନ ତାହା କୋଣ ଅନୁକୋଣରେ ପ୍ରତିଫଳିତ ହୋଇଛି । ଏହି ବିଶାଳ ଦେଶର ନାନା ଅଞ୍ଚଳ, ଭାଷା, ଜାତି, ଧର୍ମ–ସବୁକୁ ଆଖି ଆଗରେ ରଖି ଆଇନ ତିଆରି କରି ସେଗୁଡିକୁ ଲିପିବଦ୍ଧ କରୁ କରୁ ଏହା ପୃଥିବୀର ସର୍ବବୃହତ୍ ଲିଖିତ ସମ୍ବିଧାନରେ ପରିଣତ ହୋଇଗଲା ।

ଲିଖିତ ସମ୍ବିଧାନରେ ଅନେକ ଥର ସଂଶୋଧନ କରାଯିବା ପରେ ଏହାକୁ ସର୍ବସମ୍ମତିକ୍ରମେ ଲାଗୁ ହେବା ପାଇଁ ୨ ବର୍ଷ ୧୧ ମାସ ୧୮ ଦିନ ସମୟ ଲାଗିଥିଲା । ଭାରତୀୟ ସମ୍ବିଧାନରେ ସଂସଦୀୟ ଶାସନ ପଦ୍ଧତି, ଲୋକସଭା ତଥା ବିଧାନସଭା ପ୍ରତି ମନ୍ତ୍ରିମଣ୍ଡଳର ସାମୂହିକ ଉତ୍ତରଦାୟିତ୍ୱ, ରାଷ୍ଟ୍ରମୁଖ୍ୟ ଭାବେ ରାଷ୍ଟ୍ରପତିଙ୍କ ଔପଚାରିକ ସ୍ଥିତି, ସଂସଦ ଏବଂ ବିଧାନମଣ୍ଡଳଗୁଡିକର ପ୍ରକ୍ରିୟା ତଥା ସଂସଦ ଓ ବିଧାନମଣ୍ଡଳଗୁଡିକର ସଦସ୍ୟମାନଙ୍କର ବିଶେଷ ଅଧିକାର ଏବଂ କ୍ଷମତାଗୁଡିକର ବ୍ରିଟେନ ସମ୍ବିଧାନରୁ ନିଆଯାଇଛି । ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଗଭର୍ଣ୍ଣମେଣ୍ଟ ହାଉସର ଦରବାର ହଲ୍‌ଠାରେ ଭାରତର ପ୍ରଥମ ରାଷ୍ଟ୍ରପତି ଭାବେ ଶପଥ ନେଇଥିଲେ । ସେଦିନ ଇରୱିନ ଷ୍ଟାଡିୟମଠାରେ ପତାକା ଉତ୍ତୋଳନ କରାଯାଇଥିଲା । ଏହା ଥିଲା ସ୍ୱାଧୀନ ଭାରତର ପ୍ରଥମ ଗଣତନ୍ତ୍ର ଦିବସ ପାଳନ । ସେଦିନ ମୁଖ୍ୟ ଅତିଥି ଭାବେ ଉପସ୍ଥିତ ଥିଲେ ଇଣ୍ଡୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣ ।

ଭାରତୀୟ ସମ୍ବିଧାନ ପୃଥିବୀର ସର୍ବାପେକ୍ଷା ବୃହତ୍ତମ ଲିଖିତ ସମ୍ବିଧାନ । ସମ୍ବିଧାନର ପ୍ରସ୍ତାବନା ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ । ଜଷ୍ଟିସ୍ ଏସ୍.ଏମ୍. ସିକ୍ରିଙ୍କ ମତରେ ଆମ ସମ୍ବିଧାନରେ ପ୍ରସ୍ତାବନା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ସମ୍ବିଧାନର ଅଧ୍ୟୟନ ଓ ବ୍ୟାଖ୍ୟା ପ୍ରସ୍ତାବନାର ଥିବା ମହନୀୟ ଉଦ୍ଦେଶ୍ୟ ଓ ଆଦର୍ଶ ଅନୁସାରେ ହେବା ବିଧେୟ । ତେଣୁ ଏହା ହେଉଛି ସମ୍ବିଧାନ ରୂପକ ମନ୍ଦିରର ମୁଖ୍ୟଶାଳା ସ୍ୱରୂପ । ଏତଦ୍ ବ୍ୟତୀତ ଏହାକୁ ସାମ୍ବିଧାନିକ ଉପାଦେୟତାର ମାପକାଠି ବୋଲି କୁହାଯାଇଅଛି । ତେଣୁ ଏହି ପ୍ରସ୍ତାବନା ଅଧ୍ୟୟନ କଲେ ସମ୍ବିଧାନର ପ୍ରକୃତି ସ୍ୱରୂପ ସଂପର୍କରେ ଧାରଣା କରାଯାଇପାରିବ ।

ଭାରତୀୟ ସମ୍ବିଧାନର ପ୍ରସ୍ତାବନା ମାଧ୍ୟମରେ ସମ୍ବିଧାନର ସମସ୍ତ ବିଷୟ ସଂକ୍ଷିପ୍ତ ଭାବେ ବର୍ଣ୍ଣିତ ହୋଇଅଛି । ଏଥିରେ କୁହାଯାଇଅଛି, 'ଆମେ ଭାରତର ଜନସାଧାରଣ ଭାରତକୁ ଏକ ସାର୍ବଭୌମ, ସମାଜବାଦୀ ଧର୍ମନିରପେକ୍ଷ, ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ କରିବା ପାଇଁ ଅଦ୍ୟ ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ଆମ ଶାସନ ବିଧାୟକ ସଭାରେ ଗୃହୀତ ଏହି ଶାସନ ବିଧାନକୁ ଗ୍ରହଣ କରିଅଛୁ ଏବଂ ଶପଥ ନେଉଛୁଁ ଯେ ଭାରତର ପ୍ରତ୍ୟେକ ନାଗରିକ ସାମାଜିକ, ଅର୍ଥନୈତିକ, ରାଜନୈତିକ କ୍ଷେତ୍ରରେ ସୁବିଚାର ଲାଭ କରିବେ । ପ୍ରତ୍ୟେକଙ୍କର ଚିନ୍ତଭାବ, ଅଭିମତ, ଧର୍ମବିଶ୍ୱାସ ଓ ଈଶ୍ୱର ଉପାସନାରେ ସ୍ୱାଧୀନତା ରହିବ, ପ୍ରତ୍ୟେକ ନାଗରିକ ସମାନ ସୁବିଧା ସୁଯୋଗ ଓ ସମାନ ଅଧିକାର ପାଇବେ । ବ୍ୟକ୍ତିଗତ ମହତ୍ତ୍ୱ ଏବଂ ଜାତିଗତ ଐକ୍ୟ ଉପରେ ପ୍ରତିଷ୍ଠିତ ଭ୍ରାତୃଭାବରେ ବିକାଶ ଉଦ୍ଦେଶ୍ୟରେ ଏହାକୁ ଆଇନରେ ପରିଣତ କରି ଆମେ ନିଜ ପ୍ରତି ପ୍ରୟୋଗ କରିବୁ' ।

ପ୍ରସ୍ତାବନା ପ୍ରଥମତଃ–''ଆମେ ଭାରତର ଲୋକ'' ଅର୍ଥାତ୍ ସମ୍ବିଧାନର ସ୍ରଷ୍ଟା ହେଉଛନ୍ତି ଭାରତୀୟ ଲୋକମାନେ । ଏହା ଭାରତର ଜନସାଧାରଣଙ୍କ ପ୍ରତିନିଧିମାନଙ୍କ ଦ୍ୱାରା ପ୍ରଣୀତ ହୋଇଅଛି । ତେଣୁ ସାମ୍ବିଧାନିକ ସାର୍ବଭୌମତ୍ୱ ଜନସାଧାରଣଙ୍କ ଉପରେ ନ୍ୟସ୍ତ । ଭାରତର ସମ୍ବିଧାନ ଶାସନ ବିଧାୟକ ସଭା ମାଧ୍ୟମରେ ପ୍ରସ୍ତୁତ ଏବଂ ଏହା ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ ଗଣତାନ୍ତ୍ରିକ ସାଧାରଣତନ୍ତ୍ରର ସମ୍ବିଧାନ । ସାର୍ବଭୌମର ଦୁଇଟି ବୈଶିଷ୍ଟ୍ୟ ରହିଅଛି, ଯଥା– ଆଭ୍ୟନ୍ତରୀଣ ସାର୍ବଭୌମତ୍ୱ ଓ ବାହ୍ୟ ସାର୍ବଭୌମତ୍ୱ, ଏହି ଦୃଷ୍ଟିକୋଣରୁ ଭାରତୀୟ ରାଷ୍ଟ୍ର ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନଠାରୁ ଆଭ୍ୟନ୍ତରୀଣ ଶାସନ କ୍ଷେତ୍ରରେ ସର୍ବୋଚ୍ଚ ଓ ଅନ୍ୟ ରାଷ୍ଟ୍ରରେ କର୍ତ୍ତୃତ୍ୱରୁ ମୁକ୍ତ ଅଟେ । ପ୍ରକାରାନ୍ତରେ କହିବାକୁ ଗଲେ ଭାରତ ହେଉଛି ଆଭ୍ୟନ୍ତରୀଣ

ଏବଂ ବହିଃ ବ୍ୟାପାରରେ ସଂପୂର୍ଣ୍ଣ ସ୍ୱାଧୀନ । ତେଣୁ ଭାରତର ସମ୍ବିଧାନ ହେଉଛି ଏକ ସାର୍ବଭୌମ ସମ୍ବିଧାନ ।

ଦ୍ୱିତୀୟତଃ, ଭାରତ ଏକ ସମାଜବାଦୀ ରାଷ୍ଟ୍ର ଭାବେ ପରିଚିତ । ୧୯୭୬ ମସିହାରେ ୪୨ ତମ ସମ୍ବିଧାନ ସଂଶୋଧନ ଆଇନ ଅନୁସାରେ ଆମ ପ୍ରସ୍ତାବନାରେ ସମାଜବାଦୀ ଶବ୍ଦ ଭାରତକୁ ଏକ ସମାଜବାଦୀ ରାଷ୍ଟ୍ରରୂପେ ଘୋଷଣା କରି, ଦାରିଦ୍ର୍ୟ କ୍ଷୁଧା ଓ ବେକାରି ଦୂରୀକରଣ, ଉତ୍ପାଦନ ବୃଦ୍ଧି, ଅର୍ଥନୈତିକ ବ୍ୟବସ୍ଥାର ଆଧୁନିକୀକରଣ ଓ ବିଭିନ୍ନ ଶ୍ରେଣୀ ମଧ୍ୟରେ ରହିଥିବା ବୈଷମ୍ୟର ବିଲୋପ ସାଧନ ଉପରେ ଗୁରୁତ୍ୱ ଦେଇଅଛି । ଅଧିକନ୍ତୁ ଭାରତୀୟ ବ୍ୟକ୍ତି ରାଷ୍ଟ୍ରର ଏକ ଅଙ୍ଗ, କିନ୍ତୁ ସର୍ବଶକ୍ତିମାନ ନୁହେଁ ।

ତୃତୀୟତଃ, ସଂଶୋଧିତ ସମ୍ବିଧାନ ଭାରତକୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ରୂପେ ଘୋଷଣା କରିଅଛି । ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ଏହା ସମସ୍ତ ଧର୍ମକୁ ସମାନ ସୁବିଧା ସୁଯୋଗ ପ୍ରଦାନ କରିଅଛି ଏବଂ କୌଣସି ଧର୍ମ ରାଷ୍ଟ୍ରୀୟ ପୃଷ୍ଠପୋଷକତା ଲାଭ କରିନାହିଁ । ସମ୍ବିଧାନର ୨୫ ଧାରାରୁ ୨୮ ଧାରାରେ ଏହି ଧର୍ମ ଅଧିକାର ପ୍ରତ୍ୟେକ ନାଗରିକକୁ ପ୍ରଦାନ କରିଅଛି । ଭାରତରେ ସର୍ବ ଧର୍ମର ସମନ୍ୱୟ ଘଟିଅଛି । ଭାରତରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମକୁ ଶାସନର ନୀତିରୂପେ ଗ୍ରହଣ କରାଯାଇ ନାହିଁ । ସରକାର କୌଣସି ଧର୍ମ ପାଇଁ ଟିକସ ଆଦାୟ କିମ୍ବା କର ଧାର୍ଯ୍ୟ କରିପାରିବେ ନାହିଁ । ସାଧାରଣ ଅନୁଷ୍ଠାନରେ କୌଣସି ଧର୍ମକୁ ''ମୌଳିକ ଅଙ୍ଗ''ରୂପେ ସରକାର ପ୍ରତିଷ୍ଠା କରିପାରିବେ ନାହିଁ ।

ଗଣତନ୍ତ୍ର ହେଉଛି ଲୋକମାନଙ୍କର ଶାସନ ଏବଂ ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ନିର୍ବିଶେଷରେ ସମସ୍ତ ନାଗରିକଙ୍କୁ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ନ୍ୟାୟ ପ୍ରଦାନ କରାଯାଇଛି । ସାର୍ବଜନୀନ ସାବାଳକ ଭୋଟ୍ ପ୍ରଥା ନୀତିରେ ପ୍ରତ୍ୟେକ ସାବାଳକ ନାଗରିକଙ୍କୁ ଶାସନ କ୍ଷେତ୍ରରେ ପ୍ରତିନିଧି ନିର୍ବାଚନ ମାଧ୍ୟମରେ ଦେଶ ଶାସନରେ ଅଂଶ ଗ୍ରହଣ କରିବାରେ ଅଧିକାର ପ୍ରଦାନ କରାଯାଇଛି ।

ସର୍ବଶେଷରେ ଭାରତୀୟମାନଙ୍କର ବ୍ୟକ୍ତିଗତ ମହତ୍ତ୍ୱ ଓ ଜାତିଗତ ଐକ୍ୟ ପ୍ରତିଷ୍ଠା ଦିଗରେ ଭ୍ରାତୃଭାବର ବିକାଶ ନିମନ୍ତେ ନୀତି ଧାର୍ଯ୍ୟ ହୋଇଅଛି । ଏହା ଭାରତୀୟମାନଙ୍କର ଐକ୍ୟ ମନୋଭାବ ପ୍ରତିଷ୍ଠା ଦିଗରେ ଉତ୍ତମ ପରିଚାୟକ ଅଟେ । ୧୯୭୬ ମସିହାରେ ସମ୍ବିଧାନର ସଂଶୋଧନରେ ''ସଂହତି'' ଶବ୍ଦ ସଂଯୋଗ କରାଯାଇ ଜାତୀୟ ସଂହତି ଉପରେ ଗୁରୁତ୍ୱ ଆରୋପ କରାଯାଇଅଛି । ଆମ ଦେଶରେ ଥିବା ବିଭିନ୍ନତା ମଧ୍ୟରେ ଏକତା ରକ୍ଷା କରିବା ଏହି ଜାତୀୟ ସଂହତିର ଆଭିମୁଖ୍ୟ ।

ଉପରୋକ୍ତ ବିଷୟମାନ ଅନୁଧ୍ୟାନ କଲେ ଜଣାଯାଏ ଯେ, ଭାରତୀୟ ସମ୍ବିଧାନର ପ୍ରସ୍ତାବନା-ପୃଥିବୀର ଶ୍ରେଷ୍ଠ ପ୍ରସ୍ତାବନା ମଧ୍ୟରୁ ଅନ୍ୟତମ । ବ୍ରିଟିଶ ରାଜନୈତିକ ଆର୍ଣ୍ଣେଷ୍ଟ ବାର୍କର ଭାରତୀୟ ସମ୍ବିଧାନର ପ୍ରସ୍ତାବନାକୁ ପ୍ରଶଂସା କରି କହିଛନ୍ତି, ''ପାଶ୍ଚାତ୍ୟ ଦେଶର ମୌଳିକ ନୀତିଗୁଡିକ ଆଉ ପାଶ୍ଚାତ୍ୟ ହୋଇନାହିଁ । ଏହା ପାଶ୍ଚାତ୍ୟକୁ ଅତିକ୍ରାନ୍ତ କରି ଅଧିକ କିଛି ବାଟ ଯାଇଛି ଓ ଭାରତୀୟମାନେ ସେହି ମୌଳିକ ନୀତିକୁ ପାଥେୟ କରି ଯେଉଁ ସ୍ୱାଧୀନ ଜୀବନ ଯାତ୍ରା ଆରମ୍ଭ କରିଛନ୍ତି, ତାହା ଏହି ପ୍ରସ୍ତାବନାରେ ପ୍ରତିଫଳିତ ହୋଇଅଛି । ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ ଭାରତୀୟ ସମ୍ବିଧାନର ପ୍ରସ୍ତାବନା ରାଷ୍ଟ୍ର ଦ୍ୱାରା ଅନୁସୃତ ଆଦର୍ଶ ଓ ଶାସନ ନୀତି ସଂପର୍କରେ ସମ୍ୟକ ଧାରଣା ଦେବାରେ ସପୂର୍ଣ୍ଣ ସଫଳ ହୋଇଅଛି । ଏହି ଦିବସ ପାଳନ ଅବସରରେ ବିଦ୍ୟାଳୟ, ମହାବିଦ୍ୟାଳୟ ସ୍ତରରେ ସଂସଦ ଓ ସମ୍ବିଧାନ ସଂପର୍କିତ ବିଭିନ୍ନ କାର୍ଯ୍ୟକ୍ରମମାନ ଅନୁଷ୍ଠିତ ହୋଇଥାଏ । ଆଗାମୀ ପିଢିକୁ ସମ୍ବିଧାନ ସଂପର୍କରେ ଅଧିକରୁ ଅଧିକ ଜ୍ଞାନ ଦେବା ଏହି ଦିବସ ପାଳନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଅଟେ ।''

ଗ୍ରାମ/ପୋ.ଅ.- ଖିଚିଂ
ଜିଲ୍ଲା- ମୟୂରଭଞ୍ଜ-୭୫୭୦୩୯



# ଆମ ଗଣତନ୍ତ୍ର

**ଜୟନ୍ତ କୁମାର ଦାସ**

୧୯୫୦ ଜାନୁଆରୀ ୨୬ ତାରିଖ ଦିନ ଆମ ଦେଶ ସାରା ବିଶ୍ୱରେ ସର୍ବବୃହତ୍ ଗଣତନ୍ତ୍ର ରାଷ୍ଟ୍ର ଭାବେ ପରିଚୟ ପାଇଥିଲା । ଏହିଦିନ ଆମେ ଆମ ଭାଗ୍ୟର ନିୟନ୍ତ୍ରକ ହେଲୁ । ଜାତି, ଧର୍ମ, ବର୍ଣ୍ଣ ଓ ଲିଙ୍ଗ ନିର୍ବିଶେଷରେ ସମସ୍ତ ଭାରତୀୟ ଏକ ବୋଲି ଗଣା ହେଲେ । ଆମ ସମ୍ବିଧାନ ଏହି ଦିନରେ ହିଁ କାର୍ଯ୍ୟକାରୀ ହେଲା । ଗଣତନ୍ତ୍ର ଆମ ସମ୍ବିଧାନର ଆତ୍ମା ସଦୃଶ । ଆମ ଦେଶର ସମ୍ବିଧାନ ସମଗ୍ର ବିଶ୍ୱର ସର୍ବବୃହତ୍ ଲିଖିତ ସମ୍ବିଧାନ ରୂପେ ପରିଗଣିତ । ଗଣତନ୍ତ୍ରରେ ଜନସାଧାରଣ ହେଉଛନ୍ତି ସର୍ବେସର୍ବା, ଯେଉଁଠି ଜନସାଧାରଣଙ୍କ ମତକୁ ଈଶ୍ୱରଙ୍କ ମତ ବୋଲି ଗ୍ରହଣ କରାଯାଏ । ଅଢେଇ ବର୍ଷରୁ ଊର୍ଦ୍ଧ୍ୱ ଧରି ସମ୍ବିଧାନ ପ୍ରଣୟନ ସଭା ସମ୍ବିଧାନର ବାସ୍ତବ ରୂପ ଦେଲେ । ଏହି ସମ୍ବିଧାନ ପ୍ରଣୟନ ସଭାର ଅଧକ୍ଷ ଥିଲେ ଡଃ ରାଜେନ୍ଦ୍ର ପ୍ରସାଦ ଓ ସମ୍ବିଧାନ ଚିଠା ପ୍ରସ୍ତୁତି କମିଟିର ଅଧକ୍ଷ ଥିଲେ ଡଃ ବି.ଆର. ଆମ୍ବେଦକର । ଅଦ୍ୟାବଧି ୧୯୫୦ ମସିହାରୁ ଆଜି ପର୍ଯ୍ୟନ୍ତ ନାନା ଘାତପ୍ରତିଘାତ ମଧ୍ୟରେ ଆମ ସମ୍ବିଧାନ ଆଧାରରେ ଗଣତନ୍ତ୍ର ତିଷ୍ଠି ରହିଛି । ଯେଉଁ ଭାରତବର୍ଷରେ ଗୌତମ ବୁଦ୍ଧ ସତ୍ୟ, ଅହିଂସା, ପ୍ରେମ ଓ ସଂହତିର ବାଣୀ ପ୍ରଚାର କରିଥିଲେ ଏବଂ ଯେଉଁ ମାଟିରେ ମହାତ୍ମା ଗାନ୍ଧୀ ସତ୍ୟ ଓ ଅହିଂସା ଆଧାରରେ ଦେଶକୁ ସ୍ୱାଧୀନତାର ସ୍ୱାଦ ଚଖାଇଥିଲେ ସେହି ଅମରବାଣୀ ହେଉଛି ଆମର ମୁଖ୍ୟ ଆୟୁଧ ।

ଗଣତନ୍ତ୍ରର ମୂଲ୍ୟବୋଧକୁ ସାକାର କରିବା ପାଇଁ ପ୍ରତ୍ୟେକ ନାଗରିକ ସାମ୍ବିଧାନିକ ଦାୟିତ୍ୱ ଓ କର୍ତ୍ତବ୍ୟ ବିଷୟରେ ସଚେତନ ହେବା ଆବଶ୍ୟକ । ସମ୍ବିଧାନ ଆମ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ । ଗଣତନ୍ତ୍ର ତିଷ୍ଠି ରହିବା ପାଇଁ ଲୋକଙ୍କର ଅଧିକାର ଓ ସ୍ୱାଧୀନ ମତପ୍ରକାଶ ଅପରିହାର୍ଯ୍ୟ । ସୁଦୃଢ ଗଣତନ୍ତ୍ର ପ୍ରତିଷ୍ଠା ପାଇଁ କାର୍ଯ୍ୟପାଳିକା, ବିଧାନପାଳିକା ଓ ନ୍ୟାୟପାଳିକା ନିଜ କ୍ଷମତା ପରିସର ଭିତରେ ସ୍ୱାଧୀନ ଭାବେ କାର୍ଯ୍ୟ କରିଥାନ୍ତି ଓ ଏହାର ଉତ୍ତରଦାୟିତ୍ୱ ନ୍ୟସ୍ତ ହୋଇଥାଏ ନ୍ୟାୟପାଳିକା ଉପରେ ।

ଦେଶ ସ୍ୱାଧୀନ ପୂର୍ବରୁ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଦେଶର ଭବିଷ୍ୟତ ଉପରେ ଟିପ୍ପଣୀ ରଖିବାକୁ ଯାଇ କହିଥିଲେ ଯେ, 'ଯେତେବେଳେ ଆମକୁ ସ୍ୱାଧୀନତା ମିଳିବ, ନିର୍ବାଚନ ଏବଂ ଏହାର ଦୁର୍ନୀତି, ଅନ୍ୟାୟ, ଅନୀତି, କ୍ଷମତା, ଧନର ପ୍ରମତା ଏବଂ ସ୍ଥାଣୁ ପ୍ରଶାସନ ଆମ ଜୀବନକୁ ନର୍କରେ ପରିଣତ କରିବ । ସେତେବେଳେ ମଣିଷ ଭଗ୍ନ ହୃଦୟରେ ଅତୀତକୁ ରୋମନ୍ଥନ କରିବ, ଯେଉଁଠି ତୁଳନାତ୍ମକ ଭାବେ ନ୍ୟାୟ ଓ ସଚ୍ଚୋଟତା କାର୍ଯ୍ୟ କରୁଥିଲା । ଆଶଙ୍କା ପ୍ରକାଶ କରି ତତ୍କାଳୀନ ଭାଇସରୟ ଲର୍ଡ ଲିନଲିଥଗୋ ଉଲ୍ଲେଖ କରିଥିଲେ ଯେ, ଭାରତରେ ସଂସଦୀୟ ଗଣତନ୍ତ୍ରର ପ୍ରକୃତ ମୂଲ୍ୟବୋଧ ପ୍ରତିଷ୍ଠା କରିବା ପାଇଁ ଆହୁରି ୫୦ବର୍ଷ ଲାଗିବ । ଆମ ସମ୍ବିଧାନ ଅନେକ

ଥର ସଂଶୋଧନ ହେଲାଣି, ଯାହାକି ଅନ୍ୟ କେଉଁ ଦେଶରେ ଏପରି ଦୃଷ୍ଟାନ୍ତ ନାହିଁ । କେବଳ ସମ୍ବିଧାନ ସଂଶୋଧନ ହେଲେ ଅବସ୍ଥା ବଦଳିବ ନାହିଁ, ବ୍ୟକ୍ତି ଚରିତ୍ର ସଂଶୋଧନ ହେଲେ ହିଁ ଭାରତୀୟ ଗଣତନ୍ତ୍ର ସୁଦୃଢ ହେବ । କେବଳ ଆଇନ ପ୍ରଣୟନ କଲେ ଦୁର୍ନୀତି, ଅପରାଧ, ଭ୍ରଷ୍ଟାଚାର ଲୋପ ପାଇବ ନାହିଁ, ଏହା ବିରୁଦ୍ଧରେ ଜନସଚେତନତା ସୃଷ୍ଟି ହୋଇପାରିଲେ ହିଁ ଦେଶର ଅଗ୍ରଗତି ହେବ । ମାନ୍ୟବର ସୁପ୍ରିମକୋର୍ଟ ଖଣ୍ଡପୀଠ କହିଛନ୍ତି ଯେ, ଅପରାଧିକ ପୃଷ୍ଠଭୂମିରୁ ଆସିଥିବା ନେତା ନିର୍ବାଚନ ଲଢିବାକୁ ଟିକେଟ ଦେଉଥିବା ରାଜନୈତିକ ଦଳଗୁଡିକୁ ଏ ସମ୍ପର୍କରେ ଉଚିତ କାରଣ ଦର୍ଶାଇବାକୁ ପଡ଼ିବ । ପ୍ରାର୍ଥୀଙ୍କ ବିଜୟ ସମ୍ଭାବନାକୁ ଲକ୍ଷ୍ୟ ରଖି ରାଜନୈତିକ ଦଳ ଦାଗୀନେତାଙ୍କୁ ପ୍ରାର୍ଥୀ କରିପାରିବେ ନାହିଁ । ଗଣତନ୍ତ୍ରର ସଫଳତା ଗଣଙ୍କ ଉପରେ ନିର୍ଭର କରେ ଜଣଙ୍କ ଉପରେ ନୁହେଁ । ଲୋକତନ୍ତ୍ରର ଉତ୍ସ ହେଉଛି ଲୋକଶକ୍ତି । ପ୍ରକୃତ ଗଣତନ୍ତ୍ର ହେଉଛି ଲୋକମାନଙ୍କର, ଲୋକମାନଙ୍କ ପାଇଁ ଏହା ଏଭଳି ଏକ ସରକାର, ଯେଉଁଥିରେ ପ୍ରତ୍ୟେକ ବ୍ୟକ୍ତିର ଭାଗ ରହିଛି । ଗଣତନ୍ତ୍ର ଏକ ବିଚାରଧାରା । ବିରୋଧୀ ଦଳ ଶକ୍ତିଶାଳୀ ନ ହେଲେ ଗଣତନ୍ତ୍ରକୁ ରକ୍ଷା କରିବା କାଠିକର ପାଠ ।

ସାମାଜିକ ନ୍ୟାୟ ଓ ଅର୍ଥନୈତିକ ସମାନତା ଏବେ ବି ଅପହଞ୍ଚ ଦୂରତାରେ । ମାନବିକତା ଆଜି ହଜିଯାଇଛି ସ୍ୱାର୍ଥନ୍ୱେଷୀ ମଣିଷଙ୍କ ଭିତରେ । ଜନସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ମଣିଷପଣିଆ କ୍ରମଶଃ କମି କମି ଯାଉଛି । ଭୂଦାନ, ଗ୍ରାମଦାନ, ଖଦୀ ଓ ଗ୍ରାମୋଦ୍ୟୋଗ, ସ୍ୱଦେଶୀ ଓ ସ୍ୱରାଜ୍ୟର ତାତ୍ପର୍ଯ୍ୟ ବୁଝିବା ଆଜିକାଲି କାହା ପାଖରେ ସମୟ ନାହିଁ । ଯାହା ହେଉନା କାହିଁକି ଏ ଦେଶ, ଏ ଜାତିର ଭାଗ୍ୟ ଓ ଭବିଷ୍ୟତ ସଚେତନ ନାଗରିକ ବିଶେଷକରି କ୍ରିୟାଶୀଳ ଯୁବଶକ୍ତି ହାତରେ । ସତ୍ୟ ଓ ଅହିଂସା ଉପରେ ପର୍ଯ୍ୟବସିତ ଆମ ବିଚାରଧାରାକୁ ଗର୍ବର ସହ ଆଗେଇନେବାକୁ ହେବ କଷ୍ଟଲବ୍ଧ ଗଣତନ୍ତ୍ରର ସୁରକ୍ଷା ପାଇଁ । ଗଣତନ୍ତ୍ରକୁ ବଞ୍ଚାଇ ରଖିବାକୁ ହେଲେ ସ୍ୱାମୀ ବିବେକାନନ୍ଦଙ୍କ ସେହି ଅମୂଲ୍ୟ ବାଣୀକୁ ପାଥେୟ କରି ଆଗକୁ ବଢିବାକୁ ହେବ– "Arise, Awake and stop not till the goal is reached". ସମସ୍ତଙ୍କ ଗୋଟିଏ ଲକ୍ଷ୍ୟ ହେବା ଆବଶ୍ୟକ–"Greatest good of the greatest number". ଗଣତାନ୍ତ୍ରିକ ମୂଲ୍ୟବୋଧ, ସାମାଜିକ ନ୍ୟାୟ, ଧର୍ମନିରପେକ୍ଷତା ଆଦି ହେଉଛି ଆମ ସଂବିଧାନର ବିଶେଷତ୍ୱ । ଗଣତନ୍ତ୍ରର ସୁପରିଚାଳନା ସାଧାରଣ ଲୋକଙ୍କ ହାତରେ । ତେଣୁ ଅତ୍ୟନ୍ତ ସତର୍କତା ସହ ବୁଦ୍ଧି ବିଚାରି ମତବ୍ୟକ୍ତ କରିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ । ତେଣୁ ଲୋକ ସୁଧୁରିଲେ ଗଣତନ୍ତ୍ର ସୁଧୁରିବ ଓ ସମ୍ବିଧାନର ମର୍ଯ୍ୟାଦା ବଜାୟ ରହିବ ।

ସଂପାଦକ, ଉତ୍କଳ ଗାନ୍ଧୀ ସ୍ମାରକ ନିଧି



# ଆଜାଦ୍ ହିନ୍ଦ୍ ଫୌଜର ସର୍ବକନିଷ୍ଠ ଯୋଦ୍ଧା ଲକ୍ଷ୍ମୀ ଇନ୍ଦିରା ପଣ୍ଡା

**ଡଃ ବାସନ୍ତୀ ମହାନ୍ତି**

ନେତାଜୀ ସୁଭାଷ ବୋଷ କେବଳ ଓଡ଼ିଶାର ନୁହଁନ୍ତି କି ଭାରତର ନୁହଁନ୍ତି । ସମଗ୍ର ବିଶ୍ୱ ପାଇଁ ସେ ଏକ ବିସ୍ମୟ ହୋଇ ରହିଯାଇଛନ୍ତି । ଯେଉଁ ସାମ୍ରାଜ୍ୟର କେବେ ସୂର୍ଯ୍ୟାସ୍ତ ହୁଏ ନାହିଁ ବୋଲି କୁହାଯାଉଥିବା ଓ ବାଘ ବକରୀଙ୍କୁ ଗୋଟିଏ ଘାଟରେ ପାଣି ପିଆଉଥିବା ବ୍ରିଟିଶ ଶାସକଙ୍କୁ ଚକମା ଦେଇ ନେତାଜୀ ସୁଭାଷ ବୋଷ ଦେଶ ଛାଡ଼ି ଚାଲିଯାଇଥିଲେ । ଜର୍ମାନ୍ ଓ ଜାପାନ୍ ସହାୟତାରେ ସିଙ୍ଗାପୁରଠାରେ ଆଜାଦ୍ ହିନ୍ଦ୍ ସରକାର ଗଠନ କରି ନିଜେ ହୋଇଥିଲେ ଏହି ସରକାରର ପ୍ରଥମ ପ୍ରଧାନମନ୍ତ୍ରୀ । ମଣିପୁର ଓ ଆଣ୍ଡାମାନ ଦ୍ୱୀପପୁଞ୍ଜ ଥିଲା ତାଙ୍କର ସ୍ୱାଧୀନ କ୍ଷେତ୍ର । ତାଙ୍କ ନିଜର ବୈଦେଶିକ ମନ୍ତ୍ରୀ ଥିଲେ, ରକ୍ଷା ମନ୍ତ୍ରୀ ଥିଲେ, ସେନାବାହିନୀ ଥିଲେ । ବ୍ୟାଙ୍କ୍ ଓ ପ୍ରଶାସନିକ ବିଧି ବ୍ୟବସ୍ଥା ଥିଲା । ଏପରିକି ନିଜର ସ୍ୱତନ୍ତ୍ର ମୁଦ୍ରା ପ୍ରଚଳନ କରାଇଥିଲେ । ନିଜର ଗୋଟିଏ ରେଡ଼ିଓ ଷ୍ଟେସନ୍ ମଧ୍ୟ ଥିଲା । ଯେଉଁ ନଅଟି ଦେଶର ସରକାର ତାଙ୍କର ଏହି ସ୍ୱାଧୀନ କ୍ଷେତ୍ରକୁ ମାନ୍ୟତା ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଜର୍ମାନ୍, ଫିଲିପାଇନ୍, କୋରିଆ, ଚାଇନା, ଇଟାଲି, ଆୟର୍‌ଲ୍ୟାଣ୍ଡ୍ ଇତ୍ୟାଦି । ସେଇ କ୍ଷେତ୍ରରୁ ସେ ଅବଶିଷ୍ଟ ଭାରତର ୩୮ କୋଟି ପରାଧୀନ ଜନତାଙ୍କୁ ସ୍ୱାଧୀନ କରିବାର ଶପଥ ନେଇଥିଲେ ।



ଭାରତ ମାତାର ଯୋଗ୍ୟତମ ସନ୍ତାନ ସୁଭାଷ ଭାରତକୁ ସ୍ୱାଧୀନ କରିବା ପାଇଁ ମରଣକୁ ହାତ ପାପୁଲିରେ ରଖି ବିଶ୍ୱଭ୍ରମଣ କରୁଥିଲେ । କେବେ ବୀମା କମ୍ପାନୀର ଏଜେଣ୍ଟ ରୂପେ ତ ଆଉ କେତେବେଳେ ମୌଲବୀ ରୂପେ । ହିଟ୍‌ଲର୍ ସହ ହାତ ମିଶାଇ ସେ ବ୍ରିଟେନ୍ ଓ ଆମେରିକା ବିରୋଧରେ ଯୁଦ୍ଧ ଘୋଷଣା କରୁଥିଲେ । ଏଥିପାଇଁ ତାଙ୍କୁ ସାହସ ଶକ୍ତି ଓ ସାମର୍ଥ୍ୟ ଯୋଗାଉଥିଲେ ଆଜାଦ୍ ହିନ୍ଦ୍ ଫୌଜ ।

୧୯୩୯ ମସିହା ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ କେତେକ ନୀତିଗତ କାରଣରୁ ମହାତ୍ମା ଗାନ୍ଧୀଙ୍କ ସହ ସୁଭାଷ ବୋଷଙ୍କର ମତାନୈକ୍ୟ ପରିଲକ୍ଷିତ ହୋଇଥିଲା । ''ମତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି''ରେ ବିଶ୍ୱାସ ରଖୁଥିବା ସୁଭାଷ ବୋଷ ଭାରତୀୟ ଲୋକ ପ୍ରତିନିଧିଙ୍କ ବିନା ପରାମର୍ଶରେ ଭାରତୀୟ ସୈନିକଙ୍କୁ ବିଶ୍ୱଯୁଦ୍ଧରେ ସାମିଲ୍ କରିବାର ଇଂରେଜ ସରକାରଙ୍କ ନିଷ୍ପତ୍ତିକୁ ଘୋର ବିରୋଧ କରୁଥିଲେ । କେବଳ ସୁଭାଷ ନୁହଁନ୍ତି ଆହୁରି ଅନେକ ଜାତୀୟତାବାଦୀ ନେତା ମଧ୍ୟ ଏହାକୁ ନାପସନ୍ଦ କରୁଥିଲେ । ତେଣୁ ଏହା ଇଂରେଜ ସରକାରଙ୍କୁ ପୂର୍ଣ୍ଣ ସ୍ୱରାଜ ଦାବୀ କରିବାର ପ୍ରକୃଷ୍ଟ ସମୟ ବୋଲି ୱାର୍ଦ୍ଧାଠାରେ ମହାତ୍ମା ଗାନ୍ଧୀଙ୍କୁ ଭେଟି ସେ ପ୍ରସ୍ତାବ ରଖିଥିଲେ । ମହାତ୍ମା ଗାନ୍ଧୀଙ୍କଠାରୁ ଏହି ଚରମପତ୍ର ବ୍ରିଟିଶ୍

ସରକାରଙ୍କୁ ଗଲେ ବେଶି ଫଳପ୍ରଦ ହେବ ବୋଲି ସେ କହିଥିଲେ । କିନ୍ତୁ ଅହିଂସାରେ ବିଶ୍ୱାସ ରଖୁଥିବା ମହାତ୍ମା ଗାନ୍ଧୀଙ୍କର ମତ ଥିଲା, ଶତ୍ରୁ ଯେତେବେଳେ ବିପଦରେ ପଡ଼ିଛି, ତା' ପ୍ରତି ଏପରି ଦାଉ ସାଧିବା ଆଦୌ ଉଚିତ ନୁହେଁ । ଆମେ ଆଉ କିଛି ସମୟ ଅପେକ୍ଷା କରିବା । କିନ୍ତୁ ସୁଭାଷ ବୋଷ ଆଉ ଅପେକ୍ଷା କଲେ ନାହିଁ । ମହାତ୍ମା ଗାନ୍ଧୀଙ୍କ ଉପରୁ ତାଙ୍କର ଆସ୍ଥା ତୁଟିଗଲା । ସେ ବାପୁଙ୍କର ଆଶୀର୍ବାଦ ନେଇ ତାଙ୍କଠାରୁ ବିଦାୟ ନେଇଥିଲେ । ଏହା ହିଁ ଥିଲା ମହାତ୍ମା ଗାନ୍ଧୀଙ୍କ ସହ ତାଙ୍କର ଶେଷ ସାକ୍ଷାତ ।

ଇଂରେଜ ବିରୋଧୀ କାର୍ଯ୍ୟକଳାପ ପାଇଁ ତାଙ୍କୁ ଗୃହବନ୍ଦୀ ରୂପେ ରଖାଯାଇଥିଲା । କିନ୍ତୁ ସେ ପୋଲିସ୍ ଆଖିରେ ଧୂଳି ଦେଇ ଦେଶ ତ୍ୟାଗ କରିଥିଲେ । ଜର୍ମାନ୍‌ର ଚାନ୍‌ସେଲର୍ ହିଟ୍‌ଲର୍‌ଙ୍କ ସହ ହାତ ମିଶାଇ ଥିଲେ । ବର୍ଲିନ୍‌ରୁ ରେଡ଼ିଓ ବାର୍ତ୍ତା ମାଧ୍ୟମରେ ଭାରତୀୟମାନଙ୍କୁ ଇଂରେଜଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା ପାଇଁ ଆହ୍ୱାନ ଦେଇଥିଲେ । ଜର୍ମାନର ଯୁଦ୍ଧବନ୍ଦୀ ଶିବିରରେ ଯେଉଁ ଭାରତୀୟମାନେ ଥିଲେ ସେମାନଙ୍କୁ ଭାରତ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ପ୍ରବର୍ତ୍ତାଇ ଥିଲେ । ସେହି ଯୁଦ୍ଧବନ୍ଦୀମାନଙ୍କୁ ନେଇ ସେ ଭାରତୀୟ ଲିଜିଅନ୍‌ରେ ଅନ୍ତର୍ଭୁକ୍ତ କରିଥିଲେ ଓ ମୁକ୍ତି ଭାରତର ଯୋଦ୍ଧା ରୂପେ ଶପଥ ଗ୍ରହଣ କରାଇଥିଲେ ।

ଏଥିପୂର୍ବରୁ ମୁକ୍ତି ଯୋଦ୍ଧା ରାସ ବିହାରୀ ବୋଷଙ୍କ ନେତୃତ୍ୱରେ ଇଣ୍ଡିଆନ୍ ଇଣ୍ଡିପେଣ୍ଡେନ୍ସ ଲିଗ୍ ନାମରେ ଥାଇଲାଣ୍ଡ ଓ ଜାପାନ୍‌ରେ ଏକ ସଂଗଠନ ଥିଲା । ଜାପାନ୍ ସରକାରଙ୍କ ଅନୁମୋଦନକ୍ରମେ ରାସ ବିହାରୀ ବୋଷ ଏହି ସଂଗଠନର ନେତୃତ୍ୱ ସୁଭାଷ ବୋଷଙ୍କୁ ହସ୍ତାନ୍ତର କରିଥିଲେ । ଜାପାନ ସରକାରଙ୍କ ସାହାଯ୍ୟ ଓ ସହାୟତାରେ ଏହି ସଂଗଠନ ଏକ ବଳିଷ୍ଠ ସେନାବାହିନୀରେ ପରିଣତ ହୋଇସାରିଥିଲା । ସୁଭାଷ ବୋଷ ଏହାର ନେତୃତ୍ୱ ନେବା ପରେ ଏହି ସେନା ସଂଗଠନର ନାମ ଦେଇଥିଲେ ଇଣ୍ଡିଆନ୍ ନେସ୍‌ନାଲ୍ ଆର୍ମି ବା ଆଜାଦ୍ ହିନ୍ଦ୍ ଫୌଜ । ଏହା ଥିଲା ୧୯୪୩ ମସିହା ନଭେମ୍ବର ପାଞ୍ଚ ଓ ଛଅ ତାରିଖର କଥା । ଜାପାନ ସେନା ଦ୍ୱାରା ଅଧିକୃତ ଆଣ୍ଡାମାନ୍ ଓ ନିକୋବର ଦ୍ୱୀପକୁ ଜାପାନ୍ ସରକାର ସୁଭାଷ ବୋଷଙ୍କୁ ଅର୍ପଣ କରିଥିଲେ । ସୁଭାଷ ବୋଷ ଆଣ୍ଡାମାନ୍‌ର ନାମ ସହିଦ୍ ଓ ନିକୋବରର ନାମ ସ୍ୱରାଜ ରଖିଥିଲେ । ଆଜାଦ୍ ହିନ୍ଦ୍ ଫୌଜ୍‌ର ଯେଉଁ ଜାତୀୟ ଝଣ୍ଡା ଥିଲା, ତାହା ତ୍ରିରଙ୍ଗା ଥିଲା ଓ ମଝିରେ ଏକ ବ୍ୟାଘ୍ର ଲମ୍ଫ ପ୍ରଦାନ କରୁଥିବାର ଚିତ୍ର ଥିଲା ।

ଜାପାନ୍ ସହାୟତାରେ ଆଜାଦ୍ ହିନ୍ଦ୍ ଫୌଜ ଆସାମର (ବର୍ତ୍ତମାନ ମଣିପୁରର ରାଜଧାନୀ) ଇମ୍ଫାଲ୍ ବାଟ ଦେଇ କୋହିମା ପର୍ଯ୍ୟନ୍ତ ଅଧିକାର କରିନେଇଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ଜାପାନର ହିରୋସୀମା ଓ ନାଗାସାକିରେ ପରମାଣୁ ବୋମା ପଡ଼ିବା ଦ୍ୱାରା ସୁଭାଷ ବୋଷଙ୍କର ସବୁ ସ୍ୱପ୍ନ ଧୂଳିସାତ୍ ହୋଇଯାଇଥିଲା ।

ଏହା ହିଁ ହେଉଛି ସୁଭାଷ ବୋଷଙ୍କ ଗଠିତ ଆଜାଦ୍ ହିନ୍ଦ୍ ଫୌଜ କରୁଣ କାହାଣୀ । ଯାହା କାଳର କପାଳରେ ଅବସୋସ ମିଶା ଅଶ୍ରୁ ବିନ୍ଦୁଟିଏ । ଏହି ଫୌଜରେ ଅନେକ ଓଡ଼ିଆ ଥିଲେ । ଆଜାଦ୍ ହିନ୍ଦ୍ ଫୌଜର ପତନ ପରେ ଯେଉଁ ୧୦୦୦ ଜଣ ବନ୍ଦୀ ହୋଇଥିଲେ, ସେମାନଙ୍କ ମଧ୍ୟରେ ୩୫ ଜଣ ଓଡ଼ିଆ ଥିଲେ । ଆଉ କେତେକ ଓଡ଼ିଆ ଲୁଚିଛପି ପଳାୟନ କରିଥିଲେ । ସର୍ବମୋଟ ୬୦୦ ଜଣ ଓଡ଼ିଆ ସୁଭାଷ ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜରେ ଥିଲେ ।

ଆଜାଦ୍ ହିନ୍ଦ୍ ଫୌଜରେ ଯେଉଁମାନେ ଅନ୍ତର୍ଭୁକ୍ତ ଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ପେଟଖାଇ ହିଁ ରହୁଥିଲେ । ଉଦ୍ଦାମ ଜାତୀୟତାବୋଧ ହେତୁ ସେମାନେ କୌଣସି ପାରିଶ୍ରମିକ ଚାହୁଁ ନଥିଲେ । କେବଳ ଭାରତର ସ୍ୱାଧୀନତା ଥିଲା ସେମାନଙ୍କର ଲକ୍ଷ୍ୟ । ବର୍ମା, ରେଙ୍ଗୁନ୍, ସିଙ୍ଗାପୁର, ଥାଇଲାଣ୍ଡ୍ ଆଦି ବିଭିନ୍ନ ଅଞ୍ଚଳରେ ଥିବା ସଭାସମିତି କରି ସୁଭାଷ ବୋଷ ସ୍ୱାଧୀନତାବାଦୀ ଆହ୍ୱାନ ଦେଉଥିଲେ । ଦେଶ ସ୍ୱାଧୀନ ପାଇଁ ସ୍ୱେଚ୍ଛାରେ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେବା ପାଇଁ ଅନୁରୋଧ କରୁଥିଲେ । ପେଟ ପାଟଣା ପାଇଁ ସେ ଅଞ୍ଚଳକୁ ଯାଇଥିବା ଓଡ଼ିଆମାନେ ସୁଭାଷଙ୍କ ଆହ୍ୱାନରେ ପ୍ରଭାବିତ ହୋଇଥିଲେ । ବିନା ଦରମାରେ କେବଳ ୩୦/୩୫ ଟଙ୍କା ପକେଟ୍ ଖର୍ଚ୍ଚରେ

ସେମାନେ ଯୁଦ୍ଧ କରୁଥିଲେ । ଖାଦ୍ୟ ପାନୀୟର ଅଭାବ ପ୍ରାୟ ଲାଗି ରହୁଥିଲା । କିନ୍ତୁ ସେଥିପାଇଁ ସେମାନେ ଖାତିର କରୁନଥିଲେ । ସୁଭାଷଙ୍କ ନେତୃତ୍ୱ ସମସ୍ତଙ୍କୁ ଯେପରି ସମ୍ମୋହିତ କରିଦେଇଥିଲା । ସବୁଠାରୁ ବଡ଼ କଥା ହେଲା ତାଙ୍କ ଗଠିତ ବିଶ୍ୱର ପ୍ରଥମ ମହିଳା ସେନାବାହିନୀ 'ଝାନ୍‌ସୀ ରେଜିମେଣ୍ଟ' ଆଜାଦ୍ ହିନ୍ଦ୍ ଫୌଜର ଅନ୍ତର୍ଭୁକ୍ତ ଥିଲେ ।

ଏହା ପୂର୍ବରୁ ସମଗ୍ର ବିଶ୍ୱର କୌଣସି ରାଷ୍ଟ୍ରରେ ମହିଳା ସେନାବାହିନୀ ଗଠିତ ହୋଇନଥିଲେ । ଏହି ସେନାବାହିନୀର ନାମ ବୀରା ରାଣୀ ଲକ୍ଷ୍ମୀବାଈଙ୍କ ରାଜ୍ୟ ଝାନ୍‌ସୀ ନାମରେ ନାମିତ ହୋଇଥିଲା । ଝାନ୍‌ସୀ ରେଜିମେଣ୍ଟର କ୍ୟାପ୍‌ଟେନ୍ ଥିଲେ ଲକ୍ଷ୍ମୀ ସେହେଗାଲ୍ । ଓଡ଼ିଶାରୁ ଏକମାତ୍ର ମହିଳା ଲକ୍ଷ୍ମୀ ଇନ୍ଦିରା ପଣ୍ଡା ଏହି ଝାନ୍‌ସୀ ରେଜିମେଣ୍ଟରେ କାର୍ଯ୍ୟ କରୁଥିଲେ । ତାଙ୍କର ପ୍ରକୃତ ନାଁ ଥିଲା ଲକ୍ଷ୍ମୀ । କିନ୍ତୁ ରେଜିମେଣ୍ଟର କ୍ୟାପ୍‌ଟେନ୍ ଲକ୍ଷ୍ମୀଙ୍କ ନାମ ସହ ସାମଞ୍ଜସ୍ୟ ଥିବାରୁ ତାଙ୍କ ନାମ ପରେ ଇନ୍ଦିରା ଲଗାଇବାକୁ ନିଜେ ସୁଭାଷ ବୋଷ ପରାମର୍ଶ ଦେଇଥିଲେ । ସେ ଲକ୍ଷ୍ମୀ ଇନ୍ଦିରା ରଥ ନାମରେ ପରିଚିତ ଥିଲେ । ବିବାହ ପରେ ସେ ଲକ୍ଷ୍ମୀ ଇନ୍ଦିରା ପଣ୍ଡା ନାମରେ ପରିଚିତ ହେଲେ ।

ଲକ୍ଷ୍ମୀ ଇନ୍ଦିରା ପଣ୍ଡାଙ୍କ ପୈତୃକ ଭିଟାମାଟି ହେଉଛି ଗଞ୍ଜାମ ଜିଲ୍ଲାର ପିତଳ ଅଞ୍ଚଳ । ତାଙ୍କ ପୂର୍ବ ପୁରୁଷ ଅନେକ ଦିନ ଧରି କୋରାପୁଟ ଜିଲ୍ଲାର ଜୟପୁର ସହରରେ ବସବାସ କରୁଥିଲେ । ତାଙ୍କ ପିତା ପ୍ରଥମେ ରେଲ୍‌ୱେ ଷ୍ଟେସନ୍‌ରେ କାମ କରୁଥିଲେ । କିନ୍ତୁ ପରେ ସୁଭାଷ ବୋଷ ଆଜାଦ୍ ହିନ୍ଦ୍ ଫୌଜ ଗଠନ ଗଲାପରେ, ଏହାର ସ୍ଥାନୀୟ ସଂଗଠନରେ କାମ କଲେ । ଲକ୍ଷ୍ମୀ ଇନ୍ଦିରା (ସେତେବେଳେ ତାଙ୍କ ସଂଜ୍ଞା ରଥ ଥିଲା) ୧୯୩୦ ଖ୍ରୀଷ୍ଟାବ୍ଦରେ ବର୍ମା ସହରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ନକୁଳ ରଥ ନାମରେ ଆଉ ଜଣେ ଭାଇ ମଧ୍ୟ ଥିଲେ । ସେହି ସମୟରେ ଜାପାନ ସହାୟତାରେ ସୁଭାଷ ବୋଷ ବର୍ମା ଦେଶର ଆଂଶିକ କରଗତ କଲାପରେ ଇଂରେଜମାନେ ଆଜାଦ୍ ହିନ୍ଦ୍ ଫୌଜମାନଙ୍କ ଉପରେ ବୋମା ବର୍ଷଣ କରିବା ପାଇଁ ଲାଗିଲେ । ପ୍ରାଣ ରକ୍ଷା ପାଇଁ ଲକ୍ଷ୍ମୀଙ୍କ ପିତାମାତା ଏକ ବଙ୍କର୍ ଭିତରେ ପଶିଯାଇଥିଲେ । କିନ୍ତୁ ବୋମା ମାଡ଼ରେ ସେହି ବଙ୍କର୍ ଧ୍ୱଂସ ହୋଇଯାଇଥିଲା । ଦୁହେଁ ମୃତ୍ୟୁବରଣ କରିଥିଲେ । ସେତେବେଳକୁ ଲକ୍ଷ୍ମୀଙ୍କୁ ମାତ୍ର ବାରବର୍ଷ । ତାଦ ସାଙ୍ଗକୁ ଆଉ ଗୋଟିଏ ସାନ ଭାଇ ମଧ୍ୟ ଥିଲେ । ବ୍ରିଟିଶ୍ ବୋମାରେ ପ୍ରାଣ ହରାଇଥିବା ପିତାମାତାଙ୍କ ପ୍ରତିଶୋଧ ନେବା ପାଇଁ ଭାଇ ଭଉଣୀ ଦୁହେଁ ପ୍ରତିଜ୍ଞା ବଦ୍ଧ ହୋଇଗଲେ ।

ଏହି ଅନାଥ ଛୁଆ ଦୁଇଟାଙ୍କୁ ନିଜ ଦାୟିତ୍ୱରେ ରଖିଥିଲେ ଆଜାଦ୍ ହିନ୍ଦ୍ ଫୌଜରେ କାମ କରୁଥିବା ନୃସିଂହ ଦାସ । ଯୁଦ୍ଧ ବାହିନୀରେ ଯୋଗ ଦେବା ପାଇଁ ଏହି ଭାଇ ଭଉଣୀଙ୍କ ଜିଦ୍ କଥା ସେ ସୁଭାଷ ବୋଷଙ୍କ ଦୃଷ୍ଟି ସମ୍ମୁଖକୁ ଆଣିଥିଲେ । ଯୁଦ୍ଧ କରିବା ପାଇଁ ଏମାନଙ୍କର ବୟସ ହୋଇନାହିଁ ବୋଲି ସୁଭାଷ ବୋଷ କହିଥିଲେ । କିନ୍ତୁ କିଶୋରୀ ଲକ୍ଷ୍ମୀଙ୍କ ଜିଦ୍ ଓ ଯୁକ୍ତି ଦ୍ୱାରା ପ୍ରଭାବିତ ହୋଇ ତାଙ୍କୁ ମହିଳା ରେଜିମେଣ୍ଟରେ ଭର୍ତ୍ତି କଲେ । ବୟସ ହୋଇନଥିବାରୁ ତାଙ୍କୁ କେବଳ ରୋଷେଇ, ଝାଡୁପୋଛା ଆଦି କାମରେ ନିଯୁକ୍ତି ଦେଇଥିଲେ । ମହିଳା ରେଜିମେଣ୍ଟର କ୍ୟାପ୍‌ଟେନ୍ ଥିଲେ ଲକ୍ଷ୍ମୀ ସେହେଗାଲ୍ । ଲକ୍ଷ୍ମୀଙ୍କ କାର୍ଯ୍ୟଦକ୍ଷତାରେ ସେ ମଧ୍ୟ ମୁଗ୍ଧ ହୋଇଥିଲେ । ବୟସ କମ୍ ଥିବାରୁ ତାଙ୍କୁ ସହଜରେ କେହି ସନ୍ଦେହ କରିବେ ନାହିଁ ଚିନ୍ତା କରି ତାଙ୍କୁ ଶତ୍ରୁ ଶିବିରର ଗୁପ୍ତଚର କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦିଆଗଲା । ଇଂରେଜମାନେ ବେଙ୍ଗ ଖାଇବା ପାଇଁ ଖୁବ୍ ଭଲ ପାଆନ୍ତି । ଲକ୍ଷ୍ମୀ ଇନ୍ଦିରା ଘୋଡ଼ାଙ୍କ ପାଇଁ ଘାସ ଓ ଇଂରେଜଙ୍କ ପାଇଁ ବେଙ୍ଗ ଧରି ଶତ୍ରୁ ଶିବିରକୁ ଯାଉଥିଲେ । ସେଠାରୁ ଯାହା ଗୁପ୍ତ ଖବର ପାଉଥିଲେ, ତାହା ନିଜ ପକ୍ଷ ଶିବିରରେ ଜଣାଉଥିଲେ । ଏହା ଭିତରେ ଲକ୍ଷ୍ମୀଙ୍କୁ ଖଣ୍ଡାଯୁଦ୍ଧ ଓ ବନ୍ଧୁକ ଚାଳନା ପାଇଁ ଅନୁମତି ମିଳିଲା । ବର୍ମାରେ ଚାରିବର୍ଷ ରହିବା ପରେ ସେ ସିଙ୍ଗାପୁର ଆସିଲେ । ସିଙ୍ଗାପୁର ଯୁଦ୍ଧ କରିବା ପାଇଁ ଅନୁମତି ପାଇଥିଲେ । ବର୍ମାର ଭାଷା ଭଲ ଭାବରେ କହିପାରୁ ଥିବାରୁ ଲକ୍ଷ୍ମୀ ସମସ୍ତ ଶିବିରାର୍ଥିନୀଙ୍କର ପ୍ରିୟ ପାତ୍ରୀ ହୋଇଥିଲେ ଓ ଶତ୍ରୁ ଶିବିରରୁ ମଧ୍ୟ କିଛି ତଥ୍ୟ ଆଣିବାରେ ସମର୍ଥ ହୋଇଥିଲେ ।

ଶିବିରର ସର୍ବ କନିଷ୍ଠ ସୈନ୍ୟ ଥିଲେ ଲକ୍ଷ୍ମୀ । ଜାନକୀ ଦେଓ୍ୱାର, ଗୌରୀ, ଶାହାନଓ୍ୱାଜ୍ ଖାଁ, ଲକ୍ଷ୍ମୀ ସେହେଗାଲ୍, ଲକ୍ଷ୍ମୀ ଧିଲନ୍ ଆଦି ବୀରାଙ୍ଗନାମାନଙ୍କ ସହ କାମ କରିଥିଲେ । ଏହି ସମୟରେ ତାଙ୍କ ସାନଭାଇ ନକୁଳ କୁଆଡ଼େ ହଜି ଯାଇଥିଲେ । ଆଉ ତାଙ୍କର ସନ୍ଧାନ ଶେଷ ପର୍ଯ୍ୟନ୍ତ ମିଳିଲା ନାହିଁ ।

କିନ୍ତୁ ଦୁର୍ଭାଗ୍ୟବଶତଃ ଆଜାଦ୍ ହିନ୍ଦ୍ ଫୌଜ ଇଂରେଜମାନଙ୍କ କବଳକୁ ଆସିଯିବାରୁ ସୈନ୍ୟମାନଙ୍କୁ ଶିବିର ଛାଡ଼ିବାକୁ ନିର୍ଦ୍ଦେଶ ଦିଆଗଲା । ଯିଏ ଯେତିକି ପାରିଲେ ଗଲେ ତଥାପି ୧୦୦୦ ଜଣ ସୈନ୍ୟ ବ୍ରିଟିଶ୍‌ଙ୍କ ଦ୍ୱାରା ଗିରଫ ହେଲେ । ସେହି ଭିତରେ ପ୍ରାୟ ୩୫ ଜଣ ଥିଲେ ଓଡ଼ିଆ ସୈନିକ ।

ଆଜାଦ୍ ହିନ୍ଦ୍ ଫୌଜରୁ ଖସି ଆସି ମାସେ ଦୁଇ ମାସ କାଳ ଲକ୍ଷ୍ମୀ ଇନ୍ଦିରା ଜଣେ ଖ୍ରୀଷ୍ଟିଆନ୍ ମହିଳାଙ୍କ ଘରେ ଆଶ୍ରୟ ନେଇଥିଲେ । ପରିସ୍ଥିତି ଟିକେ ଶାନ୍ତ ହେବା ପରେ ସେ ଛଦ୍ମବେଶରେ ଜଳ ଜାହାଜରେ ସ୍ୱଦେଶକୁ ଫେରି ଆସିବାକୁ ବାହାରିଲେ । ଚିଟାଗଙ୍ଗ ବନ୍ଦର ନିକଟରେ ପୋଲିସ୍ ତାଙ୍କୁ ଫୌଜ ସନ୍ଦେହରେ ଗିରଫ କରିବା ପୂର୍ବରୁ ସେ ତାଙ୍କ ନିକଟରେ ଥିବା ମେଡଲ୍ ଓ ଯାହା କିଛି କାଗଜପତ୍ର ଥିଲା ସମୁଦ୍ରକୁ ଫିଙ୍ଗି ଦେଇଥିଲେ । ତଥାପି ପୋଲିସ୍ ତାଙ୍କୁ ଗିରଫ କରିଥିଲା କିନ୍ତୁ ପରେ ତାଙ୍କୁ ଛାଡ଼ି ଦିଆଯାଇଥିଲା । ସେଠାରୁ ସୁରକ୍ଷିତ ଆସିବା ପରେ ନୃସିଂହ ଦାସଙ୍କ ସହାୟତାରେ ପୋଷାକ ବଦଳାଇ ମୂକ ଅଭିନୟ କରି ଓଡ଼ିଶାର ଆଉ କେତେଜଣ ଆଜାଦ୍ ହିନ୍ଦ୍ ଫୌଜଙ୍କ ସହ ଓଡ଼ିଶା ଆସିଥିଲେ । ଓଡ଼ିଶା ଆସି ସେ ନିଜ ଘରର ଚିହ୍ନବର୍ଣ୍ଣ ପାଇ ନଥିଲେ । ଶେଷରେ ଆଜାଦ୍ ହିନ୍ଦ୍ ଫୌଜରେ ଯୁଦ୍ଧ କରୁଥିବା ଖଗେଶ୍ୱର ପଣ୍ଡାଙ୍କ ସହ ବିବାହ କଲେ, ଖଗେଶ୍ୱର ହିରାକୁଦ ବନ୍ଧ ନିର୍ମାଣ ବେଳେ ଡ୍ରାଇଭର୍ ରୂପେ କାମ କରୁଥିଲେ । ଖଗେଶ୍ୱରଙ୍କୁ ବିବାହ କରିବା ପରେ ଲକ୍ଷ୍ମୀ ଇନ୍ଦିରା ପଣ୍ଡା ନାମରେ ନାମିତ ହୋଇଥିଲେ । ତଥାପି ତାଙ୍କର ଦୁର୍ଭାଗ୍ୟ ସେତିକିରେ ସରିଲା ନାହିଁ । ଗୋଟାଏ ପୁତ୍ର ସନ୍ତାନର ଜନନୀ ହୋଇସାରିବା ପରେ ତାଙ୍କ ସ୍ୱାମୀଙ୍କର ଅକାଳ ମୃତ୍ୟୁ ଘଟିଲା । ସେ ସେଠାରୁ ଫେରିଆସିଲେ ତାଙ୍କର ପୁରୁଣା ସହର ଜୟପୁର ।

ଦେଶ ସ୍ୱାଧୀନ ପରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭତ୍ତା ଦିଆଗଲା, କିନ୍ତୁ ଲକ୍ଷ୍ମୀ ଜେଲ୍ ଯାଇନଥିବାରୁ ଓ ଆବଶ୍ୟକୀୟ କାଗଜପତ୍ର ନଥିବାରୁ ତାଙ୍କୁ ସ୍ୱାଧୀନତା ସଂଗ୍ରାମୀ ଭତ୍ତାରୁ ବଞ୍ଚିତ କରାଗଲା । କେହି ଜଣେ ହୃଦୟ ସମ୍ପନ୍ନ କଲେକ୍ଟର ଜୟପୁର ସହରରେ ତାଙ୍କ ପାଇଁ ଘରଡିହ ଖଣ୍ଡେ ଯୋଗାଇ ଦେଇଥିଲେ । କିନ୍ତୁ ସେହି ଜାଗା ଉପରେ ଘର ଠିଆ କରିବା ପରି ସମ୍ବଳ ନଥିଲା । ମାଟି କାନ୍ଥ ଓ ଖପରଲି ଘର ଖଣ୍ଡେ ତିଆରି କରି ପିଲାମାନଙ୍କ ସହ ମୁଣ୍ଡ ଗୁଞ୍ଜିଲେ । ବଞ୍ଚିବାର କୌଣସି ରାହା ନଥିବାରୁ ମୂଲପାତି ଲାଗି ଓ ପର ଘରେ ବାସନ ମାଜି ସେ ପିଲାମାନଙ୍କୁ ମଣିଷ କରିବାକୁ ଲାଗିଲେ । ଝିଅଟା ତ ବିବାହ କରି ତା' ଘର ସଂସାର କଲା । କିନ୍ତୁ ପୁଅ ମଣିଷ ହେଲା ନାହିଁ । ଅହରହ ନିଶାପାନ କରି ଲକ୍ଷ୍ମୀ ଇନ୍ଦିରାଙ୍କ ଜୀବନକୁ ଆହୁରି ଦୁର୍ବିସହ କରିଦେଲା । ୨୦୦୮ ପର୍ଯ୍ୟନ୍ତ ଏହା ହିଁ ଥିଲା ଲକ୍ଷ୍ମୀ ଇନ୍ଦିରାଙ୍କ ଜୀବନର କରୁଣ କାହାଣୀ ।

ଇତ୍ୟବସରରେ ଇତିହାସ ଗବେଷକ ଅନୀଲ୍ ଧୀର୍ ଆଜାଦ୍ ହିନ୍ଦ୍ ଫୌଜିମାନଙ୍କ ଉପରେ ଗବେଷଣା କରୁଥିଲେ । କୌଣସି ସୂତ୍ରରୁ ଲକ୍ଷ୍ମୀ ଇନ୍ଦିରାଙ୍କ ସୂଚନା ପାଇ ଗଞ୍ଜାମ ସମେତ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଖୋଜି ଶେଷରେ ଜୟପୁରରେ ପହଞ୍ଚିଲେ । ଲକ୍ଷ୍ମୀଙ୍କ ମୁଖରୁ ତାଙ୍କ ଦୟନୀୟ ଜୀବନର କାହାଣୀ ଶୁଣି ତାଙ୍କୁ ଜଣେ ସ୍ୱାଧୀନତା ସଂଗ୍ରାମୀର ଉପଯୁକ୍ତ ମର୍ଯ୍ୟାଦା ଦେବା ପାଇଁ ପ୍ରତିଶ୍ରୁତି ଦେଲେ । ଲକ୍ଷ୍ମୀ ଇନ୍ଦିରାଙ୍କୁ ଧରି ସେ ଦିଲ୍ଲୀ ଗଲେ । ସେତେବେଳେ ପ୍ରତିଭା ପାଟିଲ୍ ଥିଲେ ରାଷ୍ଟ୍ରପତି । ରାଷ୍ଟ୍ରପତି ତାଙ୍କୁ ପାଖ ଆସନରେ ବସାଇ ତାଙ୍କ ଜୀବନର କରୁଣ କାହାଣୀ ଶୁଣି ଦୁଃଖରେ ଅଭିଭୂତ ହୋଇଥିଲେ । ଲକ୍ଷ୍ମୀ ରାଷ୍ଟ୍ରପତିଙ୍କୁ ତାଙ୍କର ପ୍ରାପ୍ୟ ଦେବା ପାଇଁ ଅନୁରୋଧ କରିଥିଲେ । ରାଷ୍ଟ୍ରପତି ତାଙ୍କୁ ଏକ ଲକ୍ଷ ଟଙ୍କାର ଏକ ଥଳି ଦେଇଥିଲେ । କିନ୍ତୁ ଲକ୍ଷ୍ମୀ ଏ ପ୍ରାପ୍ୟ ଚାହୁଁ ନାହାନ୍ତି ବୋଲି ଦୃଢ଼ ସ୍ୱରରେ କହିଥିଲେ । ଅନୀଲ୍ ଧୀରଙ୍କ

ବାଧ୍ୟବାଧକତାରେ ସେ ସେଥିରୁ ମାତ୍ର ଦଶ ହଜାର ଟଙ୍କା ରଖି ଆଉ ସବୁ ଫେରାଇ ଦେଇଥିଲେ । ଲକ୍ଷ୍ମୀ ଇନ୍ଦିରାଙ୍କୁ ରାଷ୍ଟ୍ରପତି ଶ୍ରୀମତୀ ପାଟିଲ୍ ଉପଯୁକ୍ତ ପ୍ରାପ୍ୟ ଦେବା ପାଇଁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିଥିଲେ । ୨୦୦୮ ଅଗଷ୍ଟ ୧୫ ତାରିଖରେ ରାଷ୍ଟ୍ରପତି ଶ୍ରୀମତୀ ପ୍ରତିଭା ପାଟିଲ୍ ଲକ୍ଷ୍ମୀ ପଣ୍ଡାଙ୍କୁ 'ରାଷ୍ଟ୍ରୀୟ ସ୍ୱତନ୍ତ୍ରତା ସେନାନୀ' ସମ୍ମାନରେ ସମ୍ମାନିତ କରିଥିଲେ । ସେହିବର୍ଷ ଭୁବନେଶ୍ୱରରେ ମଧ୍ୟ ତାଙ୍କୁ 'ସ୍ୱତନ୍ତ୍ରତା ସଂଗ୍ରାମୀ ସମ୍ମାନ'ରେ ସମ୍ମାନିତ କରାଯାଇଥିଲା ।

ଦେଶ ପ୍ରତି ତାଙ୍କର ତ୍ୟାଗ ଓ ବଳିଦାନକୁ ସମ୍ମାନ ଜଣାଇ ଜୟପୁର ଉପକଣ୍ଠରେ ଏକ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ଓଡ଼ିଶା ସରକାର ନିର୍ମାଣ କଲେ । କିନ୍ତୁ ଅତ୍ୟନ୍ତ ଦୁଃଖର କଥା ଲକ୍ଷ୍ମୀ ଇନ୍ଦିରା ତାଙ୍କର ନ୍ୟାଯ୍ୟ ପ୍ରାପ୍ୟ ପାଇବା ପରେ ଆଉ ବେଶି ଦିନ ବଞ୍ଚିନଥିଲେ । ତାଙ୍କ ସମ୍ପର୍କରେ ସମ୍ବାଦପତ୍ରମାନଙ୍କରେ ସମ୍ବାଦ ପରିବେଷଣ ହେଲା । ଲୋକେ ତାଙ୍କର ମହତ୍ତ୍ୱ ବୁଝିଲେ । ବିଭିନ୍ନ ଅନୁଷ୍ଠାନ ତାଙ୍କୁ ସମ୍ମାନ ସମ୍ବର୍ଦ୍ଧନା ଦେଲେ । ଜୀବନରେ ଯାହା କିଛି ଅପ୍ରାପ୍ତି ଥିଲା ସବୁ କିଛି ପ୍ରାପ୍ତି ହେବାର ସେ ଅନୁଭବ କଲେ ।

ସମ୍ବଲପୁର ସହରରୁ ଏକ ସଭାରେ ଉଦ୍‌ବୋଧନ ଦେଇ ଫେରିବା ପରେ ସେ ଅସୁସ୍ଥ ହୋଇପଡ଼ିଲେ । ସେହି ଅସୁସ୍ଥତାରୁ ଆଉ ମୁକ୍ତ ହୋଇପାରିଲେ ନାହିଁ । ସରକାରୀ ସହାୟତାରେ ତାଙ୍କୁ ଭୁବନେଶ୍ୱର ଅଣାଗଲା । ଭୁବନେଶ୍ୱରରୁ ନିଆଗଲା ଦିଲ୍ଲୀ । ସତେଯେମିତି ଲକ୍ଷ୍ମୀ ଇନ୍ଦିରାଙ୍କର ଶେଷ ଇଚ୍ଛା ଥିଲା ଦିଲ୍ଲୀ ସହରରେ ତାଙ୍କର ମହାପ୍ରୟାଣ ହେଉ । ଦିଲ୍ଲୀ ଏମ୍‌ସ୍ ହସ୍‌ପିଟାଲ୍‌ରେ ସେ ତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଓଡ଼ିଶାର ଗର୍ବଗୌରବ ସ୍ୱାଭିମାନର ପ୍ରତୀକ ଆଜାଦ୍ ହିନ୍ଦ୍ ଫୌଜର ଏକମାତ୍ର ମହିଳା ସ୍ୱାଧୀନତା ସଂଗ୍ରାମୀଙ୍କ ଶେଷ ନିଃଶ୍ୱାସ ରାଜଧାନୀ ଦିଲ୍ଲୀର ପାଣି ପବନରେ ମିଶି ଯାଇଥିଲା ।

ଦି ଏମେରାଲ୍ଡ଼ ଆପାର୍ଟମେଣ୍ଟ
ବ୍ଲକ୍ ସି, ୨୧୩, ଲକ୍ଷ୍ମୀସାଗର, ଭୁବନେଶ୍ୱର-୬



# ସ୍ୱାମୀ ବିବେକାନନ୍ଦ ଓ ଆଜିର ଯୁବଶକ୍ତି

ମୀରା ବେଉରା

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭାରତବର୍ଷରେ ଯେତେବେଳେ ବସ୍ତୁବାଦ, ବ୍ୟକ୍ତିବାଦ ବୃଦ୍ଧି ପାଇ ମନୁଷ୍ୟ ନିଜର ସ୍ୱାର୍ଥ ପାଇଁ ଅନ୍ୟକୁ ଶୋଷଣ କରି ଚାଲୁଥିଲା, ଭାରତବାସୀ ନିଜର ଆଦର୍ଶ, ଆତ୍ମବିଶ୍ୱାସ ଏବଂ ଆଧ୍ୟାତ୍ମିକତାର ମୂଲ୍ୟବୋଧକୁ ହରାଇ ବଡ଼ ସଂକଟ ପରିସ୍ଥିତି ଦେଇ ଗତି କରୁଥିଲା, ଠିକ୍ ସେହି ସମୟରେ ପ୍ରତିଟି ଭାରତୀୟଙ୍କୁ ଜାଗ୍ରତ କରିବା ପାଇଁ ଏ ପୁଣ୍ୟଭୂମି ଭାରତବର୍ଷରେ ଅବତୀର୍ଣ୍ଣ ହୋଇଥିଲେ ଶ୍ରୀରାମକୃଷ୍ଣଙ୍କ ମହାନ୍ ଶିଷ୍ୟ ସ୍ୱାମୀ ବିବେକାନନ୍ଦ । ସେ ନିଜର ଉଚ୍ଚତର ଆଧ୍ୟାତ୍ମିକ ସାଧନା କରି, ନିଜର ସାଧନା ବଳରେ ଜାଗରଣ ସୃଷ୍ଟି କରି ସମଗ୍ର ବିଶ୍ୱକୁ ଜୟ କରିବାର ସ୍ୱପ୍ନ କେବଳ ଦେଖିନଥିଲେ, ଯଥାର୍ଥରେ ସଫଳ ମଧ୍ୟ ହୋଇଥିଲେ ।



ଆଜି ଯେତେବେଳେ ସାଧାରଣ ମଣିଷଟିଏ ବିଜ୍ଞାନ ଏବଂ ଭୌତିକ ସଭ୍ୟତାର ଯଥେଷ୍ଟ ଉନ୍ନତି ହେବା ସତ୍ତ୍ୱେ ଶାନ୍ତି ଓ ସୁଖ ପାଇପାରୁନାହିଁ, ଆଧ୍ୟାତ୍ମିକତାରୁ ଦୂରେଇ ଯାଇ ଅନ୍ଧକାର, ଭୟ, ଅସତ୍ୟର ଶିକାର ହେଉଛି ଠିକ୍ ସେତିକିବେଳେ ମଣିଷ ଜୀବନକୁ ସରସ, ସୁନ୍ଦର କରି ତା' ଭିତରେ ଦିବ୍ୟ ଆଧ୍ୟାତ୍ମିକ ଚେତନାକୁ ଜାଗ୍ରତ କରିବା ପାଇଁ ପ୍ରୟାସ କରିଥିଲେ ସ୍ୱାମୀ ବିବେକାନନ୍ଦ । ଥରେ ନୋବେଲ ବିଜୟୀ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର କହିଥିଲେ, 'ଯଦି ଭାରତକୁ ଜାଣିବାକୁ ଚାହାନ୍ତି, ତେବେ ସ୍ୱାମୀ ବିବେକାନନ୍ଦଙ୍କୁ ପଢ଼ନ୍ତୁ ।' ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ହେଉ ଅବା ରାଷ୍ଟ୍ରୀୟତା ଅବା ଅନ୍ତରାଷ୍ଟ୍ରୀୟତା ହେଉ ଅବା ବିଜ୍ଞାନ ଏବଂ ଆଧ୍ୟାତ୍ମିକତା ହେଉ– ସବୁର ଅପୂର୍ବ ମିଳନ ଥିଲା ସ୍ୱାମୀ ବିବେକାନନ୍ଦଙ୍କ ଉଜ୍ଜ୍ୱଳମୟ ବ୍ୟକ୍ତିତ୍ୱରେ । ସନ୍ନ୍ୟାସୀ ହେବା ପୂର୍ବରୁ ସ୍ୱାମୀଜୀ ନରେନ୍ଦ୍ରନାଥ ଦତ୍ତ ଭାବରେ ପରିଚିତ ଥିଲେ ।

୧୮୬୩ ମସିହା ଜାନୁଆରୀ ୧୨ ତାରିଖରେ ପିତା ବିଶ୍ୱନାଥ ଦତ୍ତ ଏବଂ ମାତା ଭୁବନେଶ୍ୱରୀଙ୍କଠାରୁ ଜନ୍ମ ହୋଇଥିଲେ କଲିକତା ନଗରୀରେ ସ୍ୱାମୀ ବିବେକାନନ୍ଦ । ମା'ଙ୍କର ଆଚାର, ବ୍ୟବହାର, ଗରିବମାନଙ୍କ ପ୍ରତି ଦୟା ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ନିଷ୍ପେଷିତ, ଦରିଦ୍ର ଭାରତୀୟଙ୍କ ଶୋଚନୀୟ ଅବସ୍ଥା ତାଙ୍କୁ ଏଭଳି ମର୍ମାହତ କରିଥିଲା ଯେ ସେମାନଙ୍କ ଭିତରେ ନୂତନ ଆଶା, ଉନ୍ମାଦନା ସୃଷ୍ଟି କରିବା ପାଇଁ ସେ ସମଗ୍ର ବିଶ୍ୱ ଭ୍ରମଣ

କରି ତାଙ୍କର ଉଦ୍ଦୀପନାମୟୀ ବକ୍ତବ୍ୟ ଦ୍ୱାରା ସମଗ୍ର ବିଶ୍ୱକୁ ମନ୍ତ୍ରମୁଗ୍ଧ କରିଦେଇଥିଲେ ।

ଦେଶର ଦାରିଦ୍ର୍ୟ, ଅଶିକ୍ଷା, ନାରୀମାନଙ୍କ ଦୁର୍ଦ୍ଦଶା ତାଙ୍କୁ ଗଭୀର ଭାବରେ ମର୍ମାହତ କରିଥିଲା । ଚିକାଗୋ ଧର୍ମ ସମ୍ମିଳନୀରେ ପରିଚୟପତ୍ର ନ ଥିବାରୁ ପ୍ରତିନିଧିତ୍ୱ କରିପାରିବେ ନାହିଁ ବୋଲି ଜାଣି ସୁଦ୍ଧା, ଭାଙ୍ଗିପଡ଼ି ନଥିଲେ । ଆମେରିକାର ବୋଷ୍ଟନ୍ ସହର ଯିବାବେଳେ କୁମାରୀ କେଥ୍ ଭୀନ୍ ସେନ୍‌ବୋର୍ଣ୍ଣଙ୍କ ସହ ପରିଚିତ ହୋଇ ତାଙ୍କ ସହାୟତାରେ ହାଭାର୍ଡ ବିଶ୍ୱବିଦ୍ୟାଳୟର ପ୍ରଫେସର ଜନ୍ ହେନେରୀ ରାଇଟ୍‌ଙ୍କ ସଂସ୍ପର୍ଶରେ ଆସି ଚିକାଗୋ ଧର୍ମ ସମ୍ମିଳନୀରେ ପ୍ରତିନିଧିତ୍ୱ କରିବାର ସୁଯୋଗ ହାସଲ କରିଥିଲେ । ୧୮୯୩ ମସିହା ସେପ୍ଟେମ୍ବର ମାସ ୧୧ ତାରିଖରେ ଚିକାଗୋ ସହରର ଆର୍ଟ ଇନିଷ୍ଟିଚ୍ୟୁଟ୍ ଏକ ବିଶାଳ କକ୍ଷରେ, ପ୍ରାୟ ୭୦୦୦ ଶ୍ରୋତାଙ୍କ ସମ୍ମୁଖରେ ବିଶ୍ୱର ସବୁ ଧର୍ମ ସଂପ୍ରଦାୟର ପ୍ରତିନିଧିଙ୍କ ଉପସ୍ଥିତିରେ ମା' ସରସ୍ୱତୀଙ୍କୁ ପ୍ରଣାମ କରି କହି ଉଠିଲେ, 'ହେ ମୋର ଆମେରିକାର ପ୍ରିୟ ଭାଇ ଓ ଭଉଣୀ' । ଶ୍ରୋତାମାନଙ୍କ କରତାଳିରେ ସେଦିନ ସେହି କକ୍ଷଟି କମ୍ପି ଉଠିଥିଲା । ସେଦିନର ସେହି ଭିକ୍ଷା ପାତ୍ର ଧରି ବୁଲୁଥିବା ନିରାଡ଼ମ୍ବର, ସରଳ ଅଚିହ୍ନା, ଗୈରିକ ବସ୍ତ୍ର ଧାରଣ କରିଥିବା ସନ୍ନ୍ୟାସୀ ସାଧାରଣ ନାୟକରୁ ମହାନାୟକ ପାଲଟି ଯାଇଥିଲେ । ସ୍ୱାମୀଜୀଙ୍କର କିନ୍ତୁ ଏସବୁ କୌଣସି ନାମ, ଯଶ, ଖ୍ୟାତିର କ୍ଷୁଧା, ଭୌତିକ ସୁଖର ଅଭିଳାଷ ନଥିଲା । ଆମେରିକାର କୋମଳ ଶଯ୍ୟା ତାଙ୍କୁ କଣ୍ଟକିତମୟ ବୋଧ ହେଉଥିଲା । ସେ ସେତେବେଳେ ଶିଶୁଙ୍କ ପରି କାନ୍ଦି ଉଠି କହିଲେ, 'ମା'! ମୋ ଦେଶ ଭାରତବର୍ଷ ଘୋର ଦାରିଦ୍ର୍ୟ ଭିତରେ ବୁଡ଼ି ରହିଥିବାବେଳେ, ମୋର ଯଶ, ଖ୍ୟାତିର ଚିନ୍ତା କଣ? ଭାରତବର୍ଷରେ, ଯେଉଁଠି ମୁଠାଏ ଖାଇବାକୁ ନ ପାଇ ଲୋକ ମୃତ୍ୟୁବରଣ କରୁଛନ୍ତି, ସେଠି ନିଜର ଭୌତିକ ସୁଖ ପାଇଁ ଆମେରିକାବାସୀ ପାଣି ପରି ଅର୍ଥ ବ୍ୟୟ କରୁଛନ୍ତି । କିଏ ସେମାନଙ୍କୁ ମୁଠାଏ ଅନ୍ନ ଦେବ?

ଏହା ହିଁ ଥିଲା ବିଶ୍ୱବିଜୟୀ ସ୍ୱାମୀ ବିବେକାନନ୍ଦଙ୍କର ଜ୍ୱଳନ୍ତ ଦେଶପ୍ରେମର ପରିଚୟ । ବାସ୍ତବରେ ଚିକାଗୋର ଧର୍ମ ସମ୍ମିଳନୀରେ ସ୍ୱାମୀଜୀଙ୍କର ଉଦ୍‌ଭାଷଣ ଭାରତର ପୁନର୍ଜାଗରଣର ଇତିହାସରେ ଏକ ମହନୀୟ ଘଟଣା । ଯୋଗୀ ଶ୍ରୀ ଅରବିନ୍ଦ କହନ୍ତି, 'ବିବେକାନନ୍ଦଙ୍କ ପଶ୍ଚିମ ଯାତ୍ରା ବିଶ୍ୱ ସମ୍ମୁଖରେ ଭାରତ ଜାଗରଣର ଜୀବନ ସଂକେତ ଥିଲା ।' କେବଳ ଭାରତ ପାଇଁ ନୁହେଁ, ବିଶ୍ୱବିଜୟୀ ହେବା ଉଦ୍ଦେଶ୍ୟରେ ସ୍ୱାମୀଜୀଙ୍କର ସ୍ୱଦେଶ ପ୍ରତ୍ୟାବର୍ତ୍ତନ ଖବର 'ଅମୃତବଜାର' ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ସେଦିନ ଭାରତବର୍ଷ ଯେଉଁ ବିଜୟ ଅନୁଭବ କରିଥିଲା, ସେହି ବିଜୟରେ ଅସ୍ତ୍ରଶସ୍ତ୍ର, ଗୋଳାବାରୁଦ କିମ୍ବା ଡିନାମାଇଟ୍‌ର ଆବଶ୍ୟକତା ନଥିଲା । ସ୍ୱାମୀଜୀ କହୁଥିଲେ, 'ଧର୍ମ ହିଁ ଭାରତର ଆତ୍ମା' । ସେ ବିଶ୍ୱାସ କରିଥିଲେ– ଭାରତର ଉତ୍ଥାନ ହେବ ଶାରୀରିକ ଶକ୍ତିରେ ନୁହେଁ, ଆତ୍ମିକ ଶକ୍ତି ବଳରେ । ଧ୍ୱଂସର ପତାକା ଦ୍ୱାରା ନୁହେଁ, ଆତ୍ମିକ ଶକ୍ତି ବଳରେ ଶାନ୍ତି, ପ୍ରେମର ପତାକା ଦ୍ୱାରା ସନ୍ନ୍ୟାସୀର ଗୈରିକ ବସନ ମାଧ୍ୟମରେ ଭାରତୀୟ ଯୁବକମାନଙ୍କୁ ସୁସଂଗଠିତ ଦୁର୍ନୀତି, ଭ୍ରଷ୍ଟାଚାର, ଅନ୍ଧାକାର, ଅସତ୍ୟ, ହୀନ ଜାତିପ୍ରଥା, କୁସଂସ୍କାର ବିରୋଧରେ ଲଢ଼ିବାକୁ ସେ ପ୍ରବର୍ତ୍ତାଉ ଥିଲେ । ଗୋଟିଏ ପଟେ ବିଜ୍ଞାନ, ଅନ୍ୟ ପଟେ ବେଦବେଦାନ୍ତ, ଗୋଟିଏ ପଟେ ଦିବ୍ୟଜ୍ଞାନ, ଅନ୍ୟପଟେ ପ୍ରଚଣ୍ଡ କର୍ମ, ଗୋଟିଏ ପଟେ ଆଧ୍ୟାତ୍ମିକ ଅନୁଭୂତି, ଅନ୍ୟପଟେ ବୈଷୟିକ ଉନ୍ନତି– ସେ ବୁଝିଥିଲେ ଏ ସବୁର ମିଶ୍ରଣ ହିଁ ଜୀବନର ପୂର୍ଣ୍ଣତା ଆଣିବ ।

ଆଜି ଯେତେବେଳେ ସମାଜରେ ନାନା କୁସଂସ୍କାର ଦେଖାଯାଉଛି, ସ୍ୱାମୀଜୀ କହୁଥିଲେ, 'ଧର୍ମ କେବଳ ଉଚ୍ଚ ଜାତିର ଏକଚାଟିଆ ଅଧିକାର ନୁହେଁ ବରଂ ଏହା ଧନୀ, ଦରିଦ୍ର, ପତିତ ସମସ୍ତଙ୍କପାଇଁ ଉଦ୍ଦିଷ୍ଟ । ଆଉ କହୁଥିଲେ, 'ଆମର ଧର୍ମ ରହିଛି ରୋଷେଇଶାଳାରେ । ଆମର ଭଗବାନ ହେଉଛନ୍ତି ରନ୍ଧନପାତ୍ର' । ତାଙ୍କର ବିଶାଳ

ହୃଦୟରେ ବାଇବେଲ, ବେଦ, କୋରାନ ଆଦି ସମସ୍ତ ଗ୍ରନ୍ଥର ଅସଂଖ୍ୟ ପୃଷ୍ଠାର ସମାହାର । ମନୁଷ୍ୟ ଭିତରୁ ଭୟ, ହତାଶା, ଦୁର୍ବଳତା, ଅନ୍ଧକାର, ଅସତ୍ୟ ଏବଂ ସର୍ବପରି ଦାସତ୍ୱକୁ ହଟାଇଦେଇ, ମଣିଷ ଭିତରେ ଜ୍ଞାନ ରୂପକ ଆତ୍ମବିଶ୍ୱାସ ସୃଷ୍ଟି ହେଉ, ଏହା ହିଁ ଥିଲା ସ୍ୱାମୀଜୀଙ୍କର ଉଦ୍ଦେଶ୍ୟ ।

ତାଙ୍କ ମତରେ, 'ମାନବ ଧର୍ମ ହିଁ ଶ୍ରେଷ୍ଠ ଧର୍ମ' । ୧୮୯୭ରେ ସେ ରାମକୃଷ୍ଣ ମିଶନ ପ୍ରତିଷ୍ଠା କରିଥିଲେ । ମାତ୍ର ୩୯ ବର୍ଷ ବୟସରେ ସ୍ୱାମୀଜୀ ୧୯୦୨ ମସିହାରେ ଦେହତ୍ୟାଗ କଲେ ସତ, ମାତ୍ର ସମସ୍ତ ଯୁବ ସମାଜ ଏବଂ ମାନବ ସମାଜକୁ ତେଜସ୍ୱୀ ଏବଂ ଆତ୍ମବିଶ୍ୱାସୀ କରିବା ପାଇଁ ସେମାନଙ୍କ ଭିତରେ ଯେଉଁ ଜାତୀୟ ଚେତନା ଏବଂ ଆଧ୍ୟାତ୍ମିକତାର ଏକତା ସୃଷ୍ଟି କଲେ, ତାହା ସର୍ବଦା ସ୍ମରଣୀୟ ହୋଇ ରହିବ ଏବଂ ସୁପ୍ତ ଯୁବପିଢ଼ିକୁ ଜାଗ୍ରତ କରିବ, ଏଥିରେ ସନ୍ଦେହ ନାହିଁ ।

ରଘୁନାଥଜୀଉ ମହାବିଦ୍ୟାଳୟ
ଦେଉଳସାହି, କଟକ–୭୫୩୦୦୮



# ଭାରତୀୟ ଗଣତନ୍ତ୍ରର ବିଧି, ବିଧାନ, ସମ୍ବିଧାନ

ପ୍ରଫୁଲ୍ଲ କୁମାର ଦାସ

ଭାରତ ବିଶ୍ୱର ଏକମାତ୍ର ଦେଶ ଯେଉଁଠି ସ୍ୱାଧୀନତା ପ୍ରାପ୍ତି ପରେ ନିରବଚ୍ଛିନ୍ନ ଭାବରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା କ୍ରମାଗତ ସୁରକ୍ଷିତ ରହିଅଛି । ସାମ୍ପ୍ରତିକ ବିଶ୍ୱରେ ଏହା ହେଉଛି ସବୁଠାରୁ ବଡ ଉପଲବ୍ଧି ଓ ବୈଶିଷ୍ଟ୍ୟ । ଭାରତବର୍ଷର ଆଦର୍ଶ ସମ୍ବିଧାନ ବିଶ୍ୱର ସର୍ବ ବୃହତ୍ତମ ସମ୍ବିଧାନ । ୧୯୫୦ ଜାନୁଆରୀ ୨୬ ଠାରୁ ୨୦୨୪ ଜାନୁଆରୀ ୨୬, ସୁଦୀର୍ଘ ଲମ୍ବା ରାସ୍ତା ଅତିକ୍ରମ କରି ଏହା ପୂର୍ଣ୍ଣ ଯୌବନରେ ପ୍ରବେଶ କରିଛି । ବ୍ୟକ୍ତିର ଗରିମା ଓ ରାଷ୍ଟ୍ରର ଏକତା, ଅଖଣ୍ଡତା ଆମର ସଂକଳ୍ପ ପାଲଟିଛି । ବିବିଧତା ଭିତରେ ଏକତା ଓ ସଶକ୍ତ ଗଣତାନ୍ତ୍ରିକ ବିଧିବ୍ୟବସ୍ଥା କାର୍ଯ୍ୟକାରିତା ଉପରେ ଗଣତନ୍ତ୍ର ଓ ସମ୍ବିଧାନର ଐତିହ୍ୟ ଓ ଇତିହାସ ନିର୍ଭରଶୀଳ । ଯାହାର ମୂଲ୍ୟବାନ ମୂଲ୍ୟାୟନ, ମୂଲ୍ୟବୋଧ ସୁସ୍ଥ ଗଣତନ୍ତ୍ରର ମୂଳମନ୍ତ୍ର । ଗଣତନ୍ତ୍ର ଦିବସ ଅବସରରେ ଓଡିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଛନ୍ତି, ''ଆମ ସମ୍ବିଧାନ ଏକ ଆଦର୍ଶ ସମ୍ବିଧାନ, ଆମ ଗଣତନ୍ତ୍ରର ଆତ୍ମା । ଏକ ମହାନ ଦେଶର ନାଗରିକ ଭାବରେ ଆମର ସକଳ ଶକ୍ତିର ଆଧାର ହେଉଛି ଆମର ସମ୍ବିଧାନ । ଏକ ସମୃଦ୍ଧ ତଥା ନ୍ୟାୟପୂର୍ଣ୍ଣ ସମାଜ ଗଠନ ପାଇଁ ଏହା ଆମକୁ ସବୁବେଳେ ପ୍ରେରଣା ଦେଇ ଚାଲିଛି'' । ଗଣତନ୍ତ୍ର ସମ୍ପର୍କରେ ଡଃ. ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ଙ୍କ ଭାଷାରେ– 'ରାଷ୍ଟ୍ର ଗଠନର ମୂଳ ଉଦ୍ଦେଶ୍ୟ ବ୍ୟକ୍ତି ଜୀବନକୁ ସରସ ସୁନ୍ଦର କରିବା । ବ୍ୟକ୍ତିକୁ ନିର୍ବିଘ୍ନରେ ସ୍ୱାଧୀନତା ଉପଭୋଗ କରିବାକୁ ଦେବା ଓ ଏକ ନିରାପତ୍ତାର ବାତାବରଣ ସୃଷ୍ଟି କରିବା' ।

ଗଣତନ୍ତ୍ର ସେହିଠାରେ ଜୀବନ୍ତ, ଯେଉଁଠି ପ୍ରତି ମଣିଷ ସ୍ୱାଧୀନଚେତା, ଭୟଶୂନ୍ୟ ଓ ସମ୍ମାନର ସହ ଜୀବନ ବିତାଏ । ଜାତି, ବର୍ଣ୍ଣ, ଲିଙ୍ଗ, ଧର୍ମ, ବିଶ୍ୱାସ ଓ ଆଂଚଳିକତା ଭିତରେ ଭେଦଭାବ ସୃଷ୍ଟି କରାଯାଏ ନାହିଁ । ମଣିଷ ଏକ ସକାରାତ୍ମକ ପରିବେଷ୍ଟନୀରେ ବଞ୍ଚେ । ବ୍ୟକ୍ତିର ସଚେତନତା ହିଁ ଗଣତନ୍ତ୍ରର ଅମୋଘ କବଚ । ଶାସକଙ୍କୁ ସମାଲୋଚନା କରିବା, ଅନ୍ୟାୟ, ଅନୀତିକୁ ବିରୁଦ୍ଧାଚରଣ କରିବା ଗଣତାନ୍ତ୍ରିକ ରାଷ୍ଟ୍ରର ବିଶେଷତ୍ୱ । ଦାର୍ଶନିକ ରୁଷୋଙ୍କ ମତରେ, ''ଯେତେବେଳେ ରାଷ୍ଟ୍ର ସାମୂହିକ ଇଚ୍ଛା ବା ସ୍ୱାର୍ଥ ବିରୁଦ୍ଧରେ ଯାଏ ସେତେବେଳେ ରାଷ୍ଟ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଯଥାର୍ଥ । ଆଧୁନିକ ଯୁଗରେ ଗଣତନ୍ତ୍ର ଶାସନ ବ୍ୟବସ୍ଥାକୁ ସର୍ବୋତ୍ତମ ଶାସନ ବ୍ୟବସ୍ଥା ବୋଲି କୁହାଯାଇଛି । ଗଣତନ୍ତ୍ରର ଅସଲ ଅର୍ଥ ନାଗରିକ ପ୍ରଧାନ ରାଷ୍ଟ୍ର ଓ ଶାସନ ବ୍ୟବସ୍ଥା, ଯେଉଁଠି ସାଧାରଣ ଲୋକଙ୍କ ସୁଖ,ସମୃଦ୍ଧି,ସୁରକ୍ଷା ଓ ଶାନ୍ତି ଶାସନର ମୂଳ ଧେୟ ହେବ । ପଞ୍ଚାୟତିରାଜ ବ୍ୟବସ୍ଥାକୁ ଗଣତନ୍ତ୍ରର ଏନ୍ତୁଡିଶାଳ ବୋଲି କୁହାଯାଇଛି । ଭାରତର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କ ଭାଷାରେ – ଆମେ କେବଳ କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇ ସମାଜ ଓ ଦେଶକୁ ସଶକ୍ତି କରିପାରିବା । ଯଦି ନିଜ କର୍ତ୍ତବ୍ୟ ପ୍ରତି ସମର୍ପଣ ଏବଂ ଗାମ୍ଭୀର୍ଯ୍ୟ ରହିବ । ତାହାହେଲେ ଜଣେ ମାତ୍ର ବ୍ୟକ୍ତି ସମ୍ପୂର୍ଣ୍ଣ ସମାଜର ଭବିଷ୍ୟତ ବଦଳାଇ ଦେଇପାରିବ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଜଣେ ଅତ୍ୟନ୍ତ ଗଣତନ୍ତ୍ରବାଦୀ ବ୍ୟକ୍ତି ଥିଲେ । ତାଙ୍କ ଭାଷାରେ –

''Inner party democracy would also ensure that leaders are not thrust upon the people from above, but elected from below''.

ଦେଶ ସ୍ୱାଧୀନ ହେବା ପରେ ପ୍ରଥମ ନିର୍ବାଚନ ନିଶ୍ଚିତ ଭାବେ ବଡ ଆହ୍ୱାନ ଥିଲା । ଏହାକୁ ସାକାର କରିବା ପାଇଁ ପ୍ରଥମ ନିର୍ବାଚନ କମିଶନର ପଦ୍ମଭୂଷଣ ସୁକୁମାର ସେନ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ନାଗରିକମାନଙ୍କୁ ସଚେତନ କରିବା ପାଇଁ ୨୦୧୧ ଜାନୁଆରୀ ୨୫ ତାରିଖଠାରୁ 'ଜାତୀୟ ମତଦାତା ଦିବସ' ମଧ୍ୟ ପାଳନ କରାଯାଉଛି । ୧୯୫୧ ଅକ୍ଟୋବର ୨୫ ତାରିଖଠାରୁ ୧୯୫୨ ଫେବୃଆରୀ ୨୧ ତାରିଖ ମଧ୍ୟରେ ପ୍ରଥମ ନିର୍ବାଚନ କରାଯାଇଥିଲା । ନାଗରିକମାନଙ୍କୁ ସାଧାରଣ ନିର୍ବାଚନରେ ଅଂଶ ଗ୍ରହଣ କରାଇବା ସବୁଠାରୁ ବଡ ଆହ୍ୱାନ ଥିଲା । ସମ୍ବିଧାନ ପ୍ରଣେତା ଭାରତରତ୍ନ ଭୀମରାଓ ବାବା ସାହେବ ଡ.ଆମ୍ବେଦକର ବହୁ ଅଧ୍ୟୟନ ଓ ଅନୁସନ୍ଧାନ ପରେ ଭାରତବର୍ଷ ପାଇଁ ଏକ ଲିଖିତ ବିଶ୍ୱର ବିଶାଳତମ ଆଇନ ଗ୍ରନ୍ଥ ରଚନା କଲେ । ଯାହାକୁ ସମ୍ବିଧାନ କୁହାଗଲା । ସୁଦୀର୍ଘ ୭୫ବର୍ଷ ଧରି ସମ୍ବିଧାନରେ ବହୁ ସଂଶୋଧନ ହୋଇଥିଲେ ହେଁ ଏହାର ମୌଳିକତା ଅକ୍ଷୁଣ୍ଣ ରହିଛି । ଯାହା ବିଶ୍ୱରେ ବିରଳ । ଜାତୀୟ ଅସ୍ମିତାକୁ ସ୍ଥିତ ରଖି ମେକ୍ ଇନ୍ ଇଣ୍ଡିଆ ଓ ଆତ୍ମନିର୍ଭର ଭାରତ ଗଠନ ଦିଗରେ ସାର୍ଥକ ପଦକ୍ଷେପ ଗ୍ରହଣ କରିବା ଜରୁରୀ । ସାମାଜିକ ନ୍ୟାୟ, ମାନବିକ ଅଧିକାର, ସାମାଜିକ ଗଣତନ୍ତ୍ର ଓ ଅର୍ଥନୈତିକ ଗଣତନ୍ତ୍ରର ମହାନ ପ୍ରବକ୍ତା ଥିଲେ ଆମ୍ବେଦକର । ତାଙ୍କର ବଳିଷ୍ଠ ପ୍ରଭାବରେ ଭାରତୀୟ ଗଣତନ୍ତ୍ର ବିଶ୍ୱର ଭୂସ୍ୱର୍ଗରେ ପରିଣତ । ଭାରତୀୟ ସମ୍ବିଧାନର ପ୍ରମୁଖ ଦାୟିତ୍ୱ ସେ ଜନତାଙ୍କ ଉପରେ ଛାଡି ଦେଇଥିଲେ । ସାମ୍ୟବାଦ ଓ ସମାଜବାଦ ବ୍ୟବସ୍ଥାର ସେ ଥିଲେ ଜନକ । ଏକ ଲୋକତାନ୍ତ୍ରିକ ସମାଜରେ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଅଧିକାର ପ୍ରତ୍ୟେକ ମନୁଷ୍ୟର ଜନ୍ମଗତ ଅଧିକାର । ସଂସଦୀୟ ପ୍ରଜାତନ୍ତ୍ରକୁ ଗୁରୁତ୍ୱ ଦେଇ ସେ ସମ୍ବିଧାନକୁ ଜୀବନ ଓ ଜୀବିକାର ମୂଳମନ୍ତ୍ର କରି ଗଢତୋଳିଥିଲେ । ଦଳିତ, ଅବହେଳିତ, ଅଶିକ୍ଷିତ ସମାଜକୁ ଶିକ୍ଷା କ୍ଷେତ୍ରରେ ଓ ନିଯୁକ୍ତି କ୍ଷେତ୍ରରେ ଅଗ୍ରାଧିକାର ଦେବା ପାଇଁ ସଂରକ୍ଷଣ ବ୍ୟବସ୍ଥା କରିଯାଇଛନ୍ତି ।

ଏ ସେଇ ଦେଶ ଯେଉଁ ଦେଶର ରାଜପୁତ୍ର ଗୌତମ ବୁଦ୍ଧ ରାଜା ଅପେକ୍ଷା ସନ୍ୟାସୀ ଜୀବନକୁ ଅଧିକ ପସନ୍ଦ କରିଥିଲେ । ଯେଉଁ ଦେଶେର ଋଷି ଦୁର୍ବାସା ନିଜର ଅସ୍ଥି ବିସର୍ଜନ କରି ବିଶ୍ୱର ମଙ୍ଗଳ କାମନା କରିଥିଲେ । ଯେଉଁ ଦେଶର ରାଜା ଐତିହ୍ୟର ରଥଯାତ୍ରାରେ ଝାଡୁଦାର ହେବାକୁ ଜୀବନର ଶ୍ରେୟ ମଣିଥାନ୍ତି । ଏଇ ସେହି ଦେଶ ସ୍ୱାଧୀନତାକୁ କାହାର ଦୟା ଉପରେ ନିର୍ଭର କରି ଅଧିକାର ଉପଭୋଗ କରିବାକୁ ଚାହେଁ ନାହିଁ । ଏଇ ସେଇ ଦେଶ ଯେଉଁଠି ବିଶ୍ୱାସର ରାଜତ୍ୱ ଭରସାର ଆତ୍ମୀୟତା ବିଚାରର ବ୍ୟକ୍ତିତ୍ୱ, ବିବେକର ମାନବତ୍ୱ ଓ ଆଇନର ବିଶେଷତ୍ୱ ଯୁଗଯୁଗ ଧରି ଚାଲିଛି । ସମ୍ବିଧାନର ଶ୍ୱାସତନ୍ତ୍ରୀରେ କେବଳ ଜନତା ଜନାର୍ଦ୍ଦନ ପ୍ରତିଧ୍ୱନିତ ହେଉଛି । ବିଶ୍ୱ ଇତିହାସର ସ୍ୱର୍ଣ୍ଣ ପୃଷ୍ଠା ଯେଉଁଠି ଗଣତନ୍ତ୍ରର ଐଶ୍ୱର୍ଯ୍ୟ ଡାକେ । ସମ୍ବିଧାନର ସୁବର୍ଣ୍ଣ ମୁଖଶାଳା ନିକଟରେ ମାନବ ସଭ୍ୟତାର ବୈଭବମୟ ଇତିହାସ ହସ ଖୁସିରେ ଲୁଚକାଳି ଖେଳେ । ବିଶ୍ୱର ସମସ୍ତ ବ୍ୟକ୍ତିତ୍ୱ ନେତୃତ୍ୱ ଲାଜରେ ଝାଉଁଳି ଯାଏ । ଇଏ ସେଇ ଭାରତୀୟ ଗଣତନ୍ତ୍ର । ସମ୍ବିଧାନର ନୀତି ଓ ଆଦର୍ଶ ଯାହାର ମୂଳଭିତ୍ତି ଓ ଭାରତୀ ।

ବିଶ୍ୱ ଇତିହାସରେ ଭାରତବର୍ଷ ଏପରି ଏକ ଗଣତାନ୍ତ୍ରିକ ଦେଶ ଯାହାର କ୍ରାନ୍ତି ଓ ଶାନ୍ତି ଇତିହାସ । ବିଶ୍ୱମୈତ୍ରୀ ଓ ସ୍ୱଦେଶ ପ୍ରୀତି ଭାରତ ମାତାର ସ୍ୱତନ୍ତ୍ର ପରିଚୟ, ମାଟି ଓ ମଣିଷର ସେବା ଯାହାର ଜାତୀୟତାର ଆଗ୍ନେୟ ଶପଥ । 'ବସୁଧୈବ କୁଟୁମ୍ବକମ୍' ଯା'ର ଦିଶା ଓ ଦିଗନ୍ତରେ ଡେଣା ଝାଡେ ଶାନ୍ତିର କପୋତ । ଦେଶର ସମ୍ବିଧାନ କେବଳ ଶାସନର ଶ୍ରୀ ଧାରାକୁ ନିୟନ୍ତ୍ରଣ କରେ ନାହିଁ । ଏ ଦେଶର ଅଭିବୃଦ୍ଧିରେ ମଧ୍ୟ ବିଶେଷ ଭାବରେ ସହାୟକ ହୋଇଥାଏ । ଏଇ ଲେଖକଙ୍କ ଭାଷାରେ – ଯା' ବୁକୁରେ ସମୃଦ୍ଧି ସଂସ୍କୃତିର ଫୁଲଫୁଟେ । ହସ ଛୁଟେ ରସର ଝରଣା । ତା' ଛାତିରେ ଗଦ୍ୟରେ ବି ଜହ୍ନ ଲୋଟେ ।

ଆକାଶ ବି ହୁଏ ବାଟବଣା । ମୁଁ ଦେଖିଛି ଭାରତର ନୂଆ ଇତିହାସ । ଯା' ଦେହରୁ ଝରେ ଖାଲି ସୃଜନର ରସ । ଏଇ ସେଇ ସୁନାର ଭାରତବର୍ଷ । ସମଗ୍ର ଦେଶରେ ଗଣତନ୍ତ୍ର ଦିବସର ଉତ୍ସାହ ଭରି ରହିଛି । ନିଜ ପାଇଁ ଏବଂ ସମାଜ ପାଇଁ ନୂତନ ସମ୍ଭାବନା ଓ ଇଚ୍ଛା ଶକ୍ତି ବୃଦ୍ଧି ପାଇଛି । ବ୍ୟକ୍ତି ଓ ବ୍ୟକ୍ତିତ୍ୱର ସାମର୍ଥ୍ୟ ଉପରେ ବିଶାସ ବୃଦ୍ଧି ହୋଇଛି । ଭାରତ ପ୍ରତ୍ୟେକ କ୍ଷେତ୍ରରେ ଉତ୍କର୍ଷ କରିବାକୁ ଯଥାସାଧ୍ୟ ଚେଷ୍ଟା କରୁଛି । ବ୍ୟକ୍ତି ମର୍ଯ୍ୟାଦାର ସୁରକ୍ଷା ସହ ଜାତୀୟ ଐକ୍ୟ, ସଂହତି, ସୌହାର୍ଦ୍ଦ୍ୟ, ସଦ୍‌ଭାବନା ଓ ସହଯୋଗ ରକ୍ଷାକରି ସମୃଦ୍ଧ ଓ ସଶକ୍ତ ଦେଶ ଗଠନ ଦିଗରେ ଉଦ୍ୟମ କରିବା ଉଚିତ । ରାଜନୀତିକୁ ସ୍ୱଚ୍ଛ, ନିର୍ମଳ ଓ ଗଣତନ୍ତ୍ରକୁ ସୁଦୃଢ଼ କରିବା ପାଇଁ ସବୁ ରାଜନୈତିକ ଦଳର ଇଚ୍ଛାଶକ୍ତିର ଆବଶ୍ୟକତା ରହିଛି । ଡଃ. ଆମ୍ବେଦକରଙ୍କର ମତରେ ନାଗରିକ ସଚେତନତା ସମ୍ବିଧାନର ରକ୍ଷାକବଚ । ପ୍ରତ୍ୟେକ ନାଗରିକ ହିଁ ଭାରତର ସାର୍ବଭୌମ ଅଧିକାର ଓ ସମ୍ବିଧାନର ସମସ୍ତ କ୍ଷମତା ନାଗରିକମାନଙ୍କଠାରୁ ହିଁ ଆସିଛି ।

ସାମ୍ପ୍ରତିକ ପରିସ୍ଥିତିରେ ଜନପ୍ରତିନିଧିମାନେ ସମ୍ବିଧାନକୁ ସମ୍ମାନ ଜଣାଇ କାର୍ଯ୍ୟ ସମ୍ପାଦନ କଲେ ଗାନ୍ଧିଜୀଙ୍କ ସ୍ୱପ୍ନର ରାମରାଜ୍ୟ ସମ୍ଭବ ହୋଇପାରିବ । ଏଠି ଶିଳ୍ପୀର ନିହାଣ ମୁନରେ ପଣ ଓ ପ୍ରତିଶ୍ରୁତିର ପଦ୍ୟାବଳୀ ଲେଖା ହୁଏ । ନିଦା ପଥର ଛାତିରେ ଆଶା ଆଶ୍ୱାସନାର ମଙ୍ଗଳଧ୍ୱନି ଉଚ୍ଚାରିତ ହୁଏ । ତାଳପତ୍ର ଲେଖନୀରେ ଏ ଜାତିର ପାଣ୍ଡୁଲିପି ଓ ସ୍ୱାଭିମାନ ଗଢ଼ା ହୁଏ । ଯାହା ଇତିହାସରେ କାଳ କାଳ ଧରି ବଞ୍ଚିରହେ । ନେତାଜୀଙ୍କ ନାରା ଜୟ ହିନ୍ଦ୍, ବଙ୍କିମ ଚନ୍ଦ୍ର ଚଟୋପାଧ୍ୟାୟଙ୍କ ବନ୍ଦେ ମାତରମ୍, ଭଗତ ସିଂଙ୍କ ସ୍ଲୋଗାନ୍ ଇନ୍‌କିଲାବ ଜିନ୍ଦାବାଦ, ବାଲ୍ ଗଙ୍ଗାଧର ତିଲକଙ୍କ ସ୍ୱରାଜ ମୋର ଜନ୍ମଗତ ଅଧିକାର, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ନାଁ କର, ଗାନ୍ଧିଜୀଙ୍କର କର ବା ମର, ପଣ୍ଡିତ ମଦନ ମୋହନ ମାଳବ୍ୟଙ୍କ ସମ୍ବୋଧନ ସତ୍ୟମେବ ଜୟତେ, ଯାହା ଆମ ଦେଶକୁ ଯୁଗେ ଯୁଗେ ସମୃଦ୍ଧ ଓ ଉଦ୍‌ବୁଦ୍ଧ କରୁଛି । ଗଣତନ୍ତ୍ର ଭାରତର ରାଷ୍ଟ୍ର ଧର୍ମ ଓ ଜୀବେ ଦୟା ରାଷ୍ଟ୍ରର ସଫଳ ସୋପାନ । ଗୁପ୍ତ ଯୁଗର ସୁବର୍ଣ୍ଣ ସକାଳ ଆଜି ପୁଣି ପ୍ରଭାବିତ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଆମେ ଗଣତନ୍ତ୍ର ଶାସନର ସଫଳତା ପାଇ ସାରିଲୁଣି ଏବଂ ପ୍ରାଚୀନ ଭାରତର ସୁଶାସନକୁ ସ୍ମରଣ କରି ଆଜିର ନାଗରିକ ଯେତିକି ସଜାଗ ହେବ ଗଣତନ୍ତ୍ରର ସୁଶାସନ ସେତିକି ତିଷ୍ଠି ରହିବ । ସ୍ୱାଧୀନତା ପରେ ଦେଶର ଭାଗ୍ୟ ଓ ଭୂଗୋଳ ବଦଳିଛି । ଭାଗ୍ୟ ଓ ଭବିଷ୍ୟତର ସୁନେଲି କ୍ଷେତରେ ବଂଚିବାର ନୂଆ ନୂଆ ନକ୍ସାର ଚିତ୍ର ଓ ଚରିତ୍ର ହସୁଛି । ସୁଖ ସମୃଦ୍ଧିର ଅଭିଲେଖ ଜୀବନଲିପିର ମୃଦୁ କମ୍ପନ ଆଣିଛି ।

ଏଇ ସେଇ ଭାରତବର୍ଷ ଏଠି ଜୀବନ ଜିଇଁବାର କଳା ନିଆରା । ବର୍ତ୍ତମାନ ଭାରତ ବିଶ୍ୱର ଦିଗ୍‌ଦର୍ଶକ ଓ ପଥ ପ୍ରଦର୍ଶକ ଭାବେ ଉଭା ହୋଇଛି । ଶେଷରେ ବ୍ୟବସ୍ଥାପିକା, କାର୍ଯ୍ୟପାଳିକା, ନ୍ୟାୟପାଳିକା ଓ ଗଣମାଧ୍ୟମ ମଧ୍ୟରେ ସମନ୍ୱୟ ରହିଲେ ଗଣତନ୍ତ୍ର ଓ ସମ୍ବିଧାନର ମର୍ଯ୍ୟାଦା ଅକ୍ଷୁଣ୍ଣ ରହିପାରିବ । ଏହି ଚାରିସ୍ତମ୍ଭ ନିଜ ପରିଧି ଭିତରେ କାର୍ଯ୍ୟ ସମ୍ପାଦନ କଲେ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ଗଣତନ୍ତ୍ର ତିଷ୍ଠି ରହିବ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ



# ମୁକ୍ତିସଂଗ୍ରାମୀଙ୍କ ଲୋମଟାଙ୍କୁରା କାହାଣୀ

**ମିଶ୍ର ମହାପୁରୁ**

'ଅନ୍ଧଦିଗନ୍ତ' ଉପନ୍ୟାସର 'ନିଧି ଦାସ' କେବଳ ଏକ କାଳ୍ପନିକ ଚରିତ୍ର ନୁହଁନ୍ତି । 'ନିଧି ଦାସ'ଙ୍କ ପରି ଭାରତୀୟ ସ୍ୱାଧୀନତା ସଂଗ୍ରାମ ଯୁଗର ବହୁ ଅଗ୍ନିକଣା ନୀରବରେ ଲୋକଲୋଚନ ଅନ୍ତରାଳରେ ନିର୍ବାପିତ ହୋଇଯାଇଛନ୍ତି । ଖୋରଧା ଜିଲା ଅନ୍ତର୍ଗତ ବାଜପୁର ଗ୍ରାମର ପଣ୍ଡିତ ନାରାୟଣ ମିଶ୍ର ଥିଲେ ସେହିପରି ଗୋଟିଏ ଚରିତ୍ର... ତାଙ୍କର ଉଦ୍ଦେଶ୍ୟ ଥିଲା ଫଳାକାଂକ୍ଷାହୀନ କର୍ମ ତପସ୍ୟା ।

ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ପାଠପଢ଼ା, ପରିବାର, ସୁଖ ସ୍ୱାଚ୍ଛନ୍ଦ୍ୟ ଆଦି ପରିତ୍ୟାଗ କରି ଗତିଧାରାରେ ସମ୍ପୂର୍ଣ୍ଣ ପୂର୍ଣ୍ଣଚ୍ଛେଦ ଟାଣି ବାନରସେନାରେ ସାମିଲ ହୋଇଥିଲେ ମୁକ୍ତିସଂଗ୍ରାମୀ ପଣ୍ଡିତ ମିଶ୍ର । ପ୍ରବଳ ପ୍ରତାପୀ ବ୍ରିଟିଶ ଶାସକ ନିଃଶେଷ କରି ଦେଇଥାଏ ଭାରତୀୟ ଜନଜୀବନକୁ । ଅନ୍ୟାୟ, ଅତ୍ୟାଚାର, ଶୋଷଣ ସୀମା ଲଙ୍ଘନ କରିଥାଏ । କହିବାକୁ ଗଲେ, ନିର୍ବାଣ ଦୀପଶିଖା ଜଳି ଉଠୁଥାଏ । ସେଥିରେ ପୂର୍ଣ୍ଣଚ୍ଛେଦ ଟାଣିବା ସହ ଏକ ସୁସ୍ଥ, ସୁନ୍ଦର, ବୃହତ୍ତର ସ୍ୱାଧୀନ ଜୀବନର ଶିଳାନ୍ୟାସ କରିବାକୁ ଅଗ୍ରସର ହେଉଥାନ୍ତି ପଣ୍ଡିତ ମିଶ୍ର । ନବପ୍ରଭାତ ସହ ନୂତନ ଭାଷାର ଅରୁଣିମାକୁ ଅପେକ୍ଷା କରିଥାନ୍ତି ସଭିଏଁ । ଏ ଆଶା କ'ଣ ସତରେ ଫଳବତୀ ହେବ । ଏଥିନେଇ ଭାଳି ହେଉଥାନ୍ତି ପଣ୍ଡିତ ମିଶ୍ରଙ୍କ ସମେତ ସମସ୍ତ ବାନରସେନା । ଶରୀରରେ ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ଚଳାଇବାକୁ ହେବ ଏ ଅସହଯୋଗ ଆନ୍ଦୋଳନ । ତା'ପରେ ଜଣାପଡ଼ିବ, କେତେଦିନ ତିଷ୍ଠି ରହିବ ଏ ସାତଦରିଆ ତେର ନଈ ପାରି ହୋଇ ଆସିଥିବା ବେପାରୀ ଶାସକଦଳ ।

ଅସହଯୋଗ ଆନ୍ଦୋଳନର ନିଶା ସେତେବେଳେ ଘାରିଥାଏ ସମସ୍ତଙ୍କୁ । ରାତି ପାହିବା ପୂର୍ବରୁ ଯେପରି କଣାସ ନିକଟବର୍ତ୍ତୀ ଦୟାନଦୀ ନିକଟରେ ପହଞ୍ଚିବାକୁ ହେବ । ତା'ପରେ ସେହି କ୍ୟାମ୍ପ୍‌ରୁ ଆରମ୍ଭ ହେବ ଅସହଯୋଗ ଆନ୍ଦୋଳନର ନୂତନ ପର୍ଯ୍ୟାୟ । ଆହୁରି ଅନେକ ବାଟ ଚାଲିବାକୁ ଅଛି । ଆଖିରେ ଆଖିଏ ନିଦ ଅବଶ ହୋଇପଡ଼ିଲାଣି ଅଙ୍ଗପ୍ରତ୍ୟଙ୍ଗ । ଗୋଡ଼ ଖଣ୍ଡିଆ ହୋଇ ଛୁଟିଲାଣି ରକ୍ତଧାର । ରାତି ପାହି ଆସିଲାଣି । ଆରମ୍ଭ ହେଲାଣି ପ୍ରଭାତର ବିହଙ୍ଗ କାକଳୀ । ଖୁବ୍ ଦୂରରୁ ଦେଖାଯାଉଛି କଣାସର ନଦୀକୂଳ ବରଗଛ । ଅନେକ ଆକାଂକ୍ଷିତ ବଟବୃକ୍ଷ ସଭା କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତି । ଲାଠି, ବେଡ଼ିକୁ ଖାତିର ନାହିଁ । ରାତି ଅନିଦ୍ରା ହୋଇ ବହୁ ପଥ ଅତିକ୍ରମ କରି ଆସିଥିବା ୫ଜଣଙ୍କୁ ଦିଆଗଲା ପିକେଟିଂ ଦାୟିତ୍ୱ । ସେହି ନିଃସଙ୍ଗ ବାନର ସେନାର ସେନାପତିତ୍ୱ ଗ୍ରହଣ କରିଥାନ୍ତି ଦୀର୍ଘକାୟ, ସବଳ ବପୁବାନ, ତେଜସମ୍ପନ୍ନ ପଣ୍ଡିତ ମିଶ୍ର । ପିଲାଦିନିଆ କୌତୁକ 'ପଣ୍ଡିତ'ପଦରେ ଭୂଷିତ ହୋଇ ଭବିଷ୍ୟତରେ ନିଜର ଅଧ୍ୟବସାୟ, ଚିନ୍ତାଶୀଳତା ପରୋପକାର ଏବଂ ପ୍ରଗାଢ଼ ଆତ୍ମବିଶ୍ୱାସ ବଳରେ ସେ ସେହି କୌତୁକ ପ୍ରଦତ୍ତ ଉପାଧିର ସାର୍ଥକତା ପ୍ରମାଣ କରିବାକୁ ସକ୍ଷମ ହୋଇପାରିଥିଲେ ।

ଲକ୍ଷ୍ୟ ଥିଲା ପିକେଟିଂ । ଜାତୀୟ ସଙ୍ଗୀତ ଆବୃତ୍ତି ଏବଂ ହସ୍ତଶୋଭିତ ତ୍ରିରଙ୍ଗା ପତାକାର ଲହରୀଳ ନୃତ୍ୟ । ତା'ପରେ କର୍ତ୍ତବ୍ୟନିଷ୍ଠ ବ୍ରିଟିଶ ପୋଲିସ ଏବଂ ବାନରସେନା ଭିତରେ ବେଶ୍ ଉପଭୋଗ୍ୟ । ଖଣ୍ଡଯୁଦ୍ଧ ହାତରେ ବେଡ଼ି, ଅଣ୍ଟାରେ ଦଉଡ଼ି, କଣ୍ଠରେ ଜାତୀୟ ସଙ୍ଗୀତର ନିଃଶଙ୍କ ଆବୃତ୍ତି । ପତାକାଟା କିନ୍ତୁ ପୋଲିସ ବୁଟ୍ ତଳେ ଛିନ୍ନଭିନ୍ନ ହୋଇ ସୁଦ୍ଧା ଶୋଭା ପାଉଥିଲା । ପଣ୍ଡିତ ଶ୍ରୀ ମିଶ୍ରଙ୍କ ମସ୍ତକରେ ପୋଲିସ ଭ୍ୟାନରେ ଥାନାକୁ ଯାତ୍ରା ଓ ପରେ ପରେ ହାଜତ ଭିତରେ ଅକଥନୀୟ ଅତ୍ୟାଚାର । ବିଶାଳକାୟ ଲାଠି ଓ କୋରଡ଼ାରେ ପ୍ରହାର ସାଙ୍ଗକୁ ଅଭାଷା ଗାଳିଗୁଲଜ । ବିନା ଖାଦ୍ୟ ଓ ପାନୀୟରେ ଦିବସ ଏବଂ ରାତ୍ରିଯାପନ କରିବାକୁ ପଡୁଥିଲା । ତାଙ୍କୁ ବିନା ଦ୍ୱିଧା ଓ ବିନା ଆପତ୍ତିରେ ବରଂ ସେଥିରୁ ମିଳୁଥିଲା ଦେଶ ପ୍ରତି ଗଭୀର ଅନୁରକ୍ତି ତଥା ଜାତ ହେଉଥିଲା ଅଭେଦ୍ୟ ମମତା ଏବଂ ଅତୁଟ ସ୍ନେହ ବୋଲି କହୁଥିଲେ ପଣ୍ଡିତ ମିଶ୍ର ।

ଏହି ତପସ୍ୟାର ତପସ୍ୱୀ ପଣ୍ଡିତ ମିଶ୍ର ୧୯୧୫ ମସିହା ଡିସେମ୍ବର ୯ ତାରିଖରେ ଖୋରଧା ନିକଟବର୍ତ୍ତୀ ବାଜପୁର ଗ୍ରାମର ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମ ନେଇଥିଲେ ମାତ୍ର ୩ବର୍ଷ ବୟସରେ ପିତୃହରା ହୋଇଥିଲେ ସେ । କୈଶୋରର ରଙ୍ଗୀନ୍ ସ୍ୱପ୍ନରେ ବିଭୋର ହୋଇ ସେ ଥିଲେ ସେତେବେଳେ ଅଧ୍ୟୟନରତ । ପରେ ସେ ୧୯୨୨ ମସିହାରେ ପୁରୀ ଜିଲାର ସତ୍ୟବାଦୀସ୍ଥିତ ବକୁଳ ବନ ବିଦ୍ୟାଳୟରେ ଶିକ୍ଷାଗ୍ରହଣ ପାଇଁ ମନସ୍ଥ କରି ସେଠାକୁ ଚାଲିଯାଇଥିଲେ । ପ୍ରଥମ ଥର ପାଇଁ ସେଠାରେ ପଞ୍ଚସଖା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ ଓ କୃପାସିନ୍ଧୁ ମିଶ୍ର ପ୍ରମୁଖଙ୍କ ଭଳି ମହାପୁରୁଷଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । ବକୁଳ ବନ ବିଦ୍ୟାଳୟରେ ଶିକ୍ଷାଗ୍ରହଣ କାଳରେ ଦେଶପ୍ରେମର ମହାମନ୍ତ୍ରରେ ସେ ଉଦଭାସିତ ହୋଇ ୧୯୩୦ ମସିହାରେ ଅଧ୍ୟୟନକୁ ଜଳାଞ୍ଜଳି ଦେଇ ସେହି ସମୟରୁ ଦେଶସେବାରେ ନିଜକୁ ନିୟୋଜିତ କରି ଦେଶର ସ୍ୱାଧୀନତା ସଂଗ୍ରାମରେ ସମ୍ପୂର୍ଣ୍ଣ ରୂପେ ସାମିଲ ହୋଇଥିଲେ । ଇତ୍ୟବସରରେ ତାଙ୍କର ମାତା କନ୍ୟା ଦୁଇଟିଙ୍କୁ ସାମାନ୍ୟ ଭୂସମ୍ପତ୍ତି ବିକ୍ରୟ କରି ବିବାହ ଦେଇଥିଲେ । ଦୈନ୍ୟ, ଦୁର୍ବିସହଗ୍ରସ୍ତ ପରିବାର ତଥା ଜନ୍ମଦାତ୍ରୀ ମା'ଙ୍କ ଏପରି ଦୟନୀୟ ଅବସ୍ଥା ସତ୍ତ୍ୱେ ବି ସେ ଦେଶସେବାକୁ ଜୀବନର ବ୍ରତ ରୂପେ ଗ୍ରହଣ କରି ଗୃହତ୍ୟାଗୀ ହେବାକୁ ନିଷ୍ପତ୍ତି ନେଇଥିଲେ । ଏହି ସମୟରେ ହିଁ ଗାନ୍ଧିଜୀଙ୍କ ମୋହନ ମନ୍ତ୍ରରେ ଦୀକ୍ଷିତ ହୋଇ ସେ ଲମ୍ଫ ଦେଇଥିଲେ । ଉକ୍ତ ଜାତୀୟ ଆନ୍ଦୋଳନରେ ନିଜର ଭବିଷ୍ୟତ, ପରିବାର ତଥା ଅଧ୍ୟୟନ ଆଦି ସବୁକୁ ତୁଚ୍ଛ କରିଦେଇ ଏକମାତ୍ର ସ୍ୱାଧୀନତା ଆନ୍ଦୋଳନରେ ସମ୍ପୂର୍ଣ୍ଣ ଝାସ ଦେଇଥିଲେ ସେ । ନିଜର ଅଧ୍ୟବସାୟ, ଆତ୍ମପ୍ରଚେଷ୍ଟା ଏବଂ କର୍ମପ୍ରବଣତା ବଳରେ ସେ ଏକାଧାରରେ ହୋଇପାରିଥିଲେ କବି, ପଣ୍ଡିତ ଓ ବିଦ୍ୱାନ । 'ଚିଲିକା ଦର୍ଶନ', 'ଭୋଟର ଭାବନା', 'ପୁଣ୍ୟଶ୍ଲୋକ' ଏବଂ ଅପ୍ରକାଶିତ 'ଦଶଦିଗ' ତାଙ୍କ କବିତ୍ୱର କୌମୁଦୀ ବହନ କରିଛି ।

ଜନ୍ମମାଟି ବାଜପୁରରେ ଏମ.ଇ ସ୍କୁଲ ଓ ହାଇସ୍କୁଲ ପ୍ରତିଷ୍ଠାରେ ସେ ନିଭାଇ ଥିଲେ ସକ୍ରିୟ ଭୂମିକା । ସେତେବେଳେ ଖୋରଧା ସହରରୁ ବାଜପୁରକୁ ନିତିଦିନିଆ ପାଦଚଲା ରାସ୍ତାଟିଏ ମଧ୍ୟ ନଥିଲା । ଏଥିଯୋଗୁଁ ଲୋକେ ଭୋଗୁଥିଲେ ଅସୁବିଧା । ପଣ୍ଡିତ ମିଶ୍ରଙ୍କ ନେତୃତ୍ୱରେ ତଥା ବାନରସେନା ସହାୟତାରେ ପ୍ରଥମେ ପାଦଚଲା ରାସ୍ତା ବାଜପୁରକୁ କରାଯାଇଥିଲା ।

ସେହିପରି ୧୯୩୧ ମସିହାରେ ଅନୁଷ୍ଠିତ 'ଲବଣ ସତ୍ୟାଗ୍ରହ'ରେ ପଣ୍ଡିତ ମିଶ୍ର ସାମିଲ ହୋଇ ଲୁଣ ମାରିବାକୁ ଯାଇଥିବାବେଳେ ଇଂରେଜ ସରକାରଙ୍କ ଅକଥନୀୟ ଅତ୍ୟାଚାରର ଶିକାର ହୋଇଥିଲେ । ତତଲା ବାଲିରେ ସ୍ଲେଜ ଗାଡ଼ି ଭଳି ଘୋଷରା ଖାଇବାକୁ ପଡ଼ିଥିଲା । ତାଙ୍କୁ ମଝିରେ ମଝିରେ ଦିଆଯାଉଥିଲା ବିଶାଳକାୟ ଲାଠି ଓ କୋରଡ଼ାରେ ପ୍ରହାର । ପିଇବାକୁ ପାଣି ମାଗିଲେ ଦିଆଯାଉଥିଲା ପରିଶ୍ରା । ଖାଦ୍ୟ ମାଗିବାର ପ୍ରଶ୍ନ ଉଠୁନାହିଁ । ପୁଲିସ ଭ୍ୟାନରେ ଆଳୁବସ୍ତା ପରି ଭର୍ତ୍ତି କରି ପ୍ୟାକ୍ କରି ଦିଆଯାଉଥିଲା ଭ୍ୟାନ୍‌ରେ । ପରେ ଭ୍ୟାନ ଛୁଟୁଥିଲା ପୁରୀ ଆଡ଼କୁ । ପୁରୀ ପୋଲିସ ହାଜତରେ ବିନା ଖାଦ୍ୟ ଓ ପାନୀୟରେ ରହିବାକୁ ପଡ଼ିଲା ପଣ୍ଡିତ ମିଶ୍ରଙ୍କୁ ସପ୍ତାହକ ପର୍ଯ୍ୟନ୍ତ । ୧୯୩୦ ନଭେମ୍ବର ୧୬ରେ ସେ ପ୍ରଥମେ କଟକ

ଓ ପାଟଣା କ୍ୟାମ୍ପ୍ ଜେଲ୍‌ରେ ବନ୍ଦୀଜୀବନ ବିତାଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ପୁରୀ ଏବଂ ବଙ୍ଗଳାଦେଶର ଯଶୋହର ଜଲ୍ଲା କାରାଗାରରେ ଛଅମାସ ଲେଖାଏଁ ବନ୍ଦୀଜୀବନ ବିତାଇଥିଲେ । ଏହି ସମୟରେ ତାଙ୍କର ପ୍ରଧାନ ସହଯୋଗୀ ଥିଲେ ତାଙ୍କର ସଙ୍ଗାତ ସ୍ୱର୍ଗତଃ ବାନାମ୍ବର ପଟ୍ଟନାୟକ । ଆଇନ ଅମାନ୍ୟ ଆନ୍ଦୋଳନରେ ଅଂଶଗ୍ରହଣ କରି ପିକେଟିଂ କରୁଥିବାବେଳେ ଉଭୟଙ୍କୁ ବ୍ରିଟିଶ ପୁଲିସ ତତଲା ବାଲିରେ ଘୋଷାରି ଘୋଷାରି ନେବା ସହ ଅକଥନୀୟ ବେତ୍ରାଘାତ ଓ ବୁଟ୍‌ମାଡ଼ କରିଥିଲା । ପରେ ବାନାମ୍ବର ବ୍ରିଟିଶ ପୁଲିସର ଗୁଳିମାଡ଼ରେ ପ୍ରାଣ ହରାଇ ସହିଦ୍ ହୋଇଥିବାବେଳେ ନାରାୟଣ ଗୁରୁତର ହୋଇଥିଲେ । ଦେଶର ସ୍ୱାଧୀନତା ପରେ ଘରକୁ ଫେରି ବୃଦ୍ଧାମାତା ଏବଂ ରୁଗ୍‌ଣା ପତ୍ନୀଙ୍କ ସହ ଜରାଜୀର୍ଣ୍ଣ ବାସଗୃହ 'ସ୍ୱାଧୀନତା ସଂଗ୍ରାମ ସୈନିକ ସଦନ'କୁ ଦେଖି ବିଚଳିତ ହୋଇପଡ଼ିଥିଲେ । ଏହାଛଡ଼ା ସମ୍ବଳଶୂନ୍ୟ ହୋଇଥିବାରୁ ସକ୍ରିୟ ଆନ୍ଦୋଳନରୁ ଓହରି ଆସି ପରିବାର ପ୍ରତିପୋଷଣ ପାଇଁ ନାରାୟଣ ବିଭିନ୍ନ ପନ୍ଥା ଅବଲମ୍ବନ କରିଥିଲେ । ସରକାରଙ୍କ ଆଦିବାସୀ ଏବଂ ଗ୍ରାମମଙ୍ଗଳ ବିଭାଗରେ କିଛିଦିନ ସାମାଜିକ କର୍ମୀ ରହିବା ପରେ ସରକାରୀ ଚାକିରିରୁ ବିଦାୟ ନେଇ ଦି.ସିଟି ବୁକ୍ ଡିପୋ ଓ 'ନବଜୀବନ' ପ୍ରେସ୍‌ରେ ପ୍ରୁଫ୍ ରିଡ଼ର ଭାବେ କାର୍ଯ୍ୟ କରିଥିଲେ । ସେହି ସମୟରେ ପ୍ରଖ୍ୟାତ କବି ଡ଼.ମାୟାଧର ମାନସିଂହଙ୍କ ଅଧିନାୟକତ୍ୱରେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ ସଂକଳିତ ହେଉଥାଏ କଟକର ବର୍ଦ୍ଧମାନ କୋଠି (ବର୍ତ୍ତମାନର ମଧୁସୂଦନ ଆଇନ ମହାବିଦ୍ୟାଳୟ) ପରିସରରେ । ଏହି କାର୍ଯ୍ୟ ହେଉଥିବାରୁ ସେଠାରେ ନାରାୟଣ ଅସ୍ଥାୟୀ ନକଲ ନବିସ ଭାବେ ଯୋଗ ଦେଇଥିଲେ । ତେବେ କୌଣସି ଜାଗାରେ ଦୀର୍ଘଦିନ କାମ କରିବା ତାଙ୍କ ପକ୍ଷେ ଅସମ୍ଭବ ହୋଇପଡୁଥିଲା ।

ଅନ୍ୟପକ୍ଷରେ ଦୀର୍ଘଦିନର କାରାବାସ ହେତୁ ଖାଦ୍ୟପାନୀୟରେ ଚରମ ବିଶୃଙ୍ଖଳା ଯୋଗୁଁ ନାରାୟଣ କ୍ରମେ ରୁଗ୍‌ଣ ହୋଇପଡ଼ିଥିଲେ । ପେଟମରା ରୋଗରେ ଆକ୍ରାନ୍ତ ହୋଇ କିଛିଦିନ ଶଯ୍ୟାଶାୟୀ ରହିବା ପରେ କଟକସ୍ଥିତ ମେଡ଼ିକାଲ କଲେଜ ହାସ୍‌ପାତାଳରେ ତାଙ୍କ ପେଟରେ ଅସ୍ତ୍ରୋପଚାର କରାଯାଇଥିଲା । ଫଳରେ ପେଟମରା ରୋଗ ଭଲ ହେଲା ସତ ମାତ୍ର ତାଙ୍କ ପାଖରେ ମହାବ୍ୟାଧି ଶ୍ୱାସର ଆବିର୍ଭାବ ଘଟିଲା । ଜୀବନର ଅବଶିଷ୍ଟ ସମୟ ବ୍ୟାଧିଗ୍ରସ୍ତ ହୋଇ ଚରମ ଦାରିଦ୍ର୍ୟସହ ସଂଗ୍ରାମ ଚଳାଇଥିଲେ । ପରେ ସାହିତ୍ୟ ସାଧନାରେ ସେ ମଧ୍ୟ ମନୋନିବେଶ କରିଥିଲେ । କବିବର ରାଧାନାଥ ରାୟଙ୍କ 'ଚିଲିକା' କାବ୍ୟର ଅଯଥା କଳ୍ପନା ବିଳାସକୁ ସମାଲୋଚନା କରି 'ଚିଲିକା ଦର୍ଶନ', 'ଭୋଟର ଭାବନା' ଓ 'ପୁଣ୍ୟଶ୍ଳୋକ' ଆଦି କବିତା ପୁସ୍ତକ ସେ ରଚନା କରିବା ସହ ପ୍ରକାଶ କରିଛନ୍ତି । ଅପ୍ରକାଶିତ 'ଦଶଦିଗ' ପାଣ୍ଡୁଲିପି ଅବସ୍ଥାରେ ରହିଛି । ଦେଶର ଅର୍ଦ୍ଧଶତାବ୍ଦୀର ଘଟଣା ପ୍ରବାହ ସହ ଓତପ୍ରୋତ ଭାବେ ଜଡ଼ିତ ରହି ଦେଶର ସ୍ୱାଧୀନତା ସଂଗ୍ରାମରେ ନିଜକୁ ଉତ୍ସର୍ଗ କରି ଦୁର୍ଲଭ ସ୍ୱାଧୀନତା ମିଳିବାର ଚମତ୍କାର ବର୍ଣ୍ଣନା ସେ ଏହି ପୁସ୍ତକଗୁଡ଼ିକରେ କରିଯାଇଛନ୍ତି । ଏକ ପକ୍ଷରେ ଚରମ ଦାରିଦ୍ର୍ୟ ଏବଂ ଅପରପକ୍ଷରେ ମହାବ୍ୟାଧି ଶ୍ୱାସ ସହ ସଂଘର୍ଷ କରି ଏହି ସ୍ୱଦେଶବତ୍ସଳଙ୍କ ଶେଷଜୀବନ ଅତିବାହିତ ହୋଇଥିଲା । ପରିଶେଷରେ ୧୯୬୮ ମସିହା ମଇ ୨ ତାରିଖ (ବୈଶାଖ ଶୁକ୍ଳପକ୍ଷ ପଞ୍ଚମୀ ତିଥି)ରେ କି.ଉଦୟଗିରିସ୍ଥିତ ଏମ.ଏମ.ସି ହାସ୍‌ପାତାଳରେ ଶ୍ୱାସ ରୋଗର ଉପଶମ ପାଇଁ କରାଯାଇଥିବା ଏକ ଅସ୍ତ୍ରୋପଚାରର ୮ ଘଣ୍ଟା ପରେ ସେ ଇହଲୀଳା ସମ୍ବରଣ କରିଥିଲେ । ମୃତ୍ୟୁଶଯ୍ୟା ନିକଟରେ ତାଙ୍କର ଧର୍ମପତ୍ନୀ ଲକ୍ଷ୍ମୀ ଦେବୀ କେବଳ ଉପସ୍ଥିତ ଥିଲେ ।

ଦେଶଜାତି ପାଇଁ ଲଢ଼ି ଶେଷରେ ରୋଗ ଯନ୍ତ୍ରଣାରେ ପ୍ରାଣତ୍ୟାଗ କରିଥିବା ପଣ୍ଡିତ ମିଶ୍ର ଅନ୍ୟମାନଙ୍କ ପାଇଁ ସତେଯେମିତି ପାଲଟିଛନ୍ତି ଆଦର୍ଶ ।

---

ଆବାହକ, ସଂଗ୍ରାମୀ ନାରାୟଣ ସ୍ମୃତି ପରିଷଦ
ଏଲ୍–୫୫, ବିଡ଼ିଏ କଲୋନୀ, ଖୋରଧା

# G-20 ସମ୍ମିଳନୀରେ
# ଗାନ୍ଧିଜୀଙ୍କ ଅହିଂସା ନୀତିର ଚର୍ଚ୍ଚା

ଡା. ପ୍ରମୋଦ ଚନ୍ଦ୍ର ପଟ୍ଟନାୟକ

ସେପ୍ଟେମ୍ବର ୯ ଓ ୧୦ତାରିଖରେ G-20 ସଦସ୍ୟଙ୍କର ବୈଠକ ବସିଲା ଦିଲ୍ଲୀର ଭାରତ ମଇଦାନରେ । G-20ର ବୈଠକରେ ବିଶ୍ୱର ପ୍ରମୁଖ ଦେଶଗୁଡିକର ସଦସ୍ୟଙ୍କ ବ୍ୟତୀତ ନେଦରଲ୍ୟାଣ୍ଡ, ଇଜିପ୍ଟ ଇତ୍ୟାଦି ୯ଟି ଦେଶର ନିମନ୍ତ୍ରିତ ସଦସ୍ୟ ଏଥିରେ ଯୋଗ ଦେଇଥିଲେ । ଏହି ସଭାର ମୂଖ୍ୟ ପ୍ରସଙ୍ଗ ଥିଲା – 'ଏକ ବିଶ୍ୱ, ଏକ ପରିବାର, ଏକ ଭବିଷ୍ୟତ – ବସୁଧୈବ କୁଟୁମ୍ବକମ୍' ।

ବୈଠକରେ ସନ୍ତ୍ରାସବାଦ ବା ଆତଙ୍କବାଦ ବିରୁଦ୍ଧରେ ମତୈକ ପ୍ରକାଶ ପାଇଲା । ଏ ବାବଦରେ ଆଲୋଚନା ଅବସରରେ ଗାନ୍ଧିଜୀଙ୍କ ଅହିଂସା ନୀତି ଚର୍ଚ୍ଚାକୁ ଆସିଲା ଏବଂ ଏହା ହିଁ ଆଜିର ଅତ୍ୟାବଶ୍ୟକ ନୀତି ବୋଲି ସମସ୍ତ ପ୍ରତିନିଧିଙ୍କର ମତ ଅନୁଭବ କରାଗଲା । ଅହିଂସା ଓ ଆଧ୍ୟାତ୍ମିକ ନୀତି ଅବଲମ୍ବନ ନିମନ୍ତେ ଗାନ୍ଧିଜୀଙ୍କ ବାଣୀ ଥିଲା ଅମୂଲ୍ୟ । ଆଧ୍ୟାତ୍ମିକ ଚେତାନା ଦିଗରେ ଗାନ୍ଧିଜୀ ବିଶଦ ଭାବରେ କହୁଥିଲେ, ସତ୍ୟ ହେଉଛି ମୋର ଧର୍ମ ଏବଂ ଅହିଂସା ହେଉଛି ମୋର ମାର୍ଗ ଦର୍ଶକା । ଗାନ୍ଧିଜୀଙ୍କ ମତରେ ଅହିଂସା ହେଉଛି ଏପରି ଏକ ଅସ୍ତ୍ର, ଯାହା ଅତ୍ୟନ୍ତ ନିଷ୍ଠୁର ବ୍ୟକ୍ତିକୁ ବି ତରଳାଇ ପାରିବ । ପୁନଶ୍ଚ ଗାନ୍ଧିଜୀଙ୍କ ବିଶ୍ୱାସ ଥିଲା ଯେ କେବଳ ନମ୍ର ସ୍ୱଭାବ ଦ୍ୱାରା ସତ୍ୟକୁ ଅନୁଭବ କରିବା ସମ୍ଭବ ହେବ, ଯେତେବେଳେ ବ୍ୟକ୍ତି ନିଜକୁ ଶୂନ ବୋଲି ଧରିନେବ । ଉଦାହରଣ ଦେଇ କହୁଥିଲେ, ଯଦି ଜଣେ ସତ୍‌ର ମହାସାଗରେ ପହଁରିବାକୁ ଚାହେଁ, ତେବେ ନିଜର ଓଜନକୁ ଶୂନରେ ପରିଣତ କରିଦେବାକୁ ହେବ । ପୁନଶ୍ଚ ଗାନ୍ଧିଜୀଙ୍କ ବିଚାରରେ, ସତ୍ୟକୁ ଅହିଂସାରୁ ବିଚ୍ଛିନ୍ନ କରିବା ଅସମ୍ଭବ । କାରଣ ଉଭୟ ଗୋଟିଏ ମୁଦ୍ରାର ଉଭୟ ପାର୍ଶ୍ୱ । ତାଙ୍କ ପାଇଁ ଥିଲା ସତ୍ୟ ଈଶ୍ୱର ଅହିଂସା ବି ଈଶ୍ୱର । ସେ କହୁଥିଲେ ଯେତେବେଳେ ମୁଁ ସତ୍ୟକୁ ଖୋଜିବାକୁ ଚେଷ୍ଟା କରିଛି, ଅହିଂସା କହେ ମୋ ଭିତରେ ତାକୁ ପାଇବ । ଆହୁରି ଅହିଂସାକୁ ଖୋଜିଲେ ସତ୍ୟ କହେ ମୋ ଭିତରେ ତାକୁ ଖୋଜ । ତେଣୁ ଗାନ୍ଧିଜୀଙ୍କ ମତରେ ଅହିଂସା ତାଙ୍କ ପାଇଁ କୌଣସି ରାଜନୈତିକ ବାଧ୍ୟବାଧକତା ନଥିଲା, ଥିଲା ଧାର୍ମିକ ନୀତି ତଥା ଜୀବନର ଆଧାର । ତାଙ୍କ ମତବାଦରେ ଏହା ଥିଲା ତାଙ୍କର ଜୀବନ ଦର୍ଶନ ଯାହା ଶରୀରର ପ୍ରତ୍ୟେକ ଜୀବକୋଷର କଣିକାକୁ ପ୍ରଭାବିତ କରିଥିଲା ।

ଈଶ୍ୱର ବିଶ୍ୱାସ ହିଁ ଅହିଂସାର ମୂଳ ମନ୍ତ୍ର ବୋଲି ଥିଲା ଗାନ୍ଧିଜୀଙ୍କ ବିଚାର । ପ୍ରେମର ସତ୍ୟତାରେ ହିଁ ଶାନ୍ତି ବିରାଜମାନ ହୁଏ ଏବଂ ଶାନ୍ତିର ବିରାଜମାନରେ ସତ୍‌ର ଆଭାଷ ବା ଈଶ୍ୱର ବିରାଜମାନ ହୁଅନ୍ତି । ପ୍ରେମ ଏପରି ଏକ ଶକ୍ତିଶାଳୀ ଅସ୍ତ୍ର, ଯାହା ମାନବର ଅନ୍ତରକୁ ପରିଷ୍କାର କରି ଉଚ୍ଚସ୍ତରକୁ ନେଇଥାଏ । ପୁନଶ୍ଚ ପ୍ରେମ ଏପରି ଏକ ଗୁଣ ଯାହା ମାଧ୍ୟମରେ ପ୍ରକାଶ ପାଏ ମହାନତା । ପ୍ରେମର ମହାନତା ଅତ୍ୟନ୍ତ ଉଚ୍ଚସ୍ତରର ଯାହା ମାଧ୍ୟମରେ ସହାନୁଭୂତି, କ୍ଷମା, ସହନଶୀଳତା ତଥା ଦୟା ଗୁଣଗୁଡିକ ପ୍ରକଟିତ ହୋଇଥାଏ । ପୁନଶ୍ଚ ପ୍ରେମରେ ଅନ୍ୟର ଅମଙ୍ଗଳ ଚିନ୍ତାର ସ୍ଥାନ ନାହିଁ । ଅନ୍ୟର ଅମଙ୍ଗଳ ଚିନ୍ତା ହିଁ କ୍ରୋଧର ଆଧାର

ଯଦ୍ୱାରା ମଣିଷ ହିଂସା ଓ ପ୍ରତିଶୋଧ ପରାୟଣ ଅଗ୍ନିରେ ନିଜେ ହିଁ ଛଟପଟ ହେବାକୁ ପଡ଼ିଥାଏ ।

ପ୍ରେମ ବାବଦରେ ଅନେକ ଲେଖା ବା କୁହାଯାଇଛି, ସେଥିପାଇଁ କିଛି କଷ୍ଟ କରିବାକୁ ପଡେନାହିଁ । ମାତ୍ର ତାକୁ ଅନୁପାଳନ କରିବା ଏତେ ସହଜ କାମ ନୁହଁ ବୋଲି ନିଜେ ମହାତ୍ମା ଗାନ୍ଧୀ କହିଛନ୍ତି । କାରଣ ଏହା ଏକ କଷ୍ଟକର ବ୍ୟାପାର ଯେ ଅତି ସହଜରେ ପ୍ରେମଟା ଘୃଣାରେ ପରିବର୍ତ୍ତନ ହୋଇଯାଇପାରେ । ପ୍ରେମର ପରିପକ୍ୱାଶ ଅତ୍ୟନ୍ତ କଷ୍ଟକର ହୋଇଯାଏ ଯେତେବେଳେ ଜଣକୁ କୁହାଯାଏ ତା'ର ଶତ୍ରୁକୁ ପ୍ରେମ କରିବା ପାଇଁ । ତେଣୁ ଗାନ୍ଧିଜୀ କହୁଥିଲେ, ଅହିଂସା କେବଳ ଜଣେ ଦୃଢ ଇଚ୍ଛା ଶକ୍ତି ବ୍ୟକ୍ତିଙ୍କ ନିମନ୍ତେ, ଦୁର୍ବଳ ଇଚ୍ଛାଶକ୍ତି ବ୍ୟକ୍ତିଙ୍କ ନିମନ୍ତେ ନୁହେଁ । କାରଣ ଅହିଂସାର ଅର୍ଥ ଚିନ୍ତା, ମନ, ବାକ୍ୟ ତଥା କର୍ମରେ ହିଂସାଶୂନ୍ୟ ପ୍ରକଟିତ ହେବା ଓ ବିରକ୍ତି ଭାବକୁ ନିୟନ୍ତ୍ରଣ କରିବା ଆବଶ୍ୟକ । ଏ ବାବଦରେ ଗାନ୍ଧିଜୀଙ୍କ ଜୀବନର ଏକ ଘଟଣା –

୧୯୦୯ ମସିହା । ଦକ୍ଷିଣ ଆଫ୍ରିକାର ଏକ ଜେଲ୍‌ରେ ଗାନ୍ଧିଜୀ ଶ୍ରମଯୁକ୍ତ ଜେଲଦଣ୍ଡ ଭୋଗୁଥିଲେ । ଜେଲ ଦଣ୍ଡାଦେଶ ଦେଇଥିଲେ ଜେନେରାଲ ସ୍ମଟ୍‌ସ । ଜେଲ୍‌ରେ ଥାଇ ଗାନ୍ଧିଜୀ ହଳେ ଚପଲ ପ୍ରସ୍ତୁତ କରି ସ୍ମଟ୍‌ସଙ୍କୁ ଦେଇଥିଲେ । ଏହାର ଅର୍ଥ ସ୍ମଟ୍‌ସଙ୍କ ପ୍ରତି ଗାନ୍ଧିଜୀଙ୍କର କୌଣସି ଶତ୍ରୁତା ଭାବ ନଥିଲା । ଗାନ୍ଧିଜୀ କହୁଥିଲେ ତାଙ୍କର ଯୁଦ୍ଧଥିଲା ରାଜନୈତିକ, କୌଣସି ବ୍ୟକ୍ତିବିଶେଷଙ୍କ ପ୍ରତି ନୁହେଁ । ୧୯୧୪ ମସିହା ଜୁଲାଇ ମାସରେ ଗାନ୍ଧିଜୀଙ୍କ ଦକ୍ଷିଣ ଆଫ୍ରିକାରୁ ବିଦାୟ ଅବସରରେ ଜେନେରାଲ ସ୍ମଟ୍‌ସ ଭବ୍ୟ ସମ୍ବର୍ଦ୍ଧନା ଦେବାବେଳେ କହିଲେ, ଆପଣ ଦେଇଥିବା ଚପଲ ହଳକ ସାଇତି ରଖିଛି । କାହିଁକି ଜାଣନ୍ତି ! ଆପଣ ଦେଇଥିବା ସେଇ ପଦାଙ୍କ ପାଇଁ ମୁଁ ଜମା ଯୋଗ୍ୟ ନୁହଁ ।

୬୭୮ –ଲକ୍ଷ୍ମୀସାଗର
ଭୁବନେଶ୍ୱର–୬



# ବରଗଡ଼ର ଐତିହାସିକ ଧନୁଯାତ୍ରା

**କୁଞ୍ଜବିହାରୀ ସାହୁ**

ଓଡ଼ିଶାର ବରଗଡ଼ ଜିଲ୍ଲାରେ ଅନୁଷ୍ଠିତ ହେଉଥିବା ବିଶ୍ୱର ସର୍ବଶ୍ରେଷ୍ଠ ମୁକ୍ତାକାଶ ରଙ୍ଗମଞ୍ଚ/ ଲୋକନାଟକ ହେଉଛି ଧନୁଯାତ୍ରା । ଲୋକନାଟକ ହିଁ ଲୋକମାନଙ୍କର, ଲୋକମାନଙ୍କ ପାଇଁ ଓ ଲୋକମାନଙ୍କ ଦ୍ୱାରା ପରିକଳ୍ପିତ ।



ଏ ଧନୁଯାତ୍ରାରେ ଅଭିନୟ କରୁଥିବା ଅଭିନେତ୍ରୀମାନେ ପଟୁତା ପ୍ରଦର୍ଶନ କରିଥାନ୍ତି । ସ୍ଥାନୀୟ କଳାକାରଙ୍କ ଦ୍ୱାରା ଏ ଧନୁଯାତ୍ରା ମଞ୍ଚସ୍ଥ ହୋଇଥାଏ ।

ସଦର ବରଗଡ଼ର ବିଭିନ୍ନ ସ୍ଥାନରେ ମଥୁରାନଗରୀ ପାଇଁ ମଞ୍ଚ ସଜ୍ଜା ହୋଇଥାଏ । କୁଶଳୀ କାରିଗରମାନେ ନିଜର କାରିଗରୀ ନୈପୁଣ୍ୟ ଦେଖାଇ ରାତିଦିନ ଏକ କରିଦିଅନ୍ତି ମଞ୍ଚ ସଜ୍ଜୀକରଣରେ । ସଦର ମହକୁମାଠୁଁ ଅନତି ଦୂରରେ ଅମ୍ବାପଲ୍ଲୀ ଗ୍ରାମ ଯାହା ଗୋପପୁରର ମର୍ଯ୍ୟାଦା ବହନ କରେ । ପ୍ରତ୍ୟେକ ଗୃହ ଗ୍ରାମୀଣ ସଂସ୍କୃତି ଓ ପରମ୍ପରାର କଥାକୁହେ । ଚିତ୍ରାୟିତ ହୋଇ ରଙ୍ଗୀନ ଆଲୋକମାଳାରେ ବିମ୍ବିତ ହୋଇଥାଏ । କୃଷ୍ଣଲୀଳାର ସମସ୍ତ କାର୍ଯ୍ୟକ୍ରମ ଚିହ୍ନିତ ସ୍ଥାନମାନଙ୍କରେ ଅନୁଷ୍ଠିତ ହୋଇଥାଏ । ଏ ସମୟରେ ଏଠାକାର ଅଧିବାସୀମାନେ ଗୋପପୁର ବା ନନ୍ଦ ଯଶୋଦାଙ୍କ ଅନୁଗାମୀ ହୋଇଥାନ୍ତି । ସଭିଙ୍କ ତୁଣ୍ଡରେ କୃଷ୍ଣ ବଳରାମଙ୍କର ଜୟଧ୍ୱନି ଅନୁରଣିତ ହୁଏ । ଏଗାରଦିନ ବ୍ୟାପୀ ଧନୁଯାତ୍ରାରେ ଗୋପପୁରର ମହିମା ପ୍ରକଟିତ ହୁଏ ଓ ଦେଖଣାହାରୀମାନେ ପ୍ରଭୁଙ୍କ ସାନ୍ନିଧ୍ୟ ପାଇ ଅତୀବ ଆନନ୍ଦିତ ହୁଅନ୍ତି ।

କଂସ ଭୂମିକାରେ ଅଭିନୟ ପାଇଁ କମିଟି ନିଷ୍ପତ୍ତି ନେଇଥାଏ । ମାତ୍ର ଅନ୍ୟାନ୍ୟ କଳାକାରମାନେ ପୂର୍ବ ନିର୍ଦ୍ଧାରିତ ଅନୁଯାୟୀ ଅଭିନୟ କରିଥାନ୍ତି । କୃଷ୍ଣ ବଳରାମର ଭୂମିକାରେ ଅଭିନୟ କରୁଥିବା ଦୁଇ ବାଳକ ଆବଶ୍ୟକତାନୁଯାୟୀ ପରିବର୍ତ୍ତିତ ହୁଅନ୍ତି ।

ମଥୁରାମଙ୍ଗଳ ଓ ହରିବଂଶ ପୁରାଣରୁ ଆନୀତ କଥନିକାରୁ ଏ ଧନୁଯାତ୍ରାର ଜନ୍ମ । ବରଗଡ଼ ସଦର ମହକୁମାରେ ଥିବା ରାମମନ୍ଦିର ହେଉଛି ଦେବକୀ ଓ ବସୁଦେବଙ୍କର ବିବାହ ମଣ୍ଡପ ଯୋଉଠି ପୌରାଣିକ ମତାନୁଯାୟୀ ବୈବାହିକ କାର୍ଯ୍ୟ ସମ୍ପନ୍ନ ହୁଏ ।

ବିବାହ ପରେ କଂସ ନିଜ ଭଉଣୀ ଦେବକୀ ଓ ବସୁଦେବଙ୍କୁ ନଗର ପରିକ୍ରମା କରାନ୍ତି । ଉଲ୍ଲସିତ ହୋଇ ନଗର ପରିକ୍ରମା ସମୟରେ ଶୂନ୍ୟବାଣୀ ହୁଏ ।

ରେ ରେ ଅସୁର କଂସ ଶୁଣ<br>
ତୁ ଜାଣୁ ଆପଣା ମରଣ ।

ତୁ ଯାହାର ବାହୁଅଛୁ ରଥ
ତୋତେ ମାରିବ ତା'ର ସୁତ
ଅଷ୍ଟମ ଗର୍ଭେ ଅବତରି
ମହୀ ରଖିବେ ତୋତେ ମାରି ।

ବୀତସ୍ପୃହ ହୋଇପଡ଼ନ୍ତି କଂସ । ନିଜ ଆସନ୍ନ ବିପଦ ଜାଣି ଭଉଣୀ ଓ ଭିଣୋଇଙ୍କୁ କାରାଗାରରେ ଅବସ୍ଥାପିତ କରିଛି । ସେହି କାରାଗାର ହେଉଛି ସଦର ବରଗଡ଼ର ସମଲେଶ୍ୱରୀ ମନ୍ଦିର ପ୍ରାଙ୍ଗଣ ।

ଅହଂକାରରେ ଅନ୍ଧ ହୋଇ ନିଜ ପିତା ଉଗ୍ରସେନଙ୍କୁ ରାଜ୍ୟର ସୀମା ପ୍ରହରୀ ରୂପେ ନିଯୁକ୍ତି ଦିଅନ୍ତି ଯେପରି ବନ୍ଦୀଶାଳରୁ କୌଣସି ଜନ୍ମିତ ଶିଶୁ ବହିରାଗତ ନ ହୁଏ ।

ରାଜଦରବାରରେ ମନ୍ତ୍ରୀ ପାରିଷଦବର୍ଗଙ୍କ ସହ ରାଜ୍ୟର ହାଲଚାଲ ବୁଝାଯାଏ । ନିମନ୍ତ୍ରିତ ଅତିଥି ଯେ କୌଣସି ପଦପଦବୀରେ ଥାଆନ୍ତୁ, ସେତେବେଳେ ସେମାନେ କଂସ ମହାରାଜଙ୍କର ଆନୁଗତ୍ୟ ଓ ମଥୁରାକଟକର ପ୍ରଜା । ରାଜଦରବାରରେ ଯଦି କୌଣସି ନିମନ୍ତ୍ରିତ ଅତିଥି କୃଷ୍ଣଙ୍କ ବିଷୟରେ ଆଲୋକପାତ କରନ୍ତି, ସିଂହାସନରେ ଅଧିଷ୍ଠିତ ମହାରାଜ ଆବଶ୍ୟକତାନୁଯାୟୀ କଠୋର ସମାଲୋଚନା ଏବଂ ଦଣ୍ଡବିଧାନ କରିଥାନ୍ତି । ଏ ଦଣ୍ଡବିଧାନରେ ଅତିଥି କିଂକର୍ତ୍ତବ୍ୟବିମୂଢ଼ ହୋଇ ପରୋକ୍ଷରେ ମହାରାଜଙ୍କର ମହିମାକୁ ବିକଶିତ କରାନ୍ତି । ଅତିଥିଙ୍କଠୁଁ ଲାଳିତ୍ୟଭରା ପ୍ରଶସ୍ତିଗାନ ଶୁଣିଲାପରେ ଅତିଥିଙ୍କୁ ସମ୍ମାନିତ କରିଥାନ୍ତି । କଂସ ମହାରାଜଙ୍କ ଦରବାରରେ ଦେବ ଦେବ ମହାଦେବ ଓ ସ୍ୱୟଂ ମହାରାଜଙ୍କ ପ୍ରଶସ୍ତି ଗାନ ବ୍ୟତିରେକ ଅନ୍ୟାନ୍ୟ ଦେବାଦେବୀଙ୍କ ମହିମା ପ୍ରକଟ କରିବା ଦଣ୍ଡନୀୟ ଅପରାଧ । ସେଥିପାଇଁ ତ ବରିଷ୍ଠ ଅଧିକାରୀ ଓ ରାଜନେତାମାନେ ରାଜଦରବାରରେ ଉପସ୍ଥିତ ଥିଲାବେଳେ ନିଜ କଥନଶୈଳୀକୁ ଗୁରୁତ୍ୱ ଦିଅନ୍ତି । ଯେପରିକି ମହାରାଜଙ୍କ ଶତ୍ରୁ ଶ୍ରୀକୃଷ୍ଣଙ୍କ ମହିମାଗାନ କରା ନଯାଏ । ଏଥିରୁ ପ୍ରତୀୟମାନ ହୁଏ ଯେ ମଥୁରା ନଗରୀରେ କେବଳ ମହାରାଜା କଂସଙ୍କର ରାଜୁତି ଚାଲିଥିଲା । ଅନ୍ୟାୟ, ଅନୀତିକୁ ସହ୍ୟ କରିନେଉଥିଲେ ପ୍ରଜାଗଣ । ଯିଏ ମହାରାଜାଙ୍କର ଚିର ବଇରୀ, ପ୍ରଜାମାନଙ୍କର ବି ସିଏ ଶତ୍ରୁ ଅଟେ ଏହା ଥିଲା ଧ୍ରୁବ ସତ୍ୟ । ଏକଦା ସେମିତି ଘଟଣାଟିଏ ଦେଖିଛି ଓ ଶୁଣିପାରିଛି କଂସ ମହାରାଜାଙ୍କର ଅପ୍ରତ୍ୟାଶିତ ପ୍ରଶ୍ନଟିଏ ନିମନ୍ତ୍ରିତ ଅତିଥିଙ୍କୁ ଉପସ୍ଥାପନା କଲାବେଳେ । ହଠାତ୍ ଅତିଥି ଜଣଙ୍କ ହତଚକିତ ହୋଇଗଲେ ଓ ଆକ୍ରୋଶମୂଳକ ବାକ୍ୟ ଶୁଣୁଶୁଣୁ ନିଜର କଥନିକା ବଦଳାଇ ଦେଇଥିଲେ । ଅନୁଭବ ଥିଲି ସତରେ ନିମନ୍ତ୍ରିତ ଅତିଥି ହେଉଛନ୍ତି କଂସ ମହାରାଜାଙ୍କର ବଶମ୍ବଦ ।

ସଦର ବରଗଡ଼ଠୁ ଅନତି ଦୂରରେ ଥିବା ଅମ୍ବାପଲ୍ଲୀ ଗ୍ରାମ ଗୋପପୁରର ଚିତ୍ର ମନ ଭିତରେ ଆଙ୍କିଦିଏ । ଶ୍ରୀକୃଷ୍ଣ ଓ ବଳରାମଙ୍କ ଗୋପଲୀଳା ଅଭିନୀତ ହୁଏ ପୌରାଣିକ କଥନିକାରେ । ପ୍ରତି ଘର ଅପୂର୍ବ ଓ ଲାବଣ୍ୟପୂର୍ଣ୍ଣ ସାଜସଜ୍ଜାରେ ବିଭୂଷିତ ହୋଇ କଳା ଐତିହ୍ୟର ବାର୍ତ୍ତା ଦେଇଯାଏ । ଗୋପପୁରର ପ୍ରତିଟି ସ୍ଥାନ ଉତ୍ସବମୁଖର । ନନ୍ଦରାଜା ଓ ଯଶୋଦାରାଣୀଙ୍କ ବାତ୍ସଲ୍ୟ ମମତା ବାରିହେଇପଡ଼େ ସହଜରେ । କେବଳ ଯେ ନନ୍ଦ–ଯଶୋଦା ଆମୋଦିତ, ପ୍ରମୋଦିତ, ପ୍ରଫୁଲ୍ଲିତ ହୋଇଥାନ୍ତି ତା ନୁହେଁ ଗ୍ରାମର ସମସ୍ତ ଅଧିବାସୀ ନିଜକୁ ଶ୍ରୀକୃଷ୍ଣ–ବଳରାମଙ୍କର ଭକ୍ତ ବୋଲି ଅନୁଭବ କରିଥାଆନ୍ତି । ବାସ୍ତବ ଶ୍ରୀକୃଷ୍ଣ, ବଳରାମ ଓ ସେମାନଙ୍କ ସାଥୀମାନଙ୍କର ଚିତ୍ତବିନୋଦିଆ ଲୀଳା–ଖେଳା ଗ୍ରାମ ପରିବେଶକୁ ଭକ୍ତି ରସାଣିତ କରିଦିଏ । ଯିଏ ଥରେ ଦେଖିଛି ସେ ହିଁ ଅନୁଭବ କରିପାରିଛି ସେତେବେଳର ଗୋପପୁରର ମାଧୁରିମା ।

ଅମ୍ବାପଲ୍ଲୀ ଗ୍ରାମର ଫକୀରାବନ୍ଧ କାଳିନ୍ଦୀ ହ୍ରଦର ପରିକଳ୍ପନା ନିଏ ଏବଂ କୃଷ୍ଣ ବଳରାମ ସ୍ୱକୀୟ ପ୍ରତିଭା ପ୍ରଦର୍ଶନ କରନ୍ତି । ସେସମୟରେ କାଳୀୟନାଗର ପ୍ରକୋପ ଓ ଦଂଶିବାର କୁ ଇଚ୍ଛା ପାଣିଫୋଟକା ପରି ମିଳେଇଯାଏ । ଭକ୍ତମାନଙ୍କର ଜୟ ଜୟଗାନରେ କମ୍ପିଉଠେ ଫକୀରାବନ୍ଧର ଭକ୍ତିମୟ ପରିବେଶ । ଯିଏ ସ୍ୱୟଂ ନାରାୟଣ ତାଙ୍କୁ କାଳୀୟନାଗର ଫଣା ଦଂଶିବ କିପରି ! ମୃତ୍ୟୁ ଲଭିଲା ଆପଣଛାଏଁ କାଳୀୟନାଗ ।

ସଦର ବରଗଡ଼ ଓ ଅମ୍ବାପଲ୍ଲୀ ଗ୍ରାମକୁ ସଂଯୋଗ କରିଥିବା ଜୀରା ନଦୀ ଯମୁନା ନଦୀର ରୂପକଳ୍ପ ନିଏ । ଏ ଯମୁନା ନଦୀ ପୌରାଣିକ ଆଖ୍ୟାନକୁ ଜାବୁଡ଼ି ଧରିଛି ଏଗାରଦିନ ବ୍ୟାପୀ ଧନୁଯାତ୍ରା ସମୟରେ । ନଦୀର ଜଳରାଶି ଓ ସୈକତ ଶ୍ରୀକୃଷ୍ଣ –ବଳରାମଙ୍କ ସନ୍ଦର୍ଶନ ତଥା ସ୍ପର୍ଶରେ ପବିତ୍ର ହେଇଯାଇଛି । ଯେତେବେଳେ ମୁଁ ବିଭିନ୍ନ କାର୍ଯ୍ୟରେ ବରଗଡରୁ ବରପାଲି, ସୋହେଲା କି ବିଜେପୁର ଯାଇଛି ଜୀରା ନଦୀ ବ୍ରିଜର ଉପର ଦେଇ ଅତିକ୍ରମ କରିଛି ଓ ସ୍ମରଣ କରିଛି ଜୀରା ନଦୀ ଯମୁନା ନଦୀର ରୂପ ନେଇ ସତରେ ଧନ୍ୟ ହୋଇଛି । ଏ ଜୀରା ନଦୀ ହିଁ ବରଗଡ଼ ଓ ଅମ୍ବାପଲ୍ଲୀ ଗ୍ରାମର ସଂଯୋଗୀକରଣ ମାଧ୍ୟମ ।

ପୂର୍ବ ଶୂନ୍ୟବାଣୀ ଅନୁସାରେ ମହାରାଜା କଂସ ଦିନକୁଦିନ ବ୍ୟଭିଚାରୀ, ଅତ୍ୟାଚାରୀର ରୂପ ଦେଖେଇଛନ୍ତି । ଦେବକୀର ଅଷ୍ଟମ ସନ୍ତାନ ତାଙ୍କର ଏକମାତ୍ର ଶତ୍ରୁ ଓ ମୃତ୍ୟୁର କାରଣ । ସେଇଥିପାଇଁ ସେ ଧନୁଯାତ୍ରାର ଆୟୋଜନ କରି ଶ୍ରଦ୍ଧାରେ ନିମନ୍ତ୍ରଣ କରିଛନ୍ତି ଗୋପପୁରବାସୀ ନନ୍ଦ–ଯଶୋଦାଙ୍କ ଅଳିଅଳ ସନ୍ତାନ ଶ୍ରୀକୃଷ୍ଣଙ୍କୁ । ନିମନ୍ତ୍ରଣ କରିଛନ୍ତି ବଳରାମଙ୍କୁ । ଦୁଇ ଭଣଜାଙ୍କୁ ଜୀବନରୁ ମାରିଦେବାର ଷଡ଼ଯନ୍ତ୍ର ରଚିଛନ୍ତି ଏ ଧନୁଯାତ୍ରା ମାଧ୍ୟମରେ । ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଶତ୍ରୁ ଯେତେ ଆପଣାର ହେଲେ ବି ଶତ୍ରୁ ହିଁ ଶତ୍ରୁ । ମୂଳୁ ମାଇଲେ ଯିବ ସରି/ଦେବଙ୍କ ସଙ୍ଗେ କିମ୍ବା କଳି ନ୍ୟାୟରେ ଶତ୍ରୁ ନିଧନ ହିଁ ଏକମାତ୍ର ମାନସିକତା ଭରିରହିଛି ମହାରାଜା କଂସଙ୍କ ମାନସପଟରେ । ବିଗଳିତ ହୃଦୟ ସ୍ଫୁରିତ ହେଉଛି ବାରମ୍ବାର ।

ମହାରାଜ କଂସଙ୍କର ବୈରୀ ଦେବକୀର ଅଷ୍ଟମ ସନ୍ତାନ, ଅଷ୍ଟମ ସନ୍ତାନ ହିଁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ । ଯେନ–ତେନ–ପ୍ରକାରେଣ ଶତ୍ରୁର ନିଧନ ମହାରାଜଙ୍କର ଏକମାତ୍ର କାମ୍ୟ । ସେଥିପାଇଁ ମଲ୍ଲଯୋଦ୍ଧା ବୀରମାନଙ୍କୁ ପ୍ରେରଣ କରିଛନ୍ତି ଗୋପପୁରକୁ । ବିଧିର ବିଧାନ ବିଚିତ୍ର ଶତ୍ରୁ ସଂହାର ବଦଳରେ ଯୋଦ୍ଧାମାନଙ୍କର ମୃତ୍ୟୁ ଘଟିଛି ।

ପୁତନା ବି ହସ ହସ ମୁଦ୍ରାରେ ପାଦଥୋଇଛି ଗୋପପୁରରେ । ଶୈବ ଭକ୍ତ ମହାରାଜ କଂସଙ୍କ ଆଦେଶ ଓ ବିଷ୍ଣୁ ଭକ୍ତ ପୁତନା ପ୍ରଗଲ୍‌ଭ ହୃଦୟରେ ବାଳୁତ କୃଷ୍ଣଙ୍କୁ ଦେଖି ବାତ୍ସଲ୍ୟ ମମତାରେ ଢୁଳୁଢୁଳୁ ହୋଇଛି । ସ୍ତନ୍ୟପାନ କରାଇ ମହାରାଜାଙ୍କର ଆଦେଶକୁ ସାକାର କରିବାକୁ ଯଥାଯଥ ପ୍ରୟାସ କରିଛି । ଏକଥା କୃଷ୍ଣଙ୍କୁ ସମ୍ପୂର୍ଣ୍ଣ ଗୋଚର । ସ୍ତନ୍ୟପାନ କରୁକରୁ ପୁତନାର ଜୀବନକୁ ଶୋଷିନେଇଛନ୍ତି ବାଳୁତ କୃଷ୍ଣ । ପୁତନାର ନିଧନ ଘଟିଛି ତତ୍‌କ୍ଷଣାତ୍ । ଶାପମୁକ୍ତ ହେଇଛି ପୁତନା ।

ଅକ୍ରୂରଙ୍କୁ ପ୍ରେରଣ କରିଛନ୍ତି କଂସ ମହାରାଜା କଳୁଷିତ ମନରେ । ରାଜାଙ୍କ ଆଦେଶ ଅନ୍ୟଥା ହେବାର ବାଟ ନାହିଁ । ଅବଜ୍ଞା କରିବାର ଅବକାଶ ନାହିଁ । ଅକ୍ରୁର ବିଷ୍ଣୁ ଭକ୍ତ । ସେ କଂସ ମହାରାଜଙ୍କ ଅନ୍ତର କଥା ଜାଣିପାରୁଛନ୍ତି । ଅନିଚ୍ଛା ସତ୍ତ୍ୱେ ଯାତ୍ରା କରୁଛନ୍ତି ଗୋପପୁର । ଆଖିରେ ଭୟ, ଆଶଙ୍କା ପୁନଶ୍ଚ ନିଜର ଅତି ଆପଣାର ସ୍ୱୟଂ ବିଷ୍ଣୁ ଅବତାର ଶ୍ରୀକୃଷ୍ଣଙ୍କୁ ଚର୍ମ ନୟନରେ ଦେଖି ଆତ୍ମସନ୍ତୋଷ ଲାଭ କରିବାର ମୁଗ୍ଧ ପ୍ରୟାସ । ଏଭଳି ଆଶା ଉଦ୍ରେକ ହେଇଛି ହୃଦୟରେ । ଗୋଟିଏ ପଟେ ରାଜାଙ୍କ ଆଦେଶ ମାନିବା ଓ ଅନ୍ୟପଟେ ନିଜର ଅଭିଳାଷକୁ ଚରିତାର୍ଥ କରିବା । ବାଃ ଅପୂର୍ବ ସଂଯୋଗ ! ରଥ ବାହି ଗୋପପୁର ପହଞ୍ଚିଛନ୍ତି ଅକ୍ରୁର । ଦେଖିପାରୁଛନ୍ତି ଶ୍ରୀକୃଷ୍ଣ–ବଳରାମଙ୍କ ବାଲ୍ୟ ଚପଳତା । ଅନୁଭବ କରିପାରୁଛନ୍ତି ଗୋପପୁରବାସୀଙ୍କ ଆତିଥ୍ୟ । ଅକ୍ରୁର ଆସିଛନ୍ତି ନନ୍ଦ ଯଶୋଦାଙ୍କ ଅଳିଅଳ ଦୁଇପୁତ୍ରଙ୍କୁ ନେଇଯିବାକୁ ମଥୁରା କଟକ । ନନ୍ଦ ଯଶୋଦାଙ୍କ ଆଖିରେ ଆଖିଏ ଲୁହର ଅଦିନ ଶ୍ରାବଣ ।

ଗୋପପୁରବାସୀଙ୍କ ମନରେ ବି ହତୋତ୍ସାହିତ ଭାବନା । ଅପ୍ରତ୍ୟାଶିତ କାନ୍ଦବୋବାଳିରେ ଫାଟି ପଡୁଛି ଗୋପପୁର । ସତେଯେମିତି ଗ୍ରାମ୍ୟ ପରିବେଶ ଦୁଃଖରେ ମ୍ରିୟମାଣ । ଶ୍ରୀକୃଷ୍ଣ ଓ ବଳରାମ ସହାସ ବଦନରେ ମେଲାଣି ନେଉଛନ୍ତି ଗୋପପୁରରୁ । ମାମୁଙ୍କ ଧନୁଯାତ୍ରା ଦେଖି ଇପ୍‌ସିତ ଆକାଂକ୍ଷା ପୂର୍ଣ୍ଣ କରିବେ ଦୁଇ ଭଣଜା ।

ଶ୍ରୀକୃଷ୍ଣ ବଳରାମ ନିଜ ବାପା ମା, ସାଥୀ ସହୋଦର ଗୋପପୁରବାସୀଙ୍କୁ ସାନ୍ତ୍ୱନା ଦେଇ ଅକ୍ରୁରଙ୍କ ରଥରେ ଆସନ ଗ୍ରହଣ କରିଛନ୍ତି । ନିଜର ଆରାଧ୍ୟ ଦେବତା ଶ୍ରୀକୃଷ୍ଣଙ୍କୁ ରଥରେ ବାହି ଅକ୍ରୁର ଅଭିଭୂତ ହେଇଯାଇଛନ୍ତି । ଯମୁନା ନଦୀର ସୈକତ ଶଯ୍ୟାରେ ଗତି କଲାବେଳେ ଶ୍ରୀକୃଷ୍ଣଙ୍କ ରୂପ ମାଧୁରୀକୁ ଓ ପଦଚିହ୍ନକୁ ପରଖିନେଇ ନିଜର ଅଭିଳଷିତ ଇଚ୍ଛାକୁ ପୂର୍ଣ୍ଣ କରିଛନ୍ତି । ଭକ୍ତିରେ ମିଳନ୍ତି ଠାକୁର, ଅନୁଭବିଛନ୍ତି ଅକ୍ରୁର ।

ଅକ୍ରୁରଙ୍କ ରଥରେ କୃଷ୍ଣ ବଳରାମ ଦୁଇଭାଇ ମଥୁରା ନଗରୀରେ ପ୍ରବେଶ କରି ପ୍ରଜାମାନଙ୍କୁ ଦର୍ଶନ ଦେଇଛନ୍ତି । ସହରର ପ୍ରତି କୋଣେ କୋଣେ ଆବାଳ–ବୃଦ୍ଧ–ବନିତା ଚର୍ମ ଚକ୍ଷୁରେ ବିଷ୍ଣୁ ଅବତାରୀଙ୍କ ଦର୍ଶନ ଲଭି ନିଜ ଜୀବନକୁ ସାର୍ଥକ ମଣିଛନ୍ତି । ରାସ୍ତାର ଦୁଇପାର୍ଶ୍ୱରେ ବିପୁଳ ସଂଖ୍ୟାରେ ଯୋଗଦେଇଛନ୍ତି ମଥୁରାବାସୀ । ରଥର ସାଜସଜ୍ଜା, ରଥ ପରିକ୍ରମଣର ଦୃଶ୍ୟ ବିଶେଷକରି କୃଷ୍ଣ ବଳରାମଙ୍କର ଆଗମନୀ ସମସ୍ତଙ୍କ ମନରେ ଭକ୍ତିର ଚନ୍ଦନ ବୋଳିଦେଇଛି । କେବଳ ଯେ ମଥୁରାବାସୀଙ୍କର ଉପସ୍ଥିତି ଥାଏ, ତା ନୁହେଁ ବରଗଡ଼ ଜିଲ୍ଲାର ପଡ଼ୋଶୀ ରାଜ୍ୟର ଶ୍ରଦ୍ଧାଳୁ ଭକ୍ତଙ୍କର ଅପୂର୍ବ ସମାବେଶ ଘଟେ ।

ବରଗଡ଼ରେ ମୁଁ ଯେତେବେଳେ ଓଡିଶା ସରକାରଙ୍କ ଅଧୀନସ୍ଥ ଏକ କାର୍ଯ୍ୟାଳୟରେ ଅବସ୍ଥାପିତ ଥିଲି, ସେତେବେଳେ ଆମ କାର୍ଯ୍ୟାଳୟ ସମ୍ମୁଖଭାଗରେ (ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ସମ୍ମୁଖ ଗାନ୍ଧୀଛକ) ଅକ୍ରୁରଙ୍କ ରଥ ଗମନ କରିଛି ଏବଂ ମୁଁ ଦେଖିପାରିଛି ଅପୂର୍ବ ଦୃଶ୍ୟକୁ । ମନସ୍କାମନା ପୂର୍ଣ୍ଣ କରିପାରିଛି । ଧନ୍ୟ ମଣିଛି । ଯେତେ ବର୍ଷ ବରଗଡ଼ରେ ଅବସ୍ଥାପିତ ଥିଲି ପ୍ରତି ବର୍ଷ ଏ ଦୃଶ୍ୟ ସନ୍ଦର୍ଶନର ସୁଯୋଗ ନେଇଛି । ନ ଦେଖିଲା ଲୋକ ସହଜେ ବିଶ୍ୱାସ କରିପାରିବନି । ଏଭଳି ଭକ୍ତିପୂତ ସମୟକୁ ଅପଲକ ନୟନରେ ଚାହିଁ ରହିଥାନ୍ତି ଆବାଳ–ବୃଦ୍ଧ–ବନିତା । ସମସ୍ତଙ୍କ ଦୃଷ୍ଟିରେ ଆସିଛନ୍ତି ଦୁଇ ବାଳୁତ କୁମର ।

ବରଗଡ଼ର ମନାବନ୍ଧଠାରେ ସୁସଜ୍ଜିତ ନାବ ଉପରେ ନାବକେଳି କରିଥାଆନ୍ତି ଦୁଇଭାଇ କୃଷ୍ଣ ବଳରାମ । ଆହା କି ଅପୂର୍ବ ସେ ଦୃଶ୍ୟ କି ମନୋରମ ! ଧନ୍ୟ ହୋଇଯାଇଛି ମୋ ନେତ୍ରଯୁଗଳ ।

କଂସ ମହାରାଜ ବିଭୋରପଣରେ କୃଷ୍ଣ, ବଳରାମଙ୍କୁ ପାଛୋଟି ନେଇଛନ୍ତି ନିଜ ରାଜଦରବାରକୁ । ଆଶା, ଆକାଂକ୍ଷା ଓ ଅଭିଳାଷକୁ ସାକାର କରିବାର ସୁଯୋଗ ଆସିଛି । ରାଜ ଦରବାରରେ ମଲ୍ଲଯୋଦ୍ଧାମାନଙ୍କ ସହ ଅପର୍ଯ୍ୟାପ୍ତ ଲଢ଼େଇ ହେଇଛି । ବାଳୁତ ସିନା କୃଷ୍ଣ ବଳରାମ, ମାତ୍ର ସେ ଦୁହେଁ ତ ଭଗବାନଙ୍କ ଅବତାର । କିଏ ବା ପରାସ୍ତ କରିବ ସେ ଦୁହିଙ୍କୁ । ଯୋଉଠି ଅନ୍ୟାୟ, ଅନୀତି, ଅତ୍ୟାଚାରର କଳୁଷ ଘନେଇ ଆସେ, ପ୍ରଜାକୁଳ ତ୍ରାହି ତ୍ରାହି ଡାକୁଥାନ୍ତି, ସେତେବେଳେ ସ୍ୱୟଂ ଭଗବାନ ଆବିର୍ଭାବ ହୋଇଛନ୍ତି । ନିରୀହ ପ୍ରଜାଙ୍କୁ ବିପଦରୁ ଉଦ୍ଧାର କରି ଶାନ୍ତି ପ୍ରତିଷ୍ଠା କରିଛନ୍ତି । ସେ ଘଟଣା ହିଁ ଘଟିଛି କଂସ ଦରବାରରେ । ବିଚରା ଅହଂ ପଣିଆରେ ଉବୁଟୁବୁ, କୁମନ୍ତ୍ରଣାରେ ବୁଡ଼ୁବୁଡ଼ୁ, ହିଂସାଜଳରେ ବୁଡ଼ୁବୁଡ଼ୁ କଂସ ମହାରାଜ ନିଜର ଅନ୍ତିମ ଦୃଶ୍ୟକୁ ଦେଖିଛନ୍ତି ମଞ୍ଚାରେ । ଭଣଜା କୃଷ୍ଣ ସହ ଯୁଝି ପରାସ୍ତ ଓ ନିହତ ହେଇଛନ୍ତି । ଜୟ ଶ୍ରୀକୃଷ୍ଣ, ଜୟ ବଳରାମ ଧ୍ୱନିରେ ପ୍ରକମ୍ପିତ ହେଇଛି ମଥୁରା ନଗରୀ । ପ୍ରତାପୀ କଂସ ମହାରାଜର ବିୟୋଗରେ ପ୍ରଜାକୁଳ ସୁଖ, ଶାନ୍ତି ଲଭିଛନ୍ତି । ମଥୁରାବାସୀଙ୍କ ମୁଖରୁ ସ୍ୱତଃ ବାହାରିପଡ଼ିଛି –

କଂସରାଜାର ବଂଶ ବୁଡୁ
କଂସ ମଲେ ଖାଏମା ଲଡୁ ।
ଟିକେ ଭାବିଲେ, କି ଖୁସି ଆନନ୍ଦ ପ୍ରଜାମାନଙ୍କ ମନରେ !

ରାଜ୍ୟର ପ୍ରହରୀ ରୂପେ ଜୀବନ ଯାପନ କରୁଥିବା ଉଗ୍ରସେନଙ୍କ ନାତି ଶ୍ରୀକୃଷ୍ଣଙ୍କର ଶୁଭଆଶୀର୍ବାଦରେ ମଥୁରାକଟକର ରାଜା ହେଇଛନ୍ତି । ପୁଣି ଥରେ ଫେରିଆସିଛି ସୁଖ, ଶାନ୍ତି, ସୌହାର୍ଦ୍ଦ୍ୟ ପ୍ରଜାମାନଙ୍କ ହୃଦୟରେ । ବ୍ୟଭିଚାର, ଅନ୍ୟାୟ, ଅନୀତି, ଅହଂଭାବ ଓ କୁମନ୍ତ୍ରଣାର ବିଲୟ ଘଟିଛି ।

ବରଗଡ଼ର ନାଁ ଫେରିଆସିଛି ଯାତ୍ରାର ଯବନିକା ପରେ ବରଗଡ ସଦର, ଅମ୍ବାପଲ୍ଲୀ ଓ ଜୀରା ନଦୀ ନିଜ ପରିଚୟ ଫେରିପାଇଛନ୍ତି ।

ଶିବଧନୁ ଭଗ୍ନ, ପ୍ରତାପୀ କଂସର ମୃତ୍ୟୁରେ ଲୋକନାଟକ ଧନୁଯାତ୍ରାର ସମାପନ ଘଟିଛି । ପ୍ରଜାମାନେ ଆଶ୍ୱସ୍ତି ଅନୁଭବ କରିଛନ୍ତି ।

କୁହାଯାଇପାରେ ଏ ଦୁନିଆରେ ଦୁଇ ଶକ୍ତିଶାଳୀ ଯୋଦ୍ଧା ହେଲେ ଧୈର୍ଯ୍ୟ ଓ ସମୟ । ଦେବକୀ–ବସୁଦେବଙ୍କର ଅସହ୍ୟ ମାନସିକ ଯନ୍ତ୍ରଣା, ଗାଦିଚ୍ୟୁତ ଉଗ୍ରସେନଙ୍କର ଅଲୋଡା ଶାରୀରିକ ପୀଡ଼ା ଏପରିକି ପ୍ରଜାମାନଙ୍କ ଉପରେ ହେଉଥିବା ଅକଥନୀୟ ଅତ୍ୟାଚାରକୁ ଧୈର୍ଯ୍ୟ ହିଁ ବାନ୍ଧି ରଖିଥିଲା ଏବଂ ଉପଯୁକ୍ତ ସମୟ ଉପଗତ ହୁଅନ୍ତେ ଦୁଃଖ ଅବସାଦର ଅନ୍ତ ଘଟିଯାଇଛି ।

ମୁଁ ଗାଁରେ ଦେଖିଛି ମଞ୍ଚ ଲୋକନାଟକ । କିନ୍ତୁ ଏଗାର ଦିନ ବ୍ୟାପୀ ଏ ଖୋଲାମଞ୍ଚର ନାଟକ ବରଗଡ଼ରେ ଦେଖି ଯେତିକି ଆହ୍ଲାଦିତ ହେଇଛି ସେତିକି ଅନୁଭବିଛି ନାଟକର କଳା କୌଶଳ ଐତିହ୍ୟ ଓ ସଂସ୍କୃତି । ମଥୁରାନଗରୀ ଓ ଗୋପପୁରରେ ହେଉଥିବା ଅଭିନୟର ଦୁଇଜଣ ନିର୍ଦ୍ଦେଶକ ବାସ୍ତବିକ ସର୍ବାଦୌ ପ୍ରଶଂସାର୍ହ । ପ୍ରତ୍ୟେକ ଚରିତ୍ରକୁ ନିଖୁଣ ଭାବେ ନିର୍ଦ୍ଦେଶନା ଦେଇ ଲୋକାଭିମୁଖୀ କରିଥାନ୍ତି । କୁଶଳୀ କଳାକାର ବି ନିଜର ଅସ୍ମିତାକୁ ବଜାୟ ରଖି ଅଭିନୟ କରିଥାନ୍ତି । ଏହା କେବଳ ବରଗଡ଼ର ଐତିହାସିକ ଧନୁଯାତ୍ରାରେ ସମ୍ଭବ ହୋଇପାରିଛି ଓ ସୁଦୂରପ୍ରସାରୀ ଲାଭ କରିପାରିଛି ।

ଚଳିତ ବର୍ଷ ମହାନ ଲୋକନାଟକ ଧନୁଯାତ୍ରା ଜାନୁଆରୀ ୧୫, ୨୦୨୪ ତାରିଖରୁ ଆରମ୍ଭ ହୋଇ ଜାନୁଆରୀ ୨୫ ତାରିଖରେ ସମାପନ ହେଉଛି । ଦୀର୍ଘ ଏଗାରଦିନ ବ୍ୟାପୀ ମଞ୍ଚସ୍ଥ ହେଉଥିବା ଏ ଖୋଲା ମଞ୍ଚର ନାଟକ ପ୍ରକୃତରେ ଲୋକନାଟକର ଧାରା ବଜାୟ ରଖିଛି । ବରଗଡ ଜିଲ୍ଲାର ପ୍ରତି ପଡା (ସାହି ବା ଗଳି) ଧନୁଯାତ୍ରା ପାଇଁ ବିବେଚିତ ହେଇଛି । ପ୍ରତ୍ୟେକ ସ୍ଥାନର ନାଁ ଇତିହାସରେ ଚିହ୍ନିତ ହୋଇଯାଇଛି । ଏହା ନିହାତି ଗର୍ବ ଓ ଗୌରବର କଥା ।

ପ୍ରବନ୍ଧଟି ଉପସ୍ଥାପନା କଲାବେଳକୁ ଯାତ୍ରାର ପ୍ରତିଟି ଅଭିନୟ ଆଖିଆଗରେ ଝଲସିଯାଉଛି । ଅତିରିକ୍ତ ଜିଲ୍ଲାପାଳଙ୍କ ସମ୍ପାଦନାରେ ପ୍ରକାଶିତ ଧନୁଯାତ୍ରା ସମ୍ବନ୍ଧୀୟ ସ୍ମରଣିକା 'ଧନୁସ୍ତମ୍ଭ'ରେ ମୋ ପ୍ରବନ୍ଧ ସ୍ଥାନିତ ହୋଇ ପାଠକୀୟ ଆଦର ପାଇଛି । ମୋ ପାଇଁ ଏହା ନିଶ୍ଚିତ ଲେଖକୀୟ ସ୍ୱାକ୍ଷର ।

ଆସନ୍ତୁ, ଏକ ବିଶୁଦ୍ଧ, ପ୍ରାଣପ୍ରାଚୁର୍ଯ୍ୟଭରା ମନ–ହୃଦୟ ନେଇ ଐତିହାସିକ ଧନୁଯାତ୍ରା ଦେଖିବା, ଲୋକକଳା, ହସ୍ତଶିଳ୍ପକୁ ପ୍ରୋତ୍ସାହନ କରିବା ଏବଂ ବରଗଡ଼ ଜିଲ୍ଲାର ଐତିହ୍ୟ ସଂସ୍କୃତିକୁ ଆବେଗିକତାରେ ସାଉଁଟି ନେବା ।

ପ୍ଲଟ୍ ନଂ – ୨୬/ ୨୫୧୧ /୨୬୧୧
ପାତ୍ରପଡ଼ା ( ପୁରୁଣା ଆନ୍ଧ୍ର ବ୍ୟାଙ୍କ ପଛ,
ଗୀତାଞ୍ଜଳି ସ୍କୁଲ ଅଫ୍ ନର୍ସିଂ ଗଳି)
ଭୁବନେଶ୍ୱର–୭୫୧୦୧୯



# ପୁରାତନ ଆୟୁର୍ବେଦ ଚିକିତ୍ସା ଓ ଗାନ୍ଧିଜୀ

**ଡାକ୍ତର ଦୀନବନ୍ଧୁ ମହାରଣା**

ଜାତିର ଜନକ ମହାତ୍ମା ଗାନ୍ଧିଙ୍କ ଜୀବନୀକୁ ପର୍ଯ୍ୟାଲୋଚନା କଲେ ଜଣାପଡ଼େ ଯେ ଗାନ୍ଧିଜୀଙ୍କ ଇଚ୍ଛାଶକ୍ତି, ଆତ୍ମସଂଯମ ଓ ଭାରତୀୟ ସଂସ୍କୃତିର ମୂଲ୍ୟବୋଧ ପ୍ରତି ଅତୁଟ ବିଶ୍ୱାସ ତାଙ୍କୁ ମହାମାନବରେ ପରିଣତ କରିପାରିଥିଲା । ଭାରତୀୟ ଦେଶୀ ଚିକିତ୍ସା, ପ୍ରାକୃତିକ ଚିକିତ୍ସା ଓ ଆୟୁର୍ବେଦୀୟ ଚିକିତ୍ସା ପ୍ରଣାଳୀକୁ ପ୍ରୟୋଗ କରି ସେ ସୁସ୍ଥ ଜୀବନଶୈଳୀ ଆପଣେଇଥିଲେ । ଶରୀର ସୁସ୍ଥ ରହିଲେ, ମନ ସୁସ୍ଥ ରହିବ ଏବଂ ଏହା ଦ୍ୱାରା ମାନସିକ ଶାନ୍ତି ଲାଭ କରାଯାଇପାରିବ । ମାନସିକ ଶାନ୍ତି ହିଁ ଦୃଢ଼ ଇଚ୍ଛାଶକ୍ତିକୁ ବଳ ଯୋଗାଇବ ଏବଂ ଦୃଢ ଇଚ୍ଛାଶକ୍ତି ହିଁ ମଣିଷକୁ ସଫଳ ଭାବେ କର୍ମପ୍ରବଣ କରାଇପାରିବ – ଏହି ବିଶ୍ୱାସ ରଖି ଗାନ୍ଧିଜୀ ନିଜ ଜୀବନ ଯାତ୍ରାରେ ଅଗ୍ରସର ହୋଇଥିଲେ । ଆୟୁର୍ବେଦ ଚିକିତ୍ସା ପଦ୍ଧତିକୁ ଅବଲମ୍ବନ କରି ସେ ପ୍ରାୟତଃ ନୀରୋଗ ରହିଥିଲେ ଓ ବିଭିନ୍ନ ସାମୟିକ ବ୍ୟାଧିରୁ ମୁକ୍ତିଲାଭ କରିଥିଲେ ।



ସ୍ୱଦେଶୀ ସଂସ୍କୃତିର ଆଧାରରେ ଭାରତୀୟ ଜନଜୀବନରେ ସେ ଏକ ଆଲୋଡ଼ନ ଆଣିଥିଲେ ଏବଂ ସ୍ୱଦେଶୀ ଚିକିତ୍ସା ପଦ୍ଧତିର ପ୍ରୟୋଗ କରି ନିଜ ଜୀବନରେ ସେ ସଫଳ ହୋଇଥିଲେ । ଭାରତୀୟ ସଂସ୍କୃତିରେ ଅଗାଧ ବିଶ୍ୱାସ ରଖିଥିବା ଗାନ୍ଧିଜୀ ଦୁର୍ଦ୍ଧର୍ଷ ଇଂରେଜ ଶାସନ ବିରୋଧରେ ଭାରତରେ ଅହିଂସା ମାର୍ଗରେ ସଂଗ୍ରାମ ଚଳାଇ ସଫଳତା ହାସଲ କରିଥିଲେ । ଶୁଦ୍ଧାହାର ଓ ଶାକାହାର ହିଁ ତାଙ୍କୁ ଅହିଂସା ମାର୍ଗରେ ପରିଚାଳିତ କରିଥିଲା ଏବଂ ତାହାକୁ ଏକ ସଫଳ ନମୁନା ଭାବେ ଗ୍ରହଣ କରି ସେ ବିଜାତୀୟଙ୍କ ଚିନ୍ତା ଓ ଚେତନାକୁ ପ୍ରଭାବିତ କରିପାରିଥିଲେ । ସଶସ୍ତ୍ର ସଂଗ୍ରାମ ବଦଳରେ ଅହିଂସା ଆନ୍ଦୋଳନର ମାର୍ଗ ବାଛି ନେଇ ସେ ସଫଳ ହୋଇଥିଲେ ।

''ଗ୍ରାମ ସ୍ୱରାଜ''ର ପରିକଳ୍ପନା କରି ଦେଶର ସ୍ୱାଧୀନତା ଆନ୍ଦୋଳନକୁ ବେଗଗାମୀ କରିବାକୁ ଗାନ୍ଧିଜୀ ଯେତେବେଳେ ଉଦ୍ୟମ ଆରମ୍ଭ କଲେ, ସେତେବେଳେ ସେ ଭାରତୀୟମାନଙ୍କୁ ଗାଁର ଉନ୍ନତି କଥା ଚିନ୍ତା କରିବାକୁ ପରାମର୍ଶ ଓ ଆହ୍ୱାନ ଦେଲେ । ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ବହୁ ସହରୀ ଶିକ୍ଷିତ, ଧନୀ ବ୍ୟବସାୟୀ ଲୋକ ଗାଁକୁ ଗାଁ ବୁଲିଲେ । ଗାନ୍ଧିଜୀ ସାରା ଦେଶକୁ ବୁଲି ଦେଖିଲେ । ସହରକୁ ବି ଗଲେ କିନ୍ତୁ ସବୁଠାରେ ସେ ଗାଁର ମଳିମୁଣ୍ଡିଆ ଦୁର୍ବଳ ଲୋକଙ୍କ ଦୁଃଖ କଥା କହିଲେ । ସେମାନଙ୍କୁ ଶିକ୍ଷା ଦେବା, ଧନ୍ଦାମୂଳକ ତାଲିମ ଦେବା, ସଫେଇ ପାଇଁ ସ୍ୱାସ୍ଥ୍ୟରକ୍ଷା ପାଇଁ ବିଭିନ୍ନ ପ୍ରାକୃତିକ ଉପାୟ ବ୍ୟବହାର

ସମ୍ପର୍କରେ କହିଲେ । ତାଙ୍କର ଗୋଟିଏ ଦୃଢ଼ ଧାରଣା ଥିଲା, ଦେଶର ଲୋକଙ୍କ ସ୍ୱାସ୍ଥ୍ୟରକ୍ଷା ପାଇଁ ଦେଶୀ ଚିକିତ୍ସା କରାଯିବା ଉଚିତ । ସେ ନିଜେ ଡାକ୍ତରୀ ଔଷଧ ଗ୍ରହଣ କରୁନଥିଲେ । ଫଳରସ, ଛେଳିକ୍ଷୀର, କିଛି ମହୁ, ବୁଟ ଇତ୍ୟାଦି ଶୁଦ୍ଧ ଆହାରକୁ ସେ ସବୁବେଳେ ଜୋର ଦେଉଥିଲେ । ଏପରିକି ଥରେ ତାଙ୍କ ପୁଅର ଭୀଷଣ ଜ୍ୱର ହୋଇଥିବା ବେଳେ ସେ କୌଣସି ଡାକ୍ତରୀ ଔଷଧ ନ ଦେଇ କେବଳ ପାଣି ପଟି ପକାଇ ତାକୁ ଜ୍ୱରରୁ ଆରୋଗ୍ୟ କରିଥିଲେ । ଏଥିପାଇଁ ସେ ସବୁଜ ପନିପରିବା ଚାଷ ଓ କୃଷି ଉପରେ, ଗୋପାଳନ ଉପରେ ଅଧିକ ଆଗ୍ରହ ଦେଖାଇଥିଲେ । ସେ ସେବାଗ୍ରାମଠାରେ ଏପରି ଏକ ଆଦର୍ଶ ଗ୍ରାମ୍ୟ ଜୀବନର ନକ୍ସା ଆଙ୍କିଥିଲେ ।

ଗାନ୍ଧିଜୀ ଦେଶର ସ୍ୱାସ୍ଥ୍ୟ ସମସ୍ୟା ଦିଗରେ ମଧ୍ୟ ସଚେତନ ଥିଲେ । ସେଥିପାଇଁ ସେ ବସ୍ତି ସଫେଇ, କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ସେ ଯେଉଁଠାକୁ ଯାଉଥିଲେ ସେଠାରେ ପରିବେଶ ଯେପରି ପରିଷ୍କାର ରହେ ସେଥିପାଇଁ ତାଙ୍କ ସେବକ ଓ ଅନୁଗତମାନେ ଖୁବ୍ ସତର୍କ ଦୃଷ୍ଟି ଦେଉଥିଲେ । ସେ କହୁଥିଲେ ଘର ଓ ପରିବେଶ ଯଦି ସଫା ଓ ନିର୍ମଳ ରହିବ ତେବେ ମନ ଭଲ ରହିବ । କାରଣ ଏକ ଅସ୍ୱାସ୍ଥ୍ୟକର ପରିବେଶ ହିଁ ଅସୁସ୍ଥ ମଣିଷର ପରିଚୟ ଦିଏ । ଏଥିପାଇଁ ସେ ଦେହ ସହିତ ମନକୁ ସଫା ରଖିବା ଉପରେ ଜୋର ଦେଉଥିଲେ । ଆମ ଦେଶର ପାଣିପବନକୁ ଖାପ୍ ଖୁଆଇଲା ଭଳି ଚଳଣି ଆମକୁ ସୁସ୍ଥ ରଖିବା ଦିଗରେ ସାହାଯ୍ୟ କରିବ ବୋଲି ସେ କହୁଥିଲେ । ସେଥିପାଇଁ ହାଲୁକା ସୂତା ଲୁଗାପଟା ପିନ୍ଧିବା, ଢ଼ିଙ୍କିକୁଟା ଚାଉଳ ଖାଇବା, ଡାଲିଜାତୀୟ ଖାଦ୍ୟ ଓ ଶାଗ ପନିପରିବା ଇତ୍ୟାଦିକୁ ଖାଇବା ପାଇଁ ସେ ଉପଦେଶ ଦେଉଥିଲେ । ପ୍ରତ୍ୟେକଙ୍କୁ ଦୈନିକ କିଛି ନା କିଛି ଝାଳବୁହା ପରିଶ୍ରମ କରିବାକୁ ସେ କହୁଥିଲେ । ଏହାଦ୍ୱାରା ଦେହରେ ରକ୍ତ ସଂଚାଳନ ଠିକ୍ ଭାବରେ ହେଇପାରିବ । ଠିକ୍ ସମୟରେ ଖାଇବା, ଠିକ୍ ସମୟରେ ଶୋଇବା, ଠିକ୍ ସମୟରେ କାମ କରିବା, ଠିକ୍ ସମୟରେ ପ୍ରାର୍ଥନା କରିବା ଭଳି ଏକ ନିୟମ ତାଙ୍କ କର୍ମୀମାନଙ୍କୁ ପାଳନ କରିବାକୁ ବରାବର ଗୁରୁତ୍ୱ ଦେଉଥିଲେ ।

ଖାଲି ସେତିକି ନୁହେଁ ଗାନ୍ଧିଜୀ ଦେଶୀ ଚିକିତ୍ସାକୁ ସ୍ୱାସ୍ଥ୍ୟରକ୍ଷା ପାଇଁ ପସନ୍ଦ କରୁଥିଲେ । ଆମ ଲୋକେ ସାମାନ୍ୟ ଜ୍ୱର, କାଶ, ଝାଡ଼ା କି ମୁଣ୍ଡ ବୁଲାଇବା , ଦେହହାତ ବିନ୍ଧିବା ଭଳି ରୋଗରେ ପଡ଼ିଲେ ଡାକ୍ତରୀ ଚିକିତ୍ସା କରିବାକୁ ବାଧ୍ୟ ହୋଇଥାନ୍ତି । କିନ୍ତୁ ଆମ ଦେଶରେ ବହୁ ପୁରୁଣା ଯୁଗରୁ ଏପରି କେତେକ ସୁସ୍ଥ ଜୀବନଯାପନ କରିବାର ଉପାୟ ସବୁ ରହିଛି ଯାହାକୁ ଆମେ ସାମାନ୍ୟ ଚେଷ୍ଟା କଲେ ସେସବୁର ବ୍ୟବହାର କରି ରୋଗରୁ ଭଲ ହୋଇପାରିବା । ଗାନ୍ଧିଗୀ ନିଜେ ଏପରି କରି ଅନ୍ୟମାନଙ୍କୁ ଶିଖାଉଥିଲେ । ସେଥିମଧ୍ୟରେ ଜଳଚିକିତ୍ସା, ମାଟି ଚିକିତ୍ସା, ସୂର୍ଯ୍ୟଚିକିତ୍ସା ଇତ୍ୟାଦି ଯେ କେହି ଲୋକ ଚାହିଁଲେ ଅତି ସହଜରେ କରି ରୋଗରୁ ରକ୍ଷା ପାଇପାରିବ । ଗାନ୍ଧିଜୀ ସବୁବେଳେ ମଣିଷଙ୍କ ମନକୁ ପବିତ୍ର ରଖିବାକୁ କହୁଥିଲେ । ମନ ଭଲ ଥିଲେ ଦେହ ଭଲ ରହିବ ଏବଂ ଦେହକୁ ଯେତେ ପରିଷ୍କାର ରଖିବ ତା'ର ପ୍ରଭାବ ମଧ୍ୟ ମନ ଉପରେ ପଡ଼ିବ ।

ଗାନ୍ଧିଜୀଙ୍କ ମତରେ ପ୍ରକୃତି ଆମର ହେଉଛି ପ୍ରକୃତ ବନ୍ଧୁ । ପ୍ରକୃତିରେ ଆମର ଜୀବନ ବଢ଼ି ଉଠିଛି । ପ୍ରକୃତି ତେଣୁ ଆମର ଦେହ, ମନ, ପ୍ରାଣ ଆତ୍ମାକୁ କିପରି ଭାବରେ ଆନନ୍ଦ ଦେଇପାରିବ ସେଥିନେଇ ସେ ''ପ୍ରାକୃତିକ ଚିକିତ୍ସା'' ନାମକ ଏକ ବହି ଲେଖିଥିଲେ । ତାହାଦ୍ୱାରା ଆମ ହାତପାଆନ୍ତାରେ ଥିବା ବହୁ ଉପକାରୀ ଗଛ, ଲତା, ପତ୍ର, ଫଳ, ଫୁଲ ଇତ୍ୟାଦିର ଔଷଧୀୟ ଗୁଣକୁ ଆମେ ଚିହ୍ନି ଆମର ରୋଗବ୍ୟାଧିର ଚିକିତ୍ସା କରିବା ଉଚିତ । ଏଥିପାଇଁ ଆମେ ରହୁଥିବା ଘରଦ୍ୱାର, ବାଡ଼ିବଗିଚାକୁ ଗଛଲତାରେ ଯେମିତି ଘୋଡେଇ ରଖିବାକୁ ହେବ । ତାହାଦ୍ୱାରା ଏକ ସୁନ୍ଦର ସବୁଜ ପରିବେଶ ଆମ ପାଇଁ ଜୀବନର ସମସ୍ତ ଦରକାରୀ ପଦାର୍ଥ ଯୋଗାଇ ଦେଇପାରିବ । ଗଛଲତା ହେଉଛନ୍ତି ଆମର ଜୀବନ ରକ୍ଷକ । ତେଣୁ ଗାନ୍ଧିଜୀ ଗଛ ଲଗାଇବାକୁ ଏବଂ ପରିବେଶକୁ ଦୂଷିତ, ଦୁର୍ଗନ୍ଧମୟ ନ କରିବାକୁ ବରାବର ଜୋର ଦେଉଥିଲେ । ଖାଦ୍ୟରେ ବେଶି ପରିମାଣରେ ଲୁଣ, ଲଙ୍କା, ତେଲ ମସଲା, ଚର୍ବି ଜାତୀୟ ପଦାର୍ଥ ଯେପରି ମାଛ, ମାଂସ, ଅଣ୍ଡା ଇତ୍ୟାଦି ଖାଦ୍ୟଠାରୁ ସବୁ ଦୂରେଇ

ରଖିବା ଉଚିତ । ସାଦା ଖାଇବାର ଅଭ୍ୟାସ ରଖିଲେ ତାହା ଦେହକୁ ଠିକ୍ ଭାବରେ ଶକ୍ତି ଯୋଗାଇ ଥାଏ ।

ଆମ ଦେଶରେ ବହୁ ପୁରୁଣା ଯୁଗରୁ ଆୟୁର୍ବେଦ ଚିକିତ୍ସାକୁ ଭିନ୍ନ ଭିନ୍ନ ଉପାୟରେ ଆମର ଆୟୁର୍ବେଦ ଚିକିତ୍ସକମାନେ ଖୁବ୍ ସରଳ ଉପାୟରେ ବିଭିନ୍ନ ରୋଗର ଉପଶମ କରିବାରେ ସଫଳ ହେଉଥିଲେ । ଗାନ୍ଧିଜୀ ସେସବୁ ବିଷୟକୁ ଭଲଭାବରେ ପରୀକ୍ଷା କରି ତାଙ୍କର ପ୍ରାକୃତିକ ଚିକିତ୍ସା ପ୍ରଣାଳୀ ଲୋକଙ୍କ ସାଧାରଣ ସ୍ୱାସ୍ଥ୍ୟରକ୍ଷା ଉଦ୍ଦେଶ୍ୟରେ ପ୍ରଚାର କରିଥିଲେ । ସେ ତାଙ୍କର ସେବାଶ୍ରମରେ ଏପରି ସରଳ ଓ ପବିତ୍ର ଜୀବନଯାପନ କରିବାର ଉଦାହରଣ ରଖିଥିଲେ । ଖୁବ୍ ଭୋର ସକାଳୁ ବିଛଣା ଛାଡ଼, ଶୌଚକର୍ମ କରିବା, ସ୍ନାନ କରି ସକାଳର ସୂର୍ଯ୍ୟାଲୋକରେ କିଛି ସମୟ ବ୍ୟାୟାମ କରିବା ଏବଂ ତା'ପରେ ଗଜାମୁଗ, ଭିଜାବୁଟ, ପାଚିଲା କଦଳୀ, ଗୁଡ଼ ଇତ୍ୟାଦି ଜଳଖିଆ କରି ନିଜ ନିଜର କାମରେ ଲାଗିବା ।

ଗାନ୍ଧିଜୀଙ୍କ ଦୃଷ୍ଟିରେ ସ୍ୱାସ୍ଥ୍ୟରକ୍ଷା ହେଉଛି ମଣିଷର ନିଜ ସ୍ୱଭାବ ଉପରେ ସଂଯମ ରଖିବା । ଆମ ଶରୀରର ଚାହିଦା ଅନୁସାରେ ଆମକୁ ଖାଦ୍ୟ ଗ୍ରହଣ କରିବା ଉଚିତ । ଯାହା ସହଜରେ ହଜମ ହୋଇପାରିବ, ରକ୍ତ ସଂଚାଳନରେ ସାହାଯ୍ୟ କରିପାରିବ ଏବଂ ମେଦ ବା ଚର୍ବିକୁ ବଢିବାକୁ ଦେବ ନାହିଁ । ତେବେ ମଧୁମେହ ବା ଡାଇବେଟିସ୍, ହୃଦରୋଗ ବା ହାର୍ଟ, ରକ୍ତଚାପ ବା ବ୍ଲଡ୍‌ପ୍ରେସର ଭଳି ମାରାତ୍ମକ ରୋଗକୁ ନିଜକୁ ରକ୍ଷା କରିହେବ । ଆମ ବାଡ଼ିବଗିଚାରେ ଥିବା ଶାଗ ସବ୍‌ଜି ହେଉଛି ଉତ୍ତମ ଆହାର । ଯେଉଁଥିରେ ପ୍ରଚୁର ପରିମାଣରେ ଖାଦ୍ୟପ୍ରାଣ ବା ଭିଟାମିନ୍ ରହିଛି । ଯଥା : ଲେମ୍ବୁ, ନିମ୍ବ, ବେଲ, ତୁଳସୀ, କଦଳୀ, ଆମ୍ବ, ଖଜୁରୀ, ଗାଜର, କାକୁଡ଼ି, ପିଜୁଳି, ଝୁଡ଼ଙ୍ଗ, ଖଡ଼ା, ଲେଉଟିଆ, ପାଳଙ୍ଗ, ପୋଦିନା ପତ୍ର, ଧନିଆ ପତ୍ର, କଲରା, କଖାରୁ, ସାରୁ, ଆଳୁ, ଦେଶୀ ଆଳୁ, ପୋଟଳ, ବାଇଗଣ, ବିଲାତି ବାଇଗଣ, କନ୍ଦମୂଳ, ସଜନା ଛୁଇଁ, କଦଳୀ ମଞ୍ଜା, କନ୍ଦମୂଳ, ଭେଣ୍ଡି, ମୂଳା, ଛଚିନ୍ଦ୍ରା, ଅମୃତଭଣ୍ଡା ଇତ୍ୟାଦି ଫଳ ଓ ପନିପରିବା ମଣିଷର ଦୈନିକ ଖାଦ୍ୟ ତାଲିକାରେ ସ୍ଥାନ ପାଇଲେ ତାହା ଶରୀରରେ ରୋଗ ପ୍ରତିରୋଧକ ଶକ୍ତି ବଢାଇଥାଏ । ଫଳରେ ମଣିଷ ଥଣ୍ଡା, ଜ୍ୱର, କାଶ, ଝାଡା, ଇତ୍ୟାଦି ଛୋଟ ଛୋଟ ରୋଗରୁ, ନିଜକୁ ରକ୍ଷା କରିଥାଏ । ଗାନ୍ଧିଜୀ ଏହିପରି ଖାଦ୍ୟରୁ ଔଷଧର ଗୁଣ ସମ୍ପର୍କରେ ଟିକିନିଖି ପରୀକ୍ଷା କରି ଦେଖୁଥିଲେ ।

ଗାନ୍ଧିଜୀ ତାଙ୍କ 'ଆତ୍ମଜୀବନୀ'ରେ ନିଜ ଜୀବନର କେତେକ ଅନୁଭୂତି ବର୍ଣ୍ଣନା କରିଛନ୍ତି ଯେଉଁଥିରେ ସ୍ୱାସ୍ଥ୍ୟ ସମ୍ପର୍କରେ ତାଙ୍କର ଥିବା ଧାରଣା କ'ଣ ତାହା ଜଣାଯାଏ । ସେ ନିରାମିଷ ଆହାରକୁ ଭଲ ପାଉଥିଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ ତାହା ଅଭ୍ୟାସ କରିବା ପାଇଁ କହୁଥିଲେ । ସେ ଖାଦ୍ୟରେ ତେଲ, ମସଲା ଖାଉ ନଥିଲେ । ତାଙ୍କ ମୁଣ୍ଡବିନ୍ଧା ଭଲ କରିବା ପାଇଁ ସେ ସକାଳ ଜଳଖିଆ ଖାଇବା ଛାଡ଼ିଦେଇଥିଲେ । ଫଳରେ ସେ ମୁଣ୍ଡବିନ୍ଧାରୁ ଭଲ ହୋଇଗଲେ । ତେଣୁ ସେ ଅନୁଭବ କଲେ ଯେ ଆମେ ଅନେକ ସମୟରେ ଶରୀର ଚାହିଦା ଅପେକ୍ଷା ଅଧିକ ଖାଉ । ତାହା କେବଳ ପାଟି ଲାଳସା । ତେଣୁ ସେ ଖାଦ୍ୟ କମେଇ ଦେଇ ତାଙ୍କର ସ୍ୱାସ୍ଥ୍ୟକୁ ଠିକ୍ ରଖିବାରେ ସଫଳ ହୋଇଥିଲେ । ସେହି ସମୟରେ ଜଣେ ଜର୍ମାନୀ ଲେଖକଙ୍କ ଦ୍ୱାରା ଲିଖିତ ''ପ୍ରକୃତିକୁ ଫେରିଚାଲ'' ନାମକ ଏକ ବହି ସେ ପଢିବାକୁ ପାଇଲେ । ସେଥିରେ ଲେଖକ ତଟକା ଫଳଖାଇବା ଓ ବାଦାମ ଚୋବାଇବା ପାଇଁ ଲେଖିଥିଲେ । ତାହା ହେଉଛି ମଣିଷର ସ୍ୱାଭାବିକ ଖାଦ୍ୟ । ଅବଶ୍ୟ ଗାନ୍ଧିଜୀ କେବଳ ଫଳ ଖାଇବା ଉପରେ ଜୋର ଦେଇ ନଥିଲେ । କିନ୍ତୁ ସେଥିରେ ଲେଖାଥିବା ମାଟି ଚିକିତ୍ସାକୁ ସେ ପରଖ କରିଥିଲେ? ଏହି ମାଟି ଚିକିତ୍ସାରେ ଶୋଇବା ସମୟରେ ଚିକ୍କଣ ମାଟି ଚକଟି ଗୋଟିଏ କନାରେ ତଳିପେଟରେ ବାନ୍ଧିବାକୁ ପଡୁଥିଲା । ଏହା ପରୀକ୍ଷା କରିବା ପରେ ସେ ଆରାମ ପାଇଲେ ।

ଗାନ୍ଧିଜୀ ନିଜ ଜୀବନରେ ତାଙ୍କର କେତେକ ରୋଗର ଚିକିତ୍ସା ପାଇଁ କେତେକ ସ୍ୱାଭାବିକ ଉପାୟ ଗ୍ରହଣ କରୁଥିଲେ । ସ୍ୱାସ୍ଥ୍ୟ ସମ୍ପର୍କରେ ତାଙ୍କର ମୌଳିକ ଦୃଷ୍ଟିକୋଣ ଥିଲା ଯାହାକୁ ସେ ଉପବାସ, ବ୍ରହ୍ମଚର୍ଯ୍ୟ, ଆତ୍ମସଂଯମ, ଶୁଦ୍ଧ ସାତ୍ୱିକ ଆହାର, ଫଳାହାର, ଖୋଲାପବନ, ସଫାସୁତୁରା ରହିବା ଇତ୍ୟାଦି ବୋଲି ସେ କହୁଥିଲେ । ତାହା ସହଜରେ ବିନା

ଔଷଧରେ ତାଙ୍କୁ ନିରୋଗ କରିପାରୁଥିଲା । ଗରିବ ଲୋକ ଖାଇପାରିବା ଭଳି ପନିପରିବା, ଶାଗ ସବ୍‌ଜିକୁ ସେ ଉତ୍ତମ ସ୍ୱାସ୍ଥ୍ୟ ପାଇଁ ସୁପାରିସ୍ କରୁଥିଲେ । ଗାନ୍ଧିଜୀଙ୍କ ଦୃଷ୍ଟିରେ ପରିଷ୍କାର ପରିଚ୍ଛନ୍ନତା ସ୍ୱାସ୍ଥ୍ୟରକ୍ଷାର ପ୍ରଥମ କଥା ଥିଲା । ତେଣୁ ସେ ସଫେଇକୁ ଏକ ସାମାଜିକ କାର୍ଯ୍ୟକ୍ରମ ଭାବରେ ଗ୍ରହଣ କରିନେଲେ । ତା'ପରଠାରୁ ସେ ଭାରତର ସ୍ୱାଧୀନତା ଆନ୍ଦୋଳନ ସମୟରେ ବସ୍ତି ସଫେଇକୁ ସମାଜ ସେବା ଭାବେ ଗ୍ରହଣ କରିନେଲେ । ଗୋଟିଏ ନିର୍ମଳ ଓ ପ୍ରଦୂଷଣ ମୁକ୍ତ ପରିବେଶ ହିଁ ଉତ୍ତମ ସ୍ୱାସ୍ଥ୍ୟ ରକ୍ଷା କରିବାରେ ସହାୟକ ବୋଲି ସେ ମତ ଦେଇଥିଲେ । ଥରେ ବମ୍ବେରେ ଗାନ୍ଧିଜୀ ଥିଲାବେଳେ ଦଶବର୍ଷର ତାଙ୍କ ପୁଅ କିଛିଦିନ ତଳେ ବସନ୍ତ ରୋଗ ହୋଇଥିବାରୁ ସେ ଆନ୍ତ୍ରିକ ଜ୍ୱରରେ ବା ଟାଇଫଏଡରେ ପୀଡ଼ିତ ହୋଇପଡ଼ିଲେ । ନିମୋନିଆ ଓ ପ୍ରଳାପ ଭଳି ଏକ ଲକ୍ଷଣ ତାଙ୍କଠାରେ ଦେଖାଗଲା । ଜଣେ ଡାକ୍ତରଙ୍କୁ ଡକାଗଲା । ସେ ଆସିଲେ ଏବଂ କହିଲେ ଯେ ଏଥିପାଇଁ କୌଣସି ଔଷଧ କାମ କରିବ ନାହିଁ । ତାଙ୍କୁ ଅଣ୍ଡା ଖାଇବାକୁ ପଡ଼ିବ । ତେବେ ଯାଇ କିଛି ଆରୋଗ୍ୟ ହେବ । ସେ ଡାକ୍ତରଙ୍କୁ କହିଲେ ଯେ ତାଙ୍କ ପରିବାର ସମ୍ପୂର୍ଣ୍ଣ ନିରାମିଷାହାରୀ । ତେଣୁ ଅଣ୍ଡା ଖାଇବା ସମ୍ଭବ ନୁହେଁ । ତେଣୁ ସେ ଡାକ୍ତରଙ୍କୁ କହିଲେ ମୁଁ ପୁଅର ଜଳଚିକିତ୍ସା କରିବାକୁ ଚାହେଁ । କିନ୍ତୁ ଆପଣ ତା'ର ନାଡ଼ି ଓ ଛାତି ପରୀକ୍ଷା କରି ଦେଖନ୍ତୁ । ଗାନ୍ଧିଜୀ ତା'ପରେ ତାଙ୍କ ପୁଅକୁ ଜଳଚିକିତ୍ସା ନିୟମ ଅନୁଯାୟୀ ଅଣ୍ଟା ପର୍ଯ୍ୟନ୍ତ ଗୋଟିଏ କୁଣ୍ଡରେ ତିନିମିନିଟ୍ ବସିବାକୁ କହିଲେଙ୍କ । ତା'ପରେ ତାକୁ କମଳାରସ ଖାଇବାକୁ ଦେଲେ କିନ୍ତୁ ଜ୍ୱର ୧୦୪ଡିଗ୍ରୀକୁ ଛୁଇଁଲା । ଗାନ୍ଧିଜୀ ବିଚଳିତ ହୋଇପଡିଲେ । ତଥାପି ସେ ରାମନାମ ଜପ କରି ପୁଅର ଆରୋଗ୍ୟ ପାଇଁ ପ୍ରାର୍ଥନା କଲେ । କିଛି ସମୟ ପରେ ପୁଅ ତାଙ୍କୁ ଡାକି କହିଲା ବାହାରକୁ ନେବା ପାଇଁ । ତାଙ୍କ ଦେହରୁ ଝାଳ ବୋହିବାକୁ ଲାଗିଥିଲା । କ୍ରମେ ସେ ଭଲ ହୋଇଗଲେ । ତାଙ୍କୁ ଚାଳିଶ ଦିନ ଯାଏଁ କେବଳ ପାଣି ମିଶା କ୍ଷୀର ଓ ଫଳରସ ଖାଇବାକୁ ଦିଆଗଲା । ଶେଷରେ ତାଙ୍କ ପୁଅ ଖୁବ୍ ସୁସ୍ଥ ସବଳ ହୋଇଗଲେ ।

ଖାଦ୍ୟ ସଂଯମ ଉପରେ ଗାନ୍ଧିଜୀ ଗୁରୁତ୍ୱ ଦେଉଥିଲେ । ଖରାରେ ପାଚିଲା ଫଳ ଓ ବାଦାମ ମଞ୍ଜି ଖାଇବାକୁ ସୁପାରିସ୍ କରୁଥିଲେ । ଏହାଦ୍ୱାରା ଦେହର ତନ୍ତୁ ଓ କୋଷ ସବୁ ଠିକ୍ ଭାବରେ ଶକ୍ତି ପାଇପାରିବେ । ଅଙ୍ଗୁର ଓ ବାଦାମ ଏଥିପାଇଁ ବିଶେଷ ସାହାଯ୍ୟ କରିବ । ଏହାଦ୍ୱାରା ମଣିଷର କାମ ବିକାର କମିଯିବ । ଅସତ୍ ଚିନ୍ତା ଦୂର ହୋଇଯିବ । ଉପବାସ ଦ୍ୱାରା ମଧ୍ୟ କେତେକ ସ୍ୱାସ୍ଥ୍ୟଗତ ସମସ୍ୟାର ସମାଧାନ ହୁଏ । ଗାନ୍ଧିଜୀ ନିଜେ ସେପରି ଉପବାସ ବ୍ରତ ଗ୍ରହଣ କରୁଥିଲେ । ଏହା କେବଳ ଏକ ଧାର୍ମିକ କଥା ନୁହେଁ । ଏହା ମଧ୍ୟ ଶରୀରର ବିଭିନ୍ନ ଅଂଶକୁ ବିଶ୍ରାମ ଦେଇ, ସେସବୁକୁ ଆହୁରି ସତେଜ କରିଦିଏ । ଗାନ୍ଧିଜୀ ତେଣୁ ବିଭିନ୍ନ ସମୟରେ କୌଣସି ସଙ୍କଟରେ ପଡ଼ିଲେ ଅନଶନ ବା ଉପବାସ କରି ନିଜର ଶରୀର ଓ ମନକୁ ଶୁଦ୍ଧ କରୁଥିଲେ ।

ଗାନ୍ଧିଜୀ ଭାରତର ସ୍ୱାଧୀନତା ପାଇଁ ଯେମିତି ଲଢେଇ କରିଥିଲେ ସେମିତି ଭାରତର ସମାଜକୁ ନୂଆକରି ଗଢିବା ପାଇଁ ଏବଂ ଜୀବନକୁ ସୁସ୍ଥ ରଖିବାରେ କେତେକ ପ୍ରାକୃତିକ ଚିକିତ୍ସା ଉପାୟ ବିଷୟରେ ନିଜେ ପରୀକ୍ଷା କରି ସେଥିରେ ସଫଳ ହୋଇଥିଲେ । ସେ ଭାରତୀୟ ପୁରାତନ ଚିକିତ୍ସା ବିଜ୍ଞାନ ଆୟୁର୍ବେଦର ଉପକାର ବିଷୟରେ ଆଗ୍ରହୀ ହୋଇଥିଲେ । ସେ ନିରାମିଷ ଓ ଫଳମୂଳ ଆହାରକୁ ସ୍ୱାସ୍ଥ୍ୟରକ୍ଷା ପାଇଁ ବେଶୀ ଉପଯୋଗୀ ବୋଲି ମନେ କରୁଥିଲେ ।

ଡି.ଲିଟ୍ ପ୍ରାପ୍ତ ଆୟୁର୍ବେଦ ଗବେଷକ
ଓ.ଏମ୍.ପି. ଛକ ମାର୍କେଟ, କଟକ



# ସୁରମ୍ୟ ଉପବନ ଓଳାଶୁଣୀ ପାହାଡ଼ : ବ୍ରହ୍ମଦର୍ଶୀ ସନ୍ଥ ଅରକ୍ଷିତ

**ରାମଚନ୍ଦ୍ର ଦାଶ**

ଦିନ ରାତି, ରାତି, ମାସ, ବର୍ଷକୁ ନେଇ ଏ ସମୟ ଅତିକ୍ରମ ହୋଇ ଚାଲିଛି । ବହୁ ଶ୍ରୁତି ଓ ସ୍ମୃତିକୁ ନେଇ ମହାକାଳର ଏହି ଆଲୋକ ବର୍ଷ ଅତିକ୍ରମଣ ଭିତରେ ଶୂନ୍ୟ ଜଗତରୁ ଇହ ଜଗତକୁ ବେଳେ ବେଳେ ଯେଉଁ ସୁନ୍ଦର ଇଚ୍ଛାଶକ୍ତିଟିଏ ଆସୁଛି, ତାହା ଏହି ମଣିଷକୁ ସାଧାରଣରୁ ଅସାଧାରଣ କରି ସେହି ସ୍ଥାନକୁ ମଧ୍ୟ ଦର୍ଶନ ଓ ତତ୍ତ୍ୱ ମହିମାନ୍ୱିତ କରିଦେଉଛି । ସାଧାରଣ ମଣିଷର ବଞ୍ଚିବାର କଳାରେ ନୂତନ ଅନୁଭୂତିର ଅଭିବ୍ୟକ୍ତି ପ୍ରବେଶ କରେ ସୃଜନଶୀଳ ମଣିଷର ସୃଜନ କର୍ମରେ । ସେଥିପାଇଁ ସେ ହୋଇଯାଏ ମହାପୁରୁଷ । ସବୁ ସେହି ଅନନ୍ତ ଇଚ୍ଛାର ପରିପ୍ରକାଶ । ଓଳାଶୁଣୀ ଭଳି ଏକ ପବିତ୍ର ସଦ୍‌ଭାବନାର ପୀଠ ସମ୍ପର୍କରେ କହିବା ପୂର୍ବରୁ ମୁଁ ସେହି ମହାଜାଗତିକ ଅନନ୍ତ ଶୂନ୍ୟ ଶକ୍ତିକୁ ନମସ୍କାର କରୁଛି । ଦର୍ଶନ ଓ ଦିବ୍ୟ ଦର୍ଶନର ସୁରମ୍ୟ କ୍ଷେତ୍ର ଓଳାଶୁଣୀ ଏବଂ ସିଦ୍ଧସାଧକ ବ୍ରହ୍ମଦର୍ଶୀ ସନ୍ଥ ଅରକ୍ଷିତ ଦାସଙ୍କୁ ମଧ୍ୟ ନମସ୍କାର କରୁଛି । ପ୍ରାକୃତିକ ଶୋଭା ଭିତରେ ସଂସାରର ସଂସ୍କାର ପାଇଁ ସେହିଦିନରୁ ଆଜି ପର୍ଯ୍ୟନ୍ତ ଶ୍ୟାମ ଏବଂ ସାରତତ୍ତ୍ୱରେ ପୂର୍ଣ୍ଣ ଭକ୍ତିରସର ଯେଉଁ ଅନ୍ତରସ୍ଥ ବହୁଛି ତା'ର ପଟାନ୍ତର ନାହିଁ । ଏହା ଆଜି କଟକ ଜିଲ୍ଲାର ମାହାଙ୍ଗା, ଯାଜପୁର ଜିଲ୍ଲାର ବଡ଼ଚଣା କିମ୍ବା କେନ୍ଦ୍ରାପଡ଼ା ଜିଲ୍ଲାର ସାହିତ୍ୟ ଓ ସଂସ୍କୃତି ଭାଷା ସମ୍ମେଳନ ପାଇଁ ଭକ୍ତିରସର ଏକ ପୀଠସ୍ଥଳୀ ନୁହେଁ ସଚେତନତାର ବିଚାରରେ ଓଡ଼ିଶାକୁ, ଭାରତବର୍ଷକୁ ଓ ସମଗ୍ର ବିଶ୍ୱକୁ ମହାନ୍ ଅବଧୂତ ଦୀକ୍ଷା ଦେବା ପାଇଁ ଏକ ସୁରମ୍ୟ ଉପବନ । ଜାତି, ଧର୍ମ, ବର୍ଣ୍ଣ ଓ ଭାଷାର ଊର୍ଦ୍ଧ୍ୱରେ ଏହି ତତ୍ତ୍ୱକୁ ହୃଦୟର ସହ ଗ୍ରହଣ କରିବା ପାଇଁ ସମଗ୍ର ମାନବତାକୁ ଓଳାଶୁଣୀ ପୀଠ ଏକ ଆହ୍ୱାନ ଅଟେ । ଏକ ପାର୍ଶ୍ୱରେ ବୌଦ୍ଧ ବିହାର ଲଳିତଗିରି ଅପର ପାର୍ଶ୍ୱରେ ପୁରାଣ ପ୍ରସିଦ୍ଧ ଗାଙ୍ଗୀ ପାହାଡ଼ ଓ ପଞ୍ଚୁପାଣ୍ଡବ । ମଧ୍ୟସ୍ଥଳରେ ସ୍ୱୟଂ ସାଧନାର ରମ୍ୟପୀଠ ଏଇ ଓଳାଶୁଣୀ ପାହାଡ଼ ବୃଦ୍ଧ ହଂସର କେଳିକୁଞ୍ଜ ରୂପେ ଶୋଭା ପାଉଛି ।

ଏମିତି ଏକ କ୍ଷୁଦ୍ର ଆଲୋଚନା ମାଧ୍ୟମରେ ଓଳାଶୁଣୀରେ ଶୋଭାପାଉଥିବା ଦିବ୍ୟବୋଧର ପ୍ରକାଶ ଓ ବିକାଶ ଲାଭ କରିଥିବା ମହାମାନବ ସଂସ୍କୃତି ସମ୍ପର୍କରେ ଆଲୋଚନା କରିବା ଅସମ୍ଭବ । କେବଳ ସୂଚନାତ୍ମକ ତଥା ସମ୍ୟକ୍ ଭାବରେ ଏହା ସମ୍ବନ୍ଧରେ କିଛି ଆଲୋଚନା କରାଯାଇଛି, ଯାହାକି ଅସମ୍ପୂର୍ଣ୍ଣ ମନେ ହେବା ସ୍ୱାଭାବିକ ।

'ମହୀମଣ୍ଡଳ ଗୀତା'ରୁ ଜଣାପଡ଼େ, ୧୭୭୨ ମସିହାରେ ଗଞ୍ଜାମ ଜିଲ୍ଲାର ବଡ ଖେମୁଣ୍ଡି ରାଜ ଦରବାରରେ ପୁରୁଷୋତ୍ତମ ଅନଙ୍ଗ ଭୀମ ଦେବ ଓରଫ୍ ଭୀମ ଦେବଙ୍କ ଚତୁର୍ଥ ପୁତ୍ର ଭାବେ ବଳଭଦ୍ର ଦେବଙ୍କ ଜନ୍ମ । ରାଜବଂଶର ସୌଖୀନ ଜୀବନଚର୍ଯ୍ୟା ଭିତରେ ତାଙ୍କର ସତର ବର୍ଷ ଅତିକ୍ରମ ହୋଇଥିଲା । ମାତ୍ର ଜଣେ ପରମାର୍ଥୀ ମଣିଷର ମନ ପାରିବାରିକ ବନ୍ଧନର ସଂକୀର୍ଣ୍ଣତା କିମ୍ବା ରାଜଐଶ୍ୱର୍ଯ୍ୟର ବିଳସିତ ଜୀବନ ଭିତରେ ବାନ୍ଧି ହୋଇ ରହିପାରିଲା ନାହିଁ । ଅଠର ବର୍ଷ ବୟସରେ

ଜୀବନର ସତ୍ୟକୁ ଖୋଜିବା ପାଇଁ ସେ ଗୃହତ୍ୟାଗ କଲେ । ଜଣେ ଅବିବାହିତ ଯୁବକର ମନ ତାରୁଣ୍ୟର ସୁନା ରଙ୍ଗକୁ ଦେଖି ବିମୋହିତ ହେବା ବୟସରେ ଶୂନ୍ୟ ସାଧନା ଦିଗକୁ ଆଗେଇ ଆସିବା ଭାଗ୍ୟର ଏକ ଶୁଭ ଲକ୍ଷଣ ଛଡ଼ା ଅନ୍ୟ କିଛି ନୁହେଁ । ଯୁଗପୁରୁଷ ଗୌତମ ବୁଦ୍ଧଙ୍କ ଭଳି ସେ ଥିଲେ ପରମାର୍ଥର ଗବେଷକ । ଦିଗପହଣ୍ଡିର ଦିଗ ପଣ୍ଡାଙ୍କ ଘରେ ନିଜ ରାଜପରିଷଦଙ୍କ ସହିତ ଏକ ବସ୍ତ୍ର ପରିଧାନ କରି ସେ (ବଳଭଦ୍ର) ବାହାରକୁ ଚାଲିଗଲେ । ରାଜପୁତ୍ରଙ୍କୁ ଖୋଜିବା ପାଇଁ ତାଙ୍କ ପରିବାର ତରଫରୁ ଉଦ୍ୟମ ହେଲା । ମାତ୍ର ନିରାମୟ ଜୀବନ ଦର୍ଶନକୁ ଖୋଜିପାଇବା ପାଇଁ ବାହାରିଥିବା ସାଧକଙ୍କୁ ଫେରିପାଇବା କଷ୍ଟସାଧ୍ୟ ଥିଲା ।

ସନ୍ନ୍ୟାସ ଜୀବନ ପାଇଁ ମୁନିଋଷିମାନେ ନିକାଞ୍ଚନ ସ୍ଥାନ ଭାବରେ ସଦାବେଳେ ଅରଣ୍ୟରେ ଆଶ୍ରମ ସ୍ଥାପନ କରନ୍ତି । ମାତ୍ର ଦିବ୍ୟଭାବର ଆହ୍ୱାନରେ ବଳଭଦ୍ର ଦେବ କୌଣସି ସ୍ଥାନରେ ସ୍ଥିର ହୋଇ ରହିପାରିଲେ ନାହିଁ । ଜଳ ଓ ପବନକୁ ଆହାର କରି ସେ କେବଳ ପଞ୍ଚ ଭୌତିକ ସାଧନାର ସିଦ୍ଧିଲାଭ କରିପାରିଲେ ଓ ଜିତେନ୍ଦ୍ରିୟ ପୁରୁଷ ଭାବରେ ଯୋଗାରୂଢ ସିଦ୍ଧିଲାଭ କରି ସର୍ବଶକ୍ତିମାନ ହୋଇଗଲେ । ରକ୍ତ ମାଂସ ଶରୀରରେ ମନ ସହ ଚୈତନ୍ୟର ସାକ୍ଷାତ୍କାର କରାଇ ପାରିଥିଲେ । ବନ ପାହାଡ଼ର ଛାଇ ଆଲୁଅ ପଥରେ ପ୍ରକୃତିର ନିରାମୟ ସ୍ୱରୂପରୁ ହିଁ ଶୂନ୍ୟ ସାଧନାରେ ନିରାମୟ ସ୍ୱରୂପ ତାଙ୍କୁ ଦେଖାଗଲା । ଅରଣ୍ୟ ସାଧନାର ଦୀର୍ଘ ବର୍ଷ ଅତିକ୍ରମ କଲା ପରେ ସେ ଆସି ଖୋର୍ଦ୍ଧା ଜିଲ୍ଲାର ଭୁବନେଶ୍ୱରର (ଓଡ଼ିଶାର ରାଜଧାନୀ) ଖଣ୍ଡଗିରି ପାହାଡର ଗୁମ୍ଫା ଭିତରେ ସାଧନା ଆରମ୍ଭ କଲେ । ସେହି ସମୟରେ ତାଙ୍କ ଦିବ୍ୟ ଅନୁଭୂତିର ଆଧ୍ୟାତ୍ମିକ ଭୂଗୋଳ 'ମହୀମଣ୍ଡଳ ଗୀତା' ସେ ପ୍ରଣୟନ କରିଥିଲେ । ସାରା ବିଶ୍ୱରେ ଦୃଶ୍ୟ ଓ ଅଦୃଶ୍ୟ ଭାବରେ ଛପନ କୋଟି ପ୍ରକାରର ଜୀବନ ଥିବାର ସେ ଲିପିବଦ୍ଧ କରିଛନ୍ତି । ସେତିକିବେଳେ ଓଡ଼ିଶାର ପ୍ରଖ୍ୟାତ ଦେବଦେବୀଙ୍କ ମନ୍ଦିର ବୁଲି ଦେବ ବିଗ୍ରହ ମଧ୍ୟରେ ବ୍ରହ୍ମଙ୍କୁ ଦେଖିବାର ଆଶା ତାଙ୍କର ଫଳପ୍ରଦ ହେଲା ନାହିଁ । ଜଣେ ନୀରବ ମଣିଷ ଅନାବିଳ ମନରେ ଶୂନ୍ୟପୁରୁଷଙ୍କୁ ଖୋଜୁଥିବା ବେଳେ ରକ୍ତମାଂସର ଶରୀର ଉପରେ କ୍ଲେଶ ତ ଜନ ସଂପ୍ରଦାୟ ତରଫରୁ କେଉଁଠି ଚୋର ପୁଣି ପାଗଳର ଭର୍ତ୍ସନା ଶୁଣିବାକୁ ମିଳିଥିଲା । ଏଥିପାଇଁ ମନ ଉପରେ ଆଘାତ ପରେ ଆଘାତ ବଢ଼େ । ଜଣେ ସିଦ୍ଧପ୍ରଦ ମଣିଷର ମନକୁ ଏକ ଦିଗରୁ ଅନ୍ୟ ଦିଗକୁ ବଦଳେଇ ଦବାକୁ ବିଭିନ୍ନ ଦିଗରୁ ବିଭିନ୍ନ ଚେଷ୍ଟା ବଢିଚାଲେ । ମାତ୍ର ସାଧକଙ୍କ କଳ୍ପନାର ସୂତ୍ରରେ ଏତେ ଦୃଢତା ଥିଲା ଯେ ଗ୍ରୀଷ୍ମ, ବର୍ଷା ବା ଶୀତ ଭଳି ପ୍ରାକୃତିକ ସଂଘାତକୁ ଅତିକ୍ରମ କରି ଯିଏ ସହନଶୀଳତା ଓ ଏକନିଷ୍ଠତା ଶିକ୍ଷା କରିଛି, ତାକୁ ସମାଜର ଏ ହୀନମନ୍ୟ ଅଙ୍ଗୁଳି ନିର୍ଦ୍ଦେଶ ପରିବର୍ତ୍ତନ କରିପାରିବ ବା କିପରି !

ଉପରେ ଆକାଶର ଛାତ । ତଳେ ମାଆ ବସୁମତୀର କୋଳ । ଏହାଠାରୁ ଆଉ ସୁନ୍ଦର ସ୍ଥାନଟିଏ କେଉଁଠି ଅଛି? ଅନନ୍ତ ପ୍ରକୃତିର ପତ୍ର ମର୍ମର ଶବ୍ଦରେ, ସାଗରର ଉତ୍ତାଳ ତରଙ୍ଗମାଳାରେ, ନଦୀ ନିର୍ଝରର କୁଳୁକୁଳୁ ସଂଗୀତରେ, ପକ୍ଷୀମାନଙ୍କର କାକଳୀରେ ଓ ଦୃଶ୍ୟମାନ ଜଗତର ଜୀବସ୍ୱର ମଧ୍ୟରୁ ଯେଉଁ ଓଁକାରର ଶବ୍ଦବ୍ରହ୍ମ ନିର୍ଗତ ହେଉଛି ସେ ହିତ ଶୂନ୍ୟଦେହୀର ସ୍ୱର । ଏଇ ବିଶ୍ୱ ପ୍ରକୃତି ମଧ୍ୟରୁ ସ୍ୱରକୁ ବାରି ଖୋଜି ବାହାର କରିବାକୁ ହେବ ଶୂନ୍ୟପୁରୁଷର ସ୍ୱରୂପକୁ । ଏଇ ଥିଲା ସନ୍ନ୍ୟାସ ଦିଗକୁ ପାଦ ବଢାଇ ଆଗକୁ ଆଗଉଥିବା ବଳଭଦ୍ର ଦେବଙ୍କ ନିଷ୍ପତ୍ତି ।

ଦେବାଦେବୀଙ୍କ ମନ୍ଦିର ଭ୍ରମଣ କରି ତାଙ୍କ ଭିତରୁ ଦେବତ୍ୱକୁ ପାଇଲେ ନାହିଁ । ପ୍ରାଣୀମାନଙ୍କ ମଧ୍ୟରେ ଦେବତ୍ୱ ନ ଦେଖି ପ୍ରକାଶ୍ୟରେ ସେ ଏହି ପ୍ରତୀକ ପୂଜା ବିରୋଧରେ ପ୍ରଚାର ଆରମ୍ଭ କରିଦେଲେ । ପ୍ରତୀକ ପୂଜାରେ କେବଳ ଜଣେ ଭକ୍ତର ମନକୁ ଭକ୍ତି ଭାବନାରେ ରଖି ହୁଏ ହେଲେ ବ୍ରହ୍ମଦର୍ଶନ ମିଳେନା । ବ୍ରହ୍ମଦର୍ଶନ ନ ହେଲେ ଆତ୍ମା ସହ ପରମାତ୍ମାଙ୍କ ସାକ୍ଷାତ୍କାର ହୋଇପାରେନା । ବ୍ରହ୍ମଦର୍ଶନ ନ ମିଳିଲେ ଜୀବନକୁ ସଦ୍‌ଗତି ମିଳେନା କି

ମୋକ୍ଷ ମିଳେନା । ତେଣୁ ସେ ମନ ସହିତ ପବନର ସାଧନା କରି ସର୍ବଘଟରେ ବ୍ରହ୍ମ ବିଜୟ ବିଷୟରେ ନିଶ୍ଚିତ ହେଲେ । ଦୀର୍ଘ ସାଧନା ପରେ ନିଜ ଭିତରେ ଯେଉଁ ଆତ୍ମିକ ବିବର୍ତ୍ତନ ଘଟୁଥିବ, ସେଥିରେ ସେ ବ୍ରହ୍ମଙ୍କର ଆଲୋକିତ ଉତ୍ସକୁ ପ୍ରତି ଶରୀର ମଧ୍ୟରେ ଦର୍ଶନ କଲେ । ସେଥିପାଇଁ ସେ ନିଃସନ୍ଦେହରେ କହିଲେ, ବିଶ୍ୱର ଛପନ କୋଟି ପ୍ରକାରର ଜୀବଙ୍କ ମଧ୍ୟରେ ଆତ୍ମା ଏକ ଓ ଅଭେଦ । ଶରୀରଠାରୁ ଆତ୍ମା ଭିନ୍ନ । ଆତ୍ମା ଶରୀରକୁ ସବୁ ପ୍ରକାରର ସାମର୍ଥ୍ୟ ଦେଇଥାଏ । ଏହି ଆତ୍ମା ରୂପକ ସୂକ୍ଷ୍ମ ସତ୍ତାହିଁ ଶୂନ୍ୟ ଦେହୀ । ସେତେବେଳେ ସମାଜରେ ପ୍ରଚଳିତ ଉଗ୍ର ଜାତିଆଣ ଭାବ ଓ ଜାତି ବିଭାଗର ଅଯୌକ୍ତିକତା ଉପରେ ନିଃସନ୍ଦେହ ହୋଇଯାଇ ଏଥିମଧ୍ୟରେ ଥିବା ବାଡ଼ ସବୁକୁ ଭାଙ୍ଗି ଦେଲେ ଓ ଅବାଡ ସୂତ୍ରକୁ ପ୍ରୟୋଗ କଲେ । ଏହି ପ୍ରକ୍ରିୟାରେ ଅବଧାଙ୍କିତ ସନ୍ନ୍ୟାସୀଙ୍କୁ ଅବଧୂତ କୁହାଯାଏ । ଅବଧୂତ ଭାବଧାରାରେ ସେ ସମସ୍ତ ଜାତିର ଲୋକଙ୍କଠାରୁ ଖାଦ୍ୟ ଗ୍ରହଣ କଲେ । ତେଣୁ ସେ ନିଜ ସ୍ୱୀକାରୋକ୍ତିରେ କହିଛନ୍ତି– 'ମୁଁ ସବୁ ଜାତିର ଲୋକଙ୍କ ଘରେ ଖାଦ୍ୟ ଖାଇଛି, ବ୍ରାହ୍ମଣଠାରୁ ଚଣ୍ଡାଳ ଯାଏଁ । ହେ ବ୍ରହ୍ମ ! ତୁମେ ତ ସମସ୍ତଙ୍କଠାରେ ବିରାଜିତ । ଗାଈ ନାନା ବର୍ଣ୍ଣର ହେଲେ ମଧ୍ୟ ସବୁ ଗାଈଙ୍କର କ୍ଷୀର ସେହି ଗୋଟିଏ ଶ୍ୱେତ ବର୍ଣ୍ଣର' । ଅନ୍ୟତ୍ର ସେ କହିଛନ୍ତି– 'ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବ । କାହାକୁ ଅଛୁଆଁ ବୋଲି ବିଚାରିବ ନାହିଁ । ପବିତ୍ର ଓ ଅପବିତ୍ର ସମସ୍ତେ ଏକ ଏବଂ ସ୍ତ୍ରୀ ପୁରୁଷ ଅଭେଦ' । ଏପରି ଏକ ସରଳ ସାମ୍ୟ ସଦ୍‌ଜ୍ଞାନକୁ ଜଗତି କରଣ କରିବା ଉଦ୍ଦେଶ୍ୟରେ ସେ ତାଙ୍କ ରଚିତ 'ମହୀମଣ୍ଡଳ ଗୀତା'ରେ ମାନବତାର ତତ୍ତ୍ୱକୁ ବିଶଦ୍ ଭାବେ ବର୍ଣ୍ଣନା କରିଛନ୍ତି । ଅସାଧାରଣ ସନ୍ନ୍ୟାସ ଅଭିଜ୍ଞତାରେ ପୂର୍ଣ୍ଣ ଏହି 'ମହୀମଣ୍ଡଳ ଗୀତା' ଆମ ସଭ୍ୟତାର ସାମ୍ନାରେ ଦୃଷ୍ଟାନ୍ତ ପାଇଁ ଏକ ସାର୍ବଭୌମ ସମ୍ବିଧାନ ।

ଈଶ୍ୱର ଏକ ଓ ଅଭିନ୍ନ । ସର୍ବ ରୂପର ସ୍ଥୂଳତା ଭିତରେ ସୂକ୍ଷ୍ମ ସ୍ୱରୂପର ଦର୍ଶନ ଅଭିଳାଷ ଏକ ଉଚ୍ଚତର ଆକାଂକ୍ଷା । ସ୍ଥିର ମନନଶୀଳତା ଉପରେ ଉପଲବ୍ଧିର ଆଲୋକ ଉତ୍ତୀର୍ଣ୍ଣ ହେଲେ ବ୍ରହ୍ମକୁ ଅବତୀର୍ଣ୍ଣ କରିବା ସମ୍ଭବ ହୋଇଥାଏ । ତାହା ତାଙ୍କ ପକ୍ଷରେ ସହଜ ହେଲା ଯେତେବେଳେ ସେ ଖଣ୍ଡଗିରି ଗୁମ୍ଫା ପରିତ୍ୟାଗ କରି ଓଳାଶୁଣୀ ପାହାଡ଼ର ଗୁମ୍ଫାକୁ ଚାଲିଆସିଲେ ।

ଗୁମ୍ଫା ପାହାଡ଼ ଓ ତତ୍‌ସଂଲଗ୍ନ ଜମି ସେତେବେଳେ କେନ୍ଦ୍ରାପଡ଼ାର ପ୍ରଖ୍ୟାତ ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ଅଧୀନରେ । ଏହି ଓଳାଶୁଣୀ ଗୁମ୍ଫା ପାହାଡ଼ ସେତେବେଳେ ଲଳିତଗିରି ବୌଦ୍ଧ ସନ୍ନ୍ୟାସୀମାନଙ୍କ ପ୍ରଭାବରେ ପ୍ରଭାବଶାଳୀ । ବୌଦ୍ଧ ଧର୍ମ ବିଭାଜିତ ହୋଇ ମହାବଜ୍ରଯାନରେ ବିଭକ୍ତ ହେବା ପରେ ସେଥିରେ ମନ୍ତ୍ର ଯନ୍ତ୍ର ଓ ତନ୍ତ୍ରସିଦ୍ଧକୁ ପ୍ରାଧାନ୍ୟ ଦିଆଗଲା । ସେଇ ପ୍ରଭାବରେ ପ୍ରଭାବିତ ଏହି ପାହାଡ଼ର ଅଧିଷ୍ଠାତ୍ରୀ ଦେବୀ ସେତେବେଳେ ତନ୍ତ୍ର ସାଧନାର ପୀଠ ରୂପେ ପରିଣତ ହୋଇଥାଏ । ଚଣ୍ଡୀ ଶକ୍ତିର ପ୍ରଭାବରେ ଉଗ୍ର ଓଳାଶୁଣୀ ଦେବୀଙ୍କ ଆଜ୍ଞା ହେଲା ଏହି ପାହାଡ଼ ପରିତ୍ୟାଗ କରି ଚାଲିଯିବା ପାଇଁ । ପୁଣି ସ୍ଥାନୀୟ ଉତ୍ତ୍ୟକ୍ତ ଜନତାଙ୍କ ଜଣେ ନିଃସଙ୍ଗ ବ୍ୟକ୍ତିକୁ ସେଠାରେ ଦେଖି ଚୋର ବୋଲି ଭାବି ନିସ୍ତୁକ ମାଡ଼ ଦେଲେ । ସେତିକିବେଳେ ଜଣେ ବୃଦ୍ଧଙ୍କ ଅନୁରୋଧ ଥିଲା – ହେ ହେ ତାକୁ ମାରନା । ନ ଖାଇ ନ ପିଇ ଏଇ ଅର୍କ୍ଷୀତଟା ଏଠି ସାତ ଆଠ ଦିନ ବସି ରହିଛି । କାହାର ବା କ'ଣ କ୍ଷତି କରୁଛି ସିଏ ? କାହିଁକି ଅର୍କ୍ଷୀତଟାକୁ ମାରୁଛ ? ଏହା ଶୁଣି ଲୋକମାନେ ଚାଲିଯାଇଥିଲେ ହେଲେ ଶୂନ୍ୟ ଇଚ୍ଛାର ନିର୍ଦ୍ଦେଶକ୍ରମେ ଏହି ଅରକ୍ଷୀତ ନାମକୁ ଗ୍ରହଣ କଲେ । କାରଣ ଜୀବନର ସର୍ବନିମ୍ନ ଅବସ୍ଥାକୁ ଏଇ ଅର୍କ୍ଷୀତ ଭାବେ କୁହାଯାଇଥାଏ । ଏଇ ସର୍ବନିମ୍ନ ନାମକୁ ଗ୍ରହଣ କରି ସେହିଦିନଠାରୁ ସେ ଅଞ୍ଚଳରେ ପରିଣତ ହେଲେ – ଅରକ୍ଷିତ ଦାସ । କିଛି ଦିନ ପରେ ସେ କେନ୍ଦ୍ରାପଡ଼ା ଗଲେ । ଜମିଦାର ନରେନ୍ଦ୍ରଙ୍କଠାରୁ ଏହି ଗୁମ୍ଫା ପାହାଡ଼କୁ ପ୍ରାପ୍ତ କଲେ । ଅରକ୍ଷିତଙ୍କର ଅଲୌକିକ ଶକ୍ତିରେ ବଶ ହୋଇ ଜମିଦାର ନରେନ୍ଦ୍ର ସନ୍ନ୍ୟାସୀଙ୍କ ସାଧନା ପାଇଁ ସକଳ ସୁବନ୍ଦୋବସ୍ତ

କରିଦେଲେ । ଉଚ୍ଚତର ନିଷ୍କାମ ସାଧନା ନିକଟରେ ଚଣ୍ଡୀ ଓଳାଶୁଣୀଙ୍କ ମନ୍ତ୍ର ଶକ୍ତି ମ୍ଳାନ ପଡିଗଲା । ଅରକ୍ଷିତଙ୍କ ନିର୍ଦ୍ଦେଶରେ ସେଇ ପାହାଡ଼ର ନିମ୍ନଦେଶରେ ସେ ଅବସ୍ଥାପିତ ହେଲେ । ସେଇଦିନଠାରୁ ଆଜି ପର୍ଯ୍ୟନ୍ତ ସେ ସେଇଠାରେ ଅବସ୍ଥାନ କରୁଛନ୍ତି । ସାତ୍ତ୍ୱିକ ଶାନ୍ତ ସଂଯମର ସାଧନା ପାଖରେ ଅସ୍ତମିତ ହୋଇଗଲା ଓଳାଶୁଣୀ ଗୁମ୍ଫା ପାହାଡ଼ ଓ ଜଙ୍ଗଲ ଭିତରେ ବିଚରଣ କରୁଥିବା ହିଂସ୍ର ପଶୁମାନଙ୍କର ପଶୁତ୍ୱ ଓ ହିଂସ୍ରତା ।

ଓଳାଶୁଣୀ ପାହାଡ଼ରୁ ତଳ ଆଡ଼କୁ ଲମ୍ବିଥିବା ଏକ ଅନ୍ଧକାର ଗହ୍ୱର ଥିଲା ସନ୍ଥ ଅରକ୍ଷିତ ଦାସଙ୍କ ଶୂନ୍ୟ ସାଧନାର କ୍ଷେତ୍ର । ସର୍ବମୟ ଶୂନ୍ୟ ପୁରୁଷଙ୍କର ସୂକ୍ଷ୍ମ ଆବିର୍ଭାବରେ ସେ ବ୍ରହ୍ମାଣ୍ଡର ବିଶ୍ୱରୂପ ଦର୍ଶନ କଲେ । ଜାତି, ଧର୍ମ, ବର୍ଣ୍ଣ ଓ ଭାଷାର ଊର୍ଦ୍ଧ୍ୱରେ ଏବଂ ପଶୁ , ପକ୍ଷୀ, କୀଟପତଙ୍ଗ ଓ ଜଳଚର ପ୍ରାଣୀଙ୍କ ଭିତରେ ରହିଥିବା ସମସ୍ତ ପ୍ରଭେଦ ସେଠି ଦୂର ହୋଇଗଲା । ତ୍ୟାଗପୂତ ତପସ୍ୟାର ପ୍ରଭାବ ଶକ୍ତିରେ ମାୟାର ଅଚେତନତାରେ ଥିବା ଅନ୍ଧକାର ସମାଜର ଚେତନା ପ୍ରଭାବ ଧୀରେ ଧୀରେ ସନ୍ଥଙ୍କ ଭାବଧାରାକୁ ଗ୍ରହଣ କଲା । ରକ୍ତ ମାଂସର ଶରୀର ଭିତରେ ମନ ସହିତ ଚୈତନ୍ୟକୁ ପରମ ସାତ୍ତ୍ୱିକତାର ଆଲୋକ ଅଧୀନରେ ଏକାକାର କରି ଦେଇଥିବା ସନ୍ଥ ଅରକ୍ଷିତ ଖାଦ୍ୟ ଭିତରେ ଆମିଷ ଓ ନିରାମିଷର ପାର୍ଥକ୍ୟକୁ ଦୂର କରିଦେଲେ । ସବୁ ସମ୍ପ୍ରଦାୟର ମଣିଷଙ୍କୁ ସହଜ ଓ ସୁଲଭ ହେଲା ଭଳି ଖାଦ୍ୟ – ପୋଡପିଠା, ଶୁଖୁଆ ଓ କାଞ୍ଜିପାଣିକୁ ସେ ନିଜର ଅତି ପ୍ରିୟ ଖାଦ୍ୟ ଭାବରେ ଗ୍ରହଣ କଲେ । ତାଙ୍କର ଦର୍ଶନ ଥିଲା – ଜଳ, ସ୍ଥଳ ଓ ବାୟୁମଣ୍ଡଳ ସବୁଠାରେ ଆମିଷ ପରିପୂର୍ଣ୍ଣ । ସେଗୁଡିକୁ ଅଜାଣତରେ କି ଜାଣତରେ ଭକ୍ଷଣ କରିବା ଯଦି ପାପ ନୁହେଁ ତେବେ ଆମିଷ ଭକ୍ଷଣରେ ପାପ କାହିଁକି ହେବ ? ତାହାଛଡା ଖାଦ୍ୟଶସ୍ୟ, ପନିପରିବା, ବୃକ୍ଷଲତା ଓ ଦୁଗ୍ଧ ଇତ୍ୟାଦିରେ ଆତ୍ମା ଓ ଜୀବନର ସତ୍ତା ଭରି ରହିଛି । ତାକୁ ଖାଦ୍ୟ ରୂପେ ଗ୍ରହଣ କରିବା ଯଦି ପାପ ନୁହେଁ ଆମିଷ ଭକ୍ଷଣକୁ ପାପ କାହିଁକି କୁହାଯିବ ? ସ୍ତ୍ରୀ ସହ ପୁରୁଷର ସମ୍ପର୍କ ମଧ୍ୟ ଆମିଷ ସହ ସମାନ । ଏହା ଯଦି ଗ୍ରହଣଯୋଗ୍ୟ ତେବେ ଆମିଷ ଭକ୍ଷଣକୁ ନିଷେଧ କରିବାରେ ଯୁକ୍ତି କେଉଁଠି ରହିଲା ? ସାତ୍ତ୍ୱିକତାରେ ସିଦ୍ଧି ସଂଯମୀ ମନକୁ ଏହା କେବେହେଲେ ବିଚଳିତ କରିପାରିବ ନାହିଁ ।

ସୃଷ୍ଟିର ସୌନ୍ଦର୍ଯ୍ୟ ପାଇଁ ସମାଜ ସଂସ୍କାରର ଦାୟିତ୍ୱ ବହନ କରିଥିବା ସନ୍ଥ ଅରକ୍ଷିତଙ୍କୁ ଅଘରୀ ଓ ଅନାଚାରୀ କହି ଯେଉଁମାନେ ତାଙ୍କୁ ବିଦ୍ରୂପ କରୁଥିଲେ ସେମାନେ ତାଙ୍କର ସାଧନା ଲବ୍ଧ ଅଲୌକିକ କାର୍ଯ୍ୟ ଦେଖି ଧୀରେ ଧୀରେ ନୀରବ ହେବାକୁ ବାଧ୍ୟ ହେଲେ । ରକ୍ଷଣଶୀଳ ଗୋଷ୍ଠୀ ଓ ମିଥ୍ୟାଚାରର ବାବାଜୀ ମହନ୍ତମାନଙ୍କୁ ଥିଲା ତାଙ୍କର ଏକାକ୍ଷର ବ୍ରହ୍ମ ଦର୍ଶନର ଉଦାହରଣ ଓ ପ୍ରଭାବ ଶୂନ୍ୟ କରିବାର ଅଲୌକିକ ଦୃଷ୍ଟାନ୍ତ । ରୋଗୀ,ଶୋଷି ଓ ଦୁଃଖୀମାନଙ୍କୁ ସେମାନଙ୍କର ଦୁଃଖରୁ ଉଦ୍ଧାର କରିବା ପାଇଁ ଅନେକ ସିଦ୍ଧପ୍ରଦ କାର୍ଯ୍ୟ କରିଥିଲେ । ଧୀରେ ଧୀରେ ଏକ ଅଘରୀ ଅବଧୂତବାଦ ବିରୁଦ୍ଧରେ ଥିବା ପ୍ରତିଧ୍ୱନି ସବୁ ହଟିଯାଇଥିଲା । ସଂସ୍କାର କାର୍ଯ୍ୟରେ ହୀନମନ୍ୟତାର ଦାମ୍ଭିକତା ସବୁ ଦୂର ହୋଇଗଲା । ଓଳାଶୁଣୀ ପୀଠ ହେଲା ବହୁଜନ ସମାଗମର ସ୍ଥଳୀ ଏବଂ ସୁଫଳଦାୟୀ ସିଦ୍ଧପ୍ରଦ ଧର୍ମ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସନ୍ଥ ଅରକ୍ଷିତଙ୍କର ଶରଣାପନ୍ନ ହେଲେ ।

ଶରୀରର ବିଲୟ ଅଛି ମାତ୍ର ଆତ୍ମାର ବିଲୟ ନାହିଁ । ଆତ୍ମା ହେଉଛି ବ୍ରହ୍ମମୟ ଈଶ୍ୱର । ପରମରୁ ଜୀବ ମଧ୍ୟକୁ ଯିବା ଆସିବା କରୁଥିବା ଏହି ଆତ୍ମାରେ ହିଁ ପରମର ସୂକ୍ଷ୍ମ ସ୍ୱରୂପ ବିଦ୍ୟମାନ । ତାହାର ଇଚ୍ଛାରେ ସେ ଶରୀର ମଧ୍ୟକୁ ଆସେ ଓ ଯାଏ । ଛପନ କୋଟି ପ୍ରକାରର ଜୀବନ ମଧ୍ୟକୁ ସେ ଆତଯାତ କରୁଛି । ବ୍ରହ୍ମ ଏହି ନିତ୍ୟଲୀଳା ବିହାରରେ ନାମ ହେଉଛି ସତ୍ୟ, ଏହି ନାମ ହେଉଛି ତାହାର ବିଜେସ୍ଥଳୀ । ତେଣୁ ସେ ନାମ ରୂପକ ବ୍ରହ୍ମକୁ ନିଜ ଗଳାର ହାର କରି ଝୁଲାଇ

ଦେଲେ । ସଭିଙ୍କୁ ସମଦୃଷ୍ଟିରେ ଦେଖିବା ଓ ଆଦର କରିବା ପାଇଁ ସେ ଜଗତକୁ ନିଜର ବାଣୀ ଶୁଣାଇ ଥିଲେ । ପରମ ସିଦ୍ଧ ଗୌତମ ବୁଦ୍ଧଙ୍କ ଅହିଂସାର ବାଣୀକୁ ସେ ପୁଣି ଥରେ ଶୁଣାଇଦେଲେ ସମାଜରେ ହିଂସାବାଦର ବିଭେଦ ବେଳେ, ପବିତ୍ରତା ଓ ଭକ୍ତି କହିଲେ ସମସ୍ତଙ୍କୁ ଭଲପାଇ ଆପଣେଇନବା ହିଁ ଦିବ୍ୟଦର୍ଶନ ଓ ତାଙ୍କର ଧର୍ମମତ ।

ବହୁଜନ ଆଦୃତ ସନ୍ଥ ଅରକ୍ଷିତଙ୍କୁ ଶହ ଶହ ଭକ୍ତ ତାଙ୍କର ଦିବ୍ୟଗୁଣର କୀର୍ତ୍ତନ କରୁଥିବା ବେଳେ କେନ୍ଦ୍ରାପଡ଼ାସ୍ଥ କଣ୍ଟିଆ ଆଶ୍ରମର ଭକ୍ତ ମଧୁଦାସଙ୍କୁ ସେ ତାଙ୍କର ଏକମାତ୍ର ଶିଷ୍ୟ ରୂପରେ ଗ୍ରହଣ ଦୀକ୍ଷା ପ୍ରଦାନ କରିଥିଲେ । ତାହା ମଧ ଏକ ଅଲୌକିକ ଘଟଣାରେ ରସାପ୍ଲୁତ । ଭକ୍ତ ମଧୁଦାସ ସନ୍ଥ ଅରକ୍ଷିତ ଦାସଙ୍କଠାରୁ ଶିଷ୍ୟତ୍ୱର ଦୀକ୍ଷା ନେବାକୁ ବାରମ୍ୱାର ଅନୁରୋଧ କରନ୍ତେ, ଅରକ୍ଷିତ ତାଙ୍କୁ ଶିଷ୍ୟ କରିବାକୁ ନାସ୍ତିବାଣୀ ଶୁଣାଇଦେଲେ । ଶେଷରେ ଭକ୍ତ ମଧୁଦାସ ନିଷ୍ପତ୍ତି କଲେ ଯେ ସେ ଆତ୍ମହତ୍ୟା କରିବେ । ଏହି ନିଷ୍ପତ୍ତିରେ ଉପନୀତ ହୋଇ ମଧୁଦାସ ତାଙ୍କ ଗୁରୁ ଅରକ୍ଷିତଙ୍କୁ ବୃକ୍ଷତଳେ ବସିବାର ଦେଖି, ଅରକ୍ଷିତଙ୍କ ସାଧନାର ଅନ୍ଧକାର ଆବର୍ତ୍ତ ମଧକୁ ଆତ୍ମହତ୍ୟା ପାଇଁ ଡେଇଁ ପଡନ୍ତେ ଗହ୍ୱର ମଧରୁ ସନ୍ଥ ଅରକ୍ଷିତ ଆବିର୍ଭାବ ହୋଇ ମଧୁଦାସଙ୍କୁ ଧରି ପକାଇଲେ ଓ ଆତ୍ମହତ୍ୟାରୁ ନିବୃତ୍ତ କରି କହିଲେ –: 'ଯାଅ ମଧୁ ! ତୁମେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛ । ମୁଁ ତୁମକୁ ଶିଷ୍ୟ ରୂପେ ଗ୍ରହଣ କଲି' । ସେତିକି ମାତ୍ର ଆଶୀର୍ବାଦରେ ମଧୁଦାସ ଅରକ୍ଷିତଙ୍କ ଭଳି ପରମ ଶକ୍ତିମାନ ସନ୍ଥରୂପେ ପ୍ରତିଷ୍ଠା ଅର୍ଜନ କଲେ । ବ୍ରହ୍ମମୟ ବ୍ରହ୍ମାଣ୍ଡର ସୂକ୍ଷ୍ମ ବ୍ରହ୍ମସତ୍ତା ସହ ସନ୍ଥ ଅରକ୍ଷିତଙ୍କ ସମ୍ପର୍କ ଥିଲା । ସେ ସର୍ବମୟ ଓ ସର୍ବଶକ୍ତିମାନ ବ୍ରହ୍ମପୁରୁଷ ଭାବରେ ଅନେକ ଜନ୍ମ ଅତିକ୍ରମ କରିଛନ୍ତି । କେତେବେଳେ ଗୁରୁନାନକ ତ କେତେବେଳେ ରେଣ୍ଟା ଉପବନର ତପସ୍ୱୀ ଭାବରେ ଜନ୍ମଲାଭ କରିଥିଲେ ଓ ଦୁଃଖୀ ମଣିଷର ଆର୍ତ୍ତ ନିବାରଣ କରୁଥିଲେ ।

୧୮୩୫ ମସିହା ପବିତ୍ର ମାଘ କୃଷ୍ଣ ଏକାଦଶୀ ତିଥିରେ ମହାନ୍ ସନ୍ଥ ଶୂନ୍ୟଦେହୀ, ସିଦ୍ଧସାଧକ ବ୍ରହ୍ମଦର୍ଶୀ, ନାମ ବ୍ରହ୍ମର ସାଧକ ସନ୍ଥ ଅରକ୍ଷିତ ଦାସ ଇହଲୀଳାରୁ ନିର୍ବାଣ ନେବାକୁ ମନସ୍ଥ କଲେ । ଭକ୍ତମାନଙ୍କ ଗହଣରେ ସ୍ୱଦେହରେ ସମାଧିସ୍ଥ ହେଲାବେଳେ ମହାରଣା ବଂଶର ଜଣେ ମହିଳା ଭକ୍ତଙ୍କ ଅତିଶୟ ଦୁଃଖକୁ ଦେଖି ତାଙ୍କ ପ୍ରତି ଦୟା କରି ନିଜ ମଥାରୁ ଏକ କେଶ ଉପାଡି ତାଙ୍କ ହାତକୁ ଦାନ କରିଦେଇ କହିଥିଲେ –: 'ନେ ଏହାକୁ ସାଇତି ରଖ ତୋ ପାଖରେ । ଏହା ମୋର ଜୀବନ୍ତ ପ୍ରକାଶ ହୋଇରହିବ । ଏଇଥିରେ ଶ୍ରଦ୍ଧା କରିବୁ, ଭକ୍ତି କରିବୁ ଏବଂ ଏହିଥିରେ ମୋର ସାନ୍ନିଧ ଲାଭ କରିବୁ' । ଏହାପରେ ସେ ମହାନିର୍ବାଣ ପ୍ରାପ୍ତ ହେଲେ । ଆଜକୁ ପ୍ରାୟ ୧୭୫ ବର୍ଷ ତଳର ଘଟଣା ।

ସେହି ଜୀବନ୍ତ କେଶଟି ଆଜି ମଧ ପୁତ୍ର ପୌତ୍ରାଦି କ୍ରମେ ସେହି ଲଳିତଗିରି ଗ୍ରାମର କଳ୍ପତରୁ ମହାରଣା ଓ ବଳରାମ ମହାରଣାଙ୍କ ଘରେ ପୂଜା ପାଉଅଛି । କେଶଟି ବଢ଼ି ବଢ଼ି ଏକ ବର୍ତ୍ତୁଳାକାର ଅବସ୍ଥାରେ ଫରୁଆ ଭିତରେ ଶୋଭା ପାଉଛି । ପ୍ରତିବର୍ଷ ତାଙ୍କର ଏହି ମହାନିର୍ବାଣ ତିଥିରେ ମାଘମାସ କୃଷ୍ଣ ଦଶମୀ ରାତ୍ରିରେ ଏହି କେଶ ଫରୁଆଟି ବିମାନରେ ସଜ୍ଜିତ ହୋଇ ସମାଧି ପୀଠକୁ ଆସେ ଓ ଏକାଦଶୀ ତିଥିରେ ଫେରିଯାଏ । ଏଇଥିରୁ ମନେହୁଏ ସନ୍ଥ ଅରକ୍ଷିତଙ୍କର ଅବର୍ତ୍ତମାନ ଘଟିନାହିଁ । ସେ ତାଙ୍କର ସ୍ଥୂଳ ଶରୀର ତ୍ୟାଗ କରିଛନ୍ତି ମାତ୍ର ତାଙ୍କର ସୂକ୍ଷ୍ମ ଶରୀର ସୃଷ୍ଟିର ମଙ୍ଗଳ ପାଇଁ ଅହରହ କାର୍ଯ୍ୟରତ । ଏହି ଜୀବନ୍ତ କେଶ ପିଣ୍ଡୁଳାଟି ଉକ୍ତ ସ୍ୱୀକାରୋକ୍ତିର ପ୍ରମାଣ ଓ ଉତ୍ତରାଧିକାରୀ ଅଟେ ।

ଆମ ଧର୍ମର ଏହି ସନାତନ ତତ୍ତ୍ୱରେ ଯୁଗ ଯୁଗ ଧରି ସଂସ୍କାର କାର୍ଯ୍ୟ ଅବ୍ୟାହତ ରହିଛି । ସୂକ୍ଷ୍ମ ସତ୍ତାଧାରୀ ଏହି ଶୂନ୍ୟପୁରୁଷ ସାରା ଜଗତର ପରିପୂର୍ଣ୍ଣତା ରକ୍ଷା କରିବାରେ ଲାଗିଥିଲା ବେଳେ ସାମାଜିକ ଜୀବନରେ ଆଚାର ଓ ବିଚାର ପାଇଁ ନିଜେ ବେଳେବେଳେ ଆବିର୍ଭାବ ହୁଅନ୍ତି । କାଳର କାଳିମାକୁ ସଫାକରି ଦିଅନ୍ତି ।

ମହାତ୍ମା ସନ୍ଥ ଅରକ୍ଷିତ ଅବଧୂତଙ୍କ ଆତ୍ମା ଭିତରେ ଏହି ସତ୍ତା ଯେ ପୂର୍ଣ୍ଣମାତ୍ରାରେ ବିରାଜମାନ କରିଥିଲା, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ସେଥିପାଇଁ ସେ ଶରୀର ସହ ଆତ୍ମାକୁ ମିତଣୀ କରି ଲେଖିଥିଲେ :– 'ଦିନେ ଯୁଗଳ ଲୀଳା ଭାଙ୍ଗିବ, ଦିନେ ରାହାସ ଲୀଳା ଭାଙ୍ଗିବ ସଜନୀ ! ଦାରୁଣ ଦଇବ । ବାଟ ଡକେଇତ ବାଟରେ ବସିଛି ତତେ ଛାଡ଼ି ମତେ ନେବ । ତୁ ମୁଁ ଯଦି ଏକାଠି ହୋଇବା ଡକେଇତ କି କରିବ ? ମିତଣୀ ! ଦାରୁଣ ଦଇବ' ! ଏଇଥିରୁ ମନେହୁଏ ଶୂନ୍ୟପୁରୁଷ ଆତ୍ମାକୁ ସେ ନିଜ ଶରୀରର ମଧ୍ୟରେ ଠାବ କରିଥିଲେ ଓ ଆତ୍ମାର ବିଶ୍ୱମୟ ଦିବ୍ୟଲୀଳା ମଧ୍ୟରେ ନିଜ ସ୍ଥୂଳ ଶରୀରକୁ ଲୀନ କରିଦେଇଥିଲେ । ଶରୀର ମଧ୍ୟରେ ଆତ୍ମା ଦର୍ଶନ କରୁଥିବା ମହାପୁରୁଷ ହିଁ ବ୍ରହ୍ମଦର୍ଶୀ । ତେଣୁ ଅବଧୂତ ସନ୍ଥ ଅରକ୍ଷିତ ଯେ ବ୍ରହ୍ମଠାରୁ ଭିନ୍ନ ନଥିଲେ ଏହାକୁ ସ୍ୱୀକାର କରିବାକୁ ହେବ । ଭୌତିକଜଗତ ସହିତ ସୂକ୍ଷ୍ମ ଜଗତର ଏକ ଆନନ୍ଦମୟ ସମ୍ବନ୍ଧ ସ୍ଥାପନରେ ସେ ଥିଲେ ନର ଦେହରେ ନାରାୟଣ ।

ସନ୍ଥ ଅରକ୍ଷିତଙ୍କର ଅନେକ ଅଲୌକିକ କୃତି ସମ୍ପର୍କରେ ମୁଁ ସବିଶେଷ ଆଲୋଚନା କରିପାରିନାହିଁ । ସଂସାରୀ ଜୀବନର ଅନ୍ଧକାର ଭିତରୁ ପରମାର୍ଥର ଆଲୋକ ଦେଖିବା କଷ୍ଟ । ତେଣୁ ଏଭଳି ଏକ ବ୍ୟାପକ ତତ୍ତ୍ୱର ସବିଶେଷ ଅଧ୍ୟାୟକୁ ଆହୁରି ସୁଦୂରପ୍ରସାରୀ କରିବା ପାଇଁ ବିସ୍ତୃତ ଗବେଷଣା ଓ ଆଲୋଚନା ଆବଶ୍ୟକ ।

ଆଜି ଓଳାଶୁଣୀ ପୀଠର ଉପରି ଭାଗ ଆଉ ସେମିତି ସୁପ୍ତ ଅବସ୍ଥାରେ ନାହିଁ । ଆଧୁନିକତାରେ ଏହା ବେଶ୍ ବର୍ଣ୍ଣାଢ଼୍ୟ ଓ ସୁଦୃଶ୍ୟ ସ୍ଥଳୀ । ଏଥିରେ କେତେ ଭକ୍ତି ଓ ସମାଜ ସଂସ୍କାର ପାଇଁ ସୁଗୁଣ ନିହିତ ଅଛି, ତାହା ଅନ୍ତର୍ଯ୍ୟାମୀ ମହାପୁରୁଷ ଅରକ୍ଷିତଙ୍କୁ ଜଣା । ତେବେ ଏହାର ପାଦଦେଶରୁ ସମାଧିସ୍ଥଳ ଯାଏଁ ବିଭିନ୍ନ ବୃକ୍ଷରାଜିରେ ଓ ଚିତ୍ତାକର୍ଷକ ଦୃଶ୍ୟରାଜିରେ ସୁଶୋଭିତ କଲେ ପର୍ଯ୍ୟଟକମାନଙ୍କ ବେଶ୍ ଦୃଷ୍ଟି ଆକର୍ଷଣ ହୋଇପାରନ୍ତା । ଜନସାଧାରଣଙ୍କ ନିଷ୍ପାପର ଉଦ୍ୟମ ଓ ସରକାରଙ୍କର ଆନ୍ତରିକ ସାହାଯ୍ୟ ଏଥିପାଇଁ ପଥ ପ୍ରଦର୍ଶନ କରିବ । ପରିଶେଷରେ ବ୍ରହ୍ମଦର୍ଶୀ ସନ୍ଥ ଅରକ୍ଷିତଙ୍କୁ ପ୍ରଣାମ ଜଣାଇ ମୁଁ ମୋର ପ୍ରବନ୍ଧର ପରିସମାପ୍ତି କରୁଅଛି ।

ଗ୍ରାମ – ଅକରପଡା, ପୋଷ୍ଟ – ନଳୀପୁର
ଭାୟା – ବାଲିଚନ୍ଦ୍ରପୁର, ଥାନା – ମାହାଙ୍ଗା
ଜିଲ୍ଲା – କଟକ-୭୫୪୨୦୫



# ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଓଡ଼ିଆ ପ୍ରୀତି

**ପବିତ୍ର ମୋହନ ବାରିକ**

ଭାରତୀୟ ସ୍ୱାଧୀନତା ସଂଗ୍ରାମରୂପକ ରୋମାଞ୍ଚକର ନାଟକର ମହାନାୟକ ହେଉଛନ୍ତି ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ବିଶ୍ୱ ବିସ୍ମୟ ବିପ୍ଳବୀ ନେତାଜୀ ସୁଭାଷ ଥିଲେ ଅଦମ୍ୟ ସାହସୀ, ଅଲଘଂନୀୟ ଶକ୍ତି, ଅସୀମ ସାମର୍ଥ୍ୟ, ଅପରାଜେୟ ବୀରତ୍ୱ, ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ, ପ୍ରଚଣ୍ଡ ସ୍ୱାଭିମାନୀ ଓ ଦୃଢ଼ ସଂକଳ୍ପର ଏକ ଜୀବନ୍ତ ଆଗ୍ନେୟଗିରି । ତାଙ୍କ ସିଦ୍ଧି, ସାଧନା, ବଳିଦାନ, ତ୍ୟାଗ, ସେବା ଓ ଦେଶଭକ୍ତିର ଉଦାହରଣ ବିଶ୍ୱ ଇତିହାସରେ ବିରଳ । ଶାଶ୍ୱତ ଦେଶପ୍ରେମ, ପ୍ରଜ୍ଞାସଂପନ୍ନ ଆଦର୍ଶବାଦ, ବୌଦ୍ଧିକ ବିଚାରଧାରାର ସେ ଥିଲେ ଏକ ସୃଜନଶୀଳ ଯଶସ୍ୱୀ ପ୍ରତିଭା । ସାମ୍ରାଜ୍ୟବାଦୀ ଶକ୍ତିକୁ ଶକ୍ତ ଧକ୍କା ଦେବାରେ ସେ ଥିଲେ ସିଦ୍ଧହସ୍ତ । ତାଙ୍କ କୃତିତ୍ୱ, ବ୍ୟକ୍ତିତ୍ୱ ଓ ନେତୃତ୍ୱର ଚରମ ପରାକାଷ୍ଠା ତାଙ୍କୁ ନେତାଜୀ ରୂପେ ମାନତ୍ୟ ପ୍ରଦାନ କରି ବିଶ୍ୱ ବନ୍ଦନୀୟ କରିଅଛି । ତାଙ୍କ ଆତ୍ମୋତ୍ସର୍ଗ ଓ ବଳିଦାନ କାଳଜୟୀ ଇତିହାସର ଇତିକଥାରେ ଏକ ସ୍ୱର୍ଣ୍ଣାଭ ଅଧ୍ୟାୟ । ନେତାଜୀଙ୍କ ସଂଘର୍ଷମୟ ସଂଗ୍ରାମୀ ଜୀବନ ସୃଷ୍ଟି କରେ ଅସରନ୍ତି ଶିହରଣ ଓ ଉଦ୍ଦୀପନା ଏବଂ ପ୍ରଦାନ କରେ ଅଫୁରନ୍ତ ଉତ୍ସାହ ଓ ପ୍ରେରଣା । ସୁଭାଷ ଚନ୍ଦ୍ର ବୋଷଙ୍କର ଜନ୍ମ ୧୮୯୭ ମସିହା ଜାନୁଆରୀ ୨୩ ତାରିଖ ଐତିହ୍ୟ ଓ ସଂସ୍କୃତିସଂପନ୍ନ କଟକର ଓଡ଼ିଆ ବଜାରରେ । ଖ୍ୟାତନାମା ଆଇନ୍‌ଜୀବୀ କଟକ ନଗର ନିଗମର ପ୍ରଥମ ଚେୟାରମ୍ୟାନ୍, ସମାଜସେବୀ, ଜାନକୀ ନାଥ ବୋଷ ଥିଲେ ନେତାଜୀଙ୍କର ପୂଜ୍ୟସ୍ପଦ ପିତା ଓ ତାଙ୍କ ସ୍ନେହମୟୀ ମାତା ଥିଲେ ପ୍ରଭାବତୀ ଦେବୀ । ନେତାଜୀଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଥିଲା ୧୯୦୨ ମସିହା କଟକ ମିଶନାରୀ ବିଦ୍ୟାଳୟରେ । ଉକ୍ତ ଅନୁଷ୍ଠାନରେ ଅଣ ଇଂରେଜ ବିଦ୍ୟାର୍ଥୀମାନଙ୍କ ପ୍ରତି ପାତରଅନ୍ତର ନୀତି କୋମଳମତି ବାଳକ ସୁଭାଷଙ୍କ ମନରେ ଗଭୀର ପ୍ରତିକ୍ରୀୟା ସୃଷ୍ଟି କରିଥିଲା । ସେ ପ୍ରଥମେ ଅନୁଭବ କଲେ ଇଂରେଜମାନେ ଭାରତୀୟମାନଙ୍କୁ ନୀଚ ଦୃଷ୍ଟିରେ ବିବେଚନା କରୁଛନ୍ତି । ପରବର୍ତ୍ତୀ ସମୟରେ ସେ ୧୯୦୯ ମସିହାରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲେ । ବହୁ ପ୍ରତିଷ୍ଠିତ ଓଡ଼ିଆ ବ୍ୟକ୍ତିତ୍ୱ ନେତାଜୀଙ୍କର ସହପାଠୀ ଥିଲେ ଉକ୍ତ ବିଦ୍ୟାଳୟରେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ବେଣୀ ମାଧବ ଦାସଙ୍କ ଆଦର୍ଶ ତାଙ୍କୁ ଗଭୀର ଭାବରେ ଅନୁପ୍ରାଣୀତ କରିଥିଲା । ଯାହା ଦ୍ୱାରା ସେ ଜଣେ ଚରିତ୍ରବାନ, ବିନୟୀ, ମେଧାବୀ କର୍ତ୍ତବ୍ୟନିଷ୍ଠ, ବାଗ୍ମୀ ଓ ଶୃଙ୍ଖଳିତ ଛାତ୍ର ରୂପେ ସୁନାମ ଅର୍ଜନ କରିଥିଲେ । ସେ ଜଣେ ଦକ୍ଷ ଛାତ୍ର ସଂଗଠକ ଥିଲେ । ତାଙ୍କ ନେତୃତ୍ୱରେ ଛାତ୍ରମାନେ ବିପ୍ଳବୀ ବୀର ଶହୀଦ୍ ଖୁଦିରାମ ବୋଷଙ୍କ ଫାଶୀ ଦିବସର ସ୍ମୃତି ଚାରଣ କରନ୍ତି । ଛାତ୍ର ଜୀବନରୁ ସୁଭାଷ ନିଜ ଦେଶପ୍ରେମର ଚରମ ନିଦର୍ଶନ ପ୍ରଦାନ କରିଥିଲେ । ୧୯୧୩ ମସିହାରେ ସମଗ୍ର



ବିଶ୍ୱବିଦ୍ୟାଳୟରେ ତୃତୀୟ ସ୍ଥାନ ଅଧିକାର କରିବା ପୂର୍ବକ କଲିକତା ପ୍ରେସିଡେନ୍‌ସି କଲେଜରେ ଅଧ୍ୟୟନ କଲେ ।

ଓଡ଼ିଶାରେ ଜନ୍ମିତ ନେତାଜୀ ସୁଭାଷଙ୍କର ଥିଲା ଓଡ଼ିଶା ପ୍ରତି ଭାବଗତ, ଆତ୍ମିକ ଓ ଆବେଗିକ ସଂପର୍କ । ଓଡ଼ିଶାର ମାଟି, ପାଣି, ପବନରେ ଶୈଶବ ଓ କିଶୋର ବୟସ ଅତିବାହିତ କରିଥିଲେ ନେତାଜୀ । ଓଡ଼ିଶା ସହିତ ଥିଲା ତାଙ୍କର ସମ୍ବନ୍ଧ ଅତିନିବିଡ଼ ଓ ଘନିଷ୍ଠ । ଓଡ଼ିଶାର ଐତିହ୍ୟ, ସଂସ୍କୃତି, ପରମ୍ପରା ଓ ଜନଜୀବନ ସହିତ ସେ ଥିଲେ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଓଡ଼ିଶା କେବଳ ତାଙ୍କର ଜନ୍ମଭୂମି ନଥିଲା, ଥିଲା ତାଙ୍କର ଶିକ୍ଷା, ଦୀକ୍ଷା, ସାଧନାର ଭୂମି । ଚପଳମତି ସରଳ ସୁଭାଷରୁ ବିପ୍ଳବର ଅଗ୍ନିଶିଖା ନେତାଜୀ ସୁଭାଷରେ ପ୍ରତିଷ୍ଠିତ କରିବାରେ ପ୍ରକ୍ରିୟା ପବିତ୍ର ଓଡ଼ିଶା ମାଟିରୁ ଆରମ୍ଭ ହୋଇଥିଲା । ଓଡ଼ିଶାର ୧୮୧୭ ମସିହାର ଐତିହାସିକ ପାଇକ ବିଦ୍ରୋହ, ୧୮୫୭ ମସିହାର ପ୍ରଥମ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଭୂମିକା ଓ ଓଡ଼ିଆ ସଂଗ୍ରାମୀ ବୀରମାନଙ୍କର ଅମରଗାଥା ନେତାଜୀଙ୍କ ସଂଗ୍ରାମୀ ଜୀବନକୁ ନିଶ୍ଚିତ ଭାବରେ ପ୍ରଭାବିତ କରିଥିବ, ଏହା ନିଃସନ୍ଦେହ । ସେବାର ମହାମନ୍ତ୍ରରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢୁଥିବା ସମୟରେ କଟକରେ ହଇଜା ପ୍ରାଦୁର୍ଭାବ ଦେଖାଦେଇଥିଲା । ସୁଭାଷ ଚନ୍ଦ୍ର ବୋଷ ନିଜ ସହପାଠୀମାନଙ୍କୁ ନେଇ ଏକ ସ୍ୱେଚ୍ଛାସେବୀ ଦଳ ଗଠନ କରି ହଇଜା ଆକ୍ରାନ୍ତ ରୋଗୀମାନଙ୍କର ସେବା କରୁଥିଲେ । ସେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ପ୍ରଧାନ ଶିକ୍ଷକ ଥିଲେ ବେଣୀ ମାଧବ ଦାସ । ତାଙ୍କ ଆକର୍ଷଣୀୟ ବ୍ୟକ୍ତିତ୍ୱ ସୁଭାଷ ଚନ୍ଦ୍ର ବୋଷଙ୍କ ଜୀବନରେ ଗଭୀର ପ୍ରଭାବ ପକାଇଥିଲା । ଶିକ୍ଷକ ବେଣୀ ମାଧବ ଦାସ ଥିଲେ ତାଙ୍କ ଜୀବନର ପରମ ବନ୍ଧୁ, ଦାର୍ଶନିକ ଓ ମାର୍ଗଦର୍ଶକ । ରେଭେନ୍ସା କଲେଜିଏଟ୍ ସ୍କୁଲରୁ ବେଣୀ ମାଧବ ଦାସ ବଦଳି ହୋଇ ଯିବାରୁ ସୁଭାଷଙ୍କ ହୃଦୟରେ ଗଭୀର ଦୁଃଖ ସୃଷ୍ଟି ହୋଇଥିଲା । ନେତାଜୀ ସୁଭାଷ ତାଙ୍କ ଆତ୍ମ ଜୀବନୀରେ ଉଲ୍ଲେଖ କରିଛନ୍ତି, ବେଣୀ ମାଧବ ଦାସଙ୍କ ବିଦ୍ୟାଳୟରୁ ବଦଳି ପରେ ମଧ୍ୟ ସେ ତାଙ୍କ ନିକଟକୁ ନିୟମିତ ଚିଠି ଲେଖୁଥିଲେ । ବେଣୀ ମାଧବ ଦାସ ସୁଭାଷଙ୍କ ହୃଦୟରେ ପ୍ରକୃତି ପ୍ରେମ ଭାବନା ସୃଷ୍ଟି କରିଥିଲେ । ସେ ପ୍ରକୃତିରୁ ବନ୍ଧୁତା, ମାନବିକତା ଓ ସେବାର ମହତ୍ତ୍ୱକୁ ଉପଲବ୍ଧି କରିଥିଲେ । ଛୁଟିଦିନମାନଙ୍କରେ ସେ କାଠଯୋଡ଼ି ନଦୀ କୂଳରେ ବସି ଅପରୂପ ସୌନ୍ଦର୍ଯ୍ୟକୁ ଅନୁଭବ କରୁଥିଲେ ପୁଣି କେତେବେଳେ ନରାଜ ପାହାଡ଼ର ମନୋଲୋଭା ଦୃଶ୍ୟରେ ନିଜକୁ ହଜାଇ ଦେଉଥିଲେ ।

ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ବଳିଷ୍ଠ ଓ ସଫଳ ନେତୃତ୍ୱକୁ ସ୍ୱୀକାର କରି ତାଙ୍କ ତତ୍ତ୍ୱାବଧାନରେ ଦେଶ ସେବା କାର୍ଯ୍ୟପାଇଁ ସୁଭାଷ ବୋଷ ନିଷ୍ପତ୍ତି ନେଲେ । ଚିତ୍ତ ରଞ୍ଜନ ଦାସ ତାଙ୍କୁ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ପ୍ରଚାର ସ୍ୱେଚ୍ଛା ସେବକ ବାହିନୀର ଦାୟିତ୍ୱ ଅର୍ପଣ କରିଥିଲେ । ସୁଭାଷ ଚନ୍ଦ୍ର ବୋଷ ଅନେକ ରଚନାତ୍ମକ ଓ ବୈପ୍ଳବିକ ଆନ୍ଦୋଳନ ଆରମ୍ଭ କରିଥିଲେ । ୧୯୨୪ ମସିହା ମଧ୍ୟଭାଗ ବେଳକୁ ସମଗ୍ର ବଙ୍ଗ ପ୍ରଦେଶରେ ସ୍ୱରାଜ୍ୟ ଦଳ ଓ ଏହାର ନେତା ଚିତ୍ତ ରଞ୍ଜନ ଦାସ ଏବଂ ଯୁବ ନେତା ସୁଭାଷ ଚନ୍ଦ୍ର ବୋଷଙ୍କ ପ୍ରତି ଶ୍ରଦ୍ଧା ଓ ସମର୍ଥନ ବହୁମାତ୍ରାରେ ବୃଦ୍ଧି ପାଇଥିଲା । ଇଂରେଜ ସରକାରଙ୍କ ବିରୁଦ୍ଧରେ ବୈପ୍ଳବିକ ଷଡ଼ଯନ୍ତ୍ର ସୁଭାଷ ବୋଷଙ୍କ ନେତୃତ୍ୱରେ ଆରମ୍ଭ ହେଉଥିବାର ଆଶଙ୍କା କରି ଇଂରେଜ କର୍ତ୍ତୃପକ୍ଷ ତାଙ୍କୁ ଦ୍ୱିତୀୟଥର ପାଇଁ ଗିରଫ କଲେ । ୧୯୨୪ ମସିହାରେ ତାଙ୍କୁ ଗିରଫକରି ଇଂରେଜ ସରକାର ବର୍ମାର ମାଣ୍ଡାଲେ ଜେଲ୍‌ରେ ଅବସ୍ଥାପିତ କରିଥିଲେ । ସେହି ମାଣ୍ଡାଲେ ଜେଲ୍‌ରେ ପୂର୍ବରୁ ଲୋକମାନ୍ୟ ବାଲ୍ ଗଙ୍ଗାଧର ତିଳକ୍ ଓ ପଞ୍ଜାବକେଶରୀ ଲାଲା ଲଜପତ୍ ରାୟ ଏକ ବର୍ଷ ପାଇଁ ରହିଥିଲେ । ସେଥିପାଇଁ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ନିଜକୁ ଗୌରବାନ୍ୱିତ ମନେକରୁଥିଲେ । କହିବା ବାହୁଲ୍ୟ ଯେ ୧୯୨୪ରୁ ୧୯୨୭ ମସିହା ପର୍ଯ୍ୟନ୍ତ ତିନିବର୍ଷ ସୁଭାଷ ବୋଷ ବର୍ମାର ମାଣ୍ଡାଲେ ଜେଲ୍‌ରେ ରହିଥିବା ସମୟରେ ସେ ନିଜର ଆତ୍ମୀୟସ୍ୱଜନ ଓ ସତୀର୍ଥ ବିଶିଷ୍ଟ ବ୍ୟକ୍ତିମାନଙ୍କ ନିକଟକୁ ପତ୍ର ଲେଖୁଥିଲେ ଓ ତାଙ୍କ ପାଖକୁ ଆସୁଥିବା ପତ୍ରର ଉତ୍ତର ଦେଉଥିଲେ । ଏହି ପତ୍ରଗୁଡ଼ିକ ମଧ୍ୟରୁ ୮୩ ପତ୍ର ସଂଗୃହିତ ହୋଇଅଛି । ଏଥିମଧ୍ୟରୁ ସେ ଉତ୍କଳମଣି

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନିକଟକୁ ଲେଖିଥିବା ତିନିଖଣ୍ଡ ପତ୍ର ମିଳିଛି । ଗୋପବନ୍ଧୁ ତାଙ୍କ ନିକଟକୁ ଯେଉଁ ସବୁ ପତ୍ର ଲେଖିଥିଲେ ସେଗୁଡ଼ିକ ମିଳିନାହିଁ ।

ଉତ୍କଳମଣିଙ୍କୁ ଶ୍ରଦ୍ଧା, ସମ୍ମାନ ଓ ଭକ୍ତି କରୁଥିଲେ ନେତାଜୀ । ଉଭୟଙ୍କ ମଧ୍ୟରେ ଥିଲା ନିବିଡ ଆନ୍ତରିକ ଭଲ ପାଇବା । ଗୋପବନ୍ଧୁ ଦାସଙ୍କ ସହିତ ନେତାଜୀ ସୁଭାଷ ବୋଷଙ୍କର ପରିବାରର ସମ୍ପର୍କ ଥିଲା ଅତି ଉତ୍ତମ । ସାକ୍ଷୀଗୋପାଳସ୍ଥିତ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜାତୀୟ ବନ ବିଦ୍ୟାଳୟର ପରିଚାଳନା ସହିତ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପିତା ଜାନକୀ ନାଥ ବୋଷ ସଂପୃକ୍ତ ଥିଲେ । ଓଡିଶାର ବନ୍ୟା ପରିସ୍ଥିତି, ଗଞ୍ଜାମ ଜିଲ୍ଲା ଓଡ଼ିଶାରେ ମିଶିବା ପ୍ରସଙ୍ଗ, ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଉତ୍କଳ ଟ୍ୟାନେରୀ ଯୋତା କାରଖାନାର ଦୁର୍ଦ୍ଦଶା ଓ ଅନ୍ୟାନ୍ୟ ରାଜନୈତିକ ବିଷୟବସ୍ତୁ ଉପରେ ଉଭୟ ନେତାଜୀ ଓ ଉତ୍କଳମଣିଙ୍କ ମଧ୍ୟରେ ପତ୍ର ମାଧ୍ୟମରେ ଭାବର ଆଦାନ ପ୍ରଦାନ ହେଉଥଲା । ଗୋପବନ୍ଧୁ ସୁଭାଷ ବୋଷଙ୍କ ନିକଟକୁ ତ୍ରିଭାଷୀ, ବର୍ଣ୍ଣବୋଧ, ଶିଶୁବୋଧ, ପିଲାଙ୍କ ମହାଭାରତ ପ୍ରଭୃତି ପୁସ୍ତକ ପଠାଇଥିଲେ । ଗୋଇନ୍ଦା ଅଫିସରଙ୍କ ଦ୍ୱାରା ବହିଗୁଡିକ ଯାଞ୍ଚ କରାଯାଉଥିବାରୁ ତାଙ୍କୁ ମିଳିବାରେ ବିଳମ୍ୱ ହେଉଥିଲା । ଏକଥା ନେତାଜୀ ପତ୍ର ମାଧ୍ୟମରେ ଗୋପବନ୍ଧୁଙ୍କୁ ଜଣାଇ ଥିଲେ । ଗୋପବନ୍ଧୁ ଦାସ କଲିକତା ଶ୍ରମିକ ଆନ୍ଦୋଳନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରୁଥିଲେ । ସେଠାରେ କାମ କରୁଥିବା ହଜାର ହଜାର ଓଡିଆଙ୍କୁ ଏକତ୍ରୀତ କରି ସେମାନଙ୍କୁ ଶୋଷଣ ଓ କଷଣରୁ ମୁକ୍ତି କରିବାକୁ ସେ ପ୍ରବାସୀ ଓଡିଆ ଶ୍ରମଜୀବୀ ନାମରେ ଏକ ଶ୍ରମିକ ସଂଗଠନ ପ୍ରତିଷ୍ଠା କରିଥିଲେ । ଓଡିଆମାନଙ୍କର ସ୍ୱାର୍ଥରକ୍ଷା ଓ ସେମାନଙ୍କ ହକ୍ ପାଇଁ ଲଢ଼ିବା ନେଇ ଗୋପବନ୍ଧୁ ଯେଉଁ ପ୍ରୟାସ ଆରମ୍ଭ କରିଥିଲେ ସେ ବିଷୟରେ ସୁଭାଷ ଚନ୍ଦ୍ର ବୋଷ ବେଶ୍ ଅବଗତ ଥିଲେ । ସେସମୟରେ ସୁଭାଷ କଲିକତାରେ ରହୁଥିଲେ । ଗୋପବନ୍ଧୁଙ୍କ ଆନ୍ଦୋଳନ ପ୍ରତି ତାଙ୍କର ପୂର୍ଣ୍ଣ ସମର୍ଥନ ଥିଲା । ୧୯୨୪ ଅଗଷ୍ଟ ୧୫ରେ ସୁଭାଷଙ୍କ କଲିକତା ବାସଭବନରେ ପ୍ରବାସୀ ଓଡିଆ ଶ୍ରମଜୀବୀ ସଂଗଠନର କାର୍ଯ୍ୟକାରୀ ବୈଠକ ଅନୁଷ୍ଠିତ ହୋଇଥିଲା । ଏଥିରେ ଗୋପବନ୍ଧୁ ଦାସ ଅଧ୍ୟକ୍ଷତା କରିଥିଲେ । ସେହି ବର୍ଷ ସେପ୍ଟେମ୍ବର ମାସରେ କଲିକତାର ହରିଶ ପାର୍କରେ ଅନୁଷ୍ଠିତ ଏକ ସଭାରେ ଓଡିଆ ଶ୍ରମିକମାନଙ୍କର ସ୍ୱାର୍ଥରକ୍ଷା ପାଇଁ ସମସ୍ତ ସାହାଯ୍ୟ ସହଯୋଗ ଯୋଗାଇ ଦେବାପାଇଁ ସୁଭାଷ ଚନ୍ଦ୍ର ବୋଷ ଗୋପବନ୍ଧୁ ଦାସଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ଏହି ଅବସରରେ ସୁଭାଷ ଚନ୍ଦ୍ର ବୋଷ ଓଡିଆ ଶ୍ରମିକମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ୧୯୨୭ ମସିହା ମଇ ମାସରେ ନେତାଜୀ ବର୍ମାର ମାଣ୍ଡାଲେ ଜେଲରୁ ମୁକ୍ତି ହେଲେ ଏବଂ ଜାତୀୟ କଂଗ୍ରେସର କାର୍ଯ୍ୟକ୍ରମରେ ସକ୍ରିୟ ଭାବେ ଅଂଶ ଗ୍ରହଣ କଲେ । ଓଡିଶାର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଦାବୀକୁ ନେତାଜୀ ପୂର୍ଣ୍ଣ ସମର୍ଥନ କରୁଥିଲେ । ପଣ୍ଡିତ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଗଠିତ ସର୍ବଦଳୀୟ କମିଟି ଭାରତ ପାଇଁ ସମ୍ବିଧାନ ଚିଠା ପ୍ରସ୍ତୁତ ପାଇଁ ଗଠନ କରାଯାଇଥିଲା । ପଣ୍ଡିତ ନୀଳକଣ୍ଠ ଦାସ ଓ ନିରଞ୍ଜନ ପଟ୍ଟନାୟକ ସମସ୍ତ ଓଡିଆ ଭାଷାଭାଷି ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ସମ୍ବିଧାନ ଚିଠା ପ୍ରସ୍ତୁତି ବୈଠକରେ ପ୍ରସ୍ତାବ ଦେଇଥିଲେ । ସର୍ବଦଳୀୟ କମିଟିର ଅନ୍ୟତମ ସଭ୍ୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏଥିରେ ସହମତି ପ୍ରକାଶ କରିଥିଲେ । ୧୯୩୮ ମସିହାରେ ହରିପୁରା ଜାତୀୟ କଂଗ୍ରେସ ଅଧିବେଶନରେ ସୁଭାଷ ସଭାପତି ପଦରେ ନିର୍ବାଚିତ ହୋଇଥିଲେ । ଓଡିଶା ପ୍ରତି ନେତାଜୀଙ୍କର ଗଭୀର ଆନ୍ତରିକତାର ପ୍ରମାଣ ମିଳେ ଯେତେବେଳେ ସେ କଂଗ୍ରେସର ସଭାପତି ପଦ ଅଳଙ୍କୃତ କରିଥିଲେ । ନୂତନ କାର୍ଯ୍ୟକାରୀ କମିଟିରେ ନେତାଜୀ ଯେଉଁ ସଭ୍ୟମାନଙ୍କୁ ମନୋନୀତ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଓଡିଶାର ଅନ୍ୟତମ ଜନନାୟକ ଡଃ ହରେକୃଷ୍ଣ ମହତାବ । ଏହା ପୂର୍ବରୁ ଓଡିଶାରୁ କୌଣସି ସଭ୍ୟ ଜାତୀୟ କଂଗ୍ରେସର ସର୍ବୋଚ୍ଚ ନୀତି ନିର୍ଦ୍ଧାରକ କାର୍ଯ୍ୟକାରୀ କମିଟିକୁ ମନୋନୀତ ହୋଇନଥିଲେ । କାର୍ଯ୍ୟକାରୀ କମିଟିର ବୈଠକକୁ ଗୋପବନ୍ଧୁ ଚୌଧୁରୀ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହୋଇଆସୁଥିଲେ । ଓଡିଶାର କଂଗ୍ରେସ କର୍ମୀମାନଙ୍କ ସହିତ ନେତାଜୀ ସର୍ବଦା ସୁସଂପର୍କରେ ଥିଲେ । ସମୟକ୍ରମେ ଦୃଷ୍ଟିକୋଣରୁ ଓ ନିଜ ଦୃଷ୍ଟିଭଙ୍ଗୀକୁ ସଫଳ

ରୂପାୟନ କରିବା ଅସମର୍ଥ ହେବାରୁ ଜାତୀୟ କଂଗ୍ରେସର ସଭାପତି ପଦରୁ ସେ ଇସ୍ତଫା ପ୍ରଦାନ କଲେ । ସଭାପତି ପଦରୁ ଇସ୍ତଫା ଦେବାପରେ କଂଗ୍ରେସ ଦଳର ପ୍ରଗତିଶୀଳ ଓ ବାମପନ୍ଥୀ ବିଚାରଧାରା ବ୍ୟକ୍ତିବିଶେଷଙ୍କୁ ନେଇ ସେ ଫରୱାର୍ଡ ବ୍ଲକ ଦଳ ଗଠନ କଲେ ।

୧୯୩୯ ମସିହା ମଇ ମାସରେ ସୁଭାଷ ଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଫରୱାର୍ଡ ବ୍ଲକର ପ୍ରଚାର ଅଭିଯାନ ଆରମ୍ଭ ହେଲା । ଏହି ଅବସରରେ ନେତାଜୀ ୧୯୩୯ ମସିହା ଅଗଷ୍ଟ ମାସରେ ପ୍ରଥମ ଓଡିଶା ଗସ୍ତରେ ଆସିଥିଲେ । ଏହି ସମୟରେ ସେ ନିଜର ଜନ୍ମମାଟି କଟକ ଆସି ଓଡିଆ ବଜାର ସ୍ଥିତ ନିଜ ପୈତୃକ ବାସଭବନ ଦେଖିଥିଲେ । ସେ ପୁରୀ ହାୱାଡା ଏକ୍ସପ୍ରେସରେ ଆସି କଟକ ଷ୍ଟେସନରେ ପହଞ୍ଚିବା ପରେ ତାଙ୍କୁ ଏକ ବିରାଟ ପଟୁଆରରେ ରାଣୀହାଟ, ମଙ୍ଗଳାବାଗ, ବକ୍ସିବଜାର, ଦରଘାବଜାର, ନୟା ସଡକ, ଚୌଧୁରୀ ବଜାର, ବାଲୁ ବଜାର, ନିମଚଉଡି ଓ ଲାଲବାଗ ଦେଇ ହାତୀ ପିଠିରେ ବସାଇ ଲୋକେ ସହର ବୁଲାଇଥିଲେ । ଏହି ଗସ୍ତ ସମୟରେ ତେଲଙ୍ଗା ବଜାର ସ୍ଥିତ ତାଙ୍କର ଜଣେ ପାରିବାରିକ ବନ୍ଧୁ ସୁଧାଂଶୁ ଭୂଷଣ ମୁଖାର୍ଜୀଙ୍କ ଘରେ ଅବସ୍ଥାନ କରିଥିଲେ । ଅଗଷ୍ଟ ୫ ଓ ୬ ତାରିଖରେ ସେ ନଖିଳ ଉତ୍କଳ ଯୁବ ସମ୍ମିଳନୀରେ ଆମନ୍ତ୍ରଣକ୍ରମେ ଏକ ବିରାଟ ସାଧାରଣ ସଭାରେ ଉଦ୍‌ବୋଧନ ଦେଇଥିଲେ । ଏହାପରେ ସେ ରେଭେନ୍ସା କଲେଜ ପରିଦର୍ଶନ କରିଥିଲେ । ଅଧକ୍ଷ ଡଃ ପ୍ରାଣକୃଷ୍ଣ ପରିଜାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ସଭାରେ ସେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ପରେ ପୁରାତନ ଛାତ୍ରଙ୍କ ଅନୁରୋଧକ୍ରମେ ସେ ରେଭେନ୍ସା କଲେଜିଏଟ ସ୍କୁଲ ଯାଇଥିଲେ । ୧୯୩୯ରେ ପୁରୀ ଓ ଖୋର୍ଦ୍ଧାଗସ୍ତ ସମୟରେ ନୀଳକଣ୍ଠ ଦାସ, ଗୋଦାବରୀଶ ମହାପାତ୍ର, ଯଦୁମଣି ମଙ୍ଗରାଜ ଓ ତରୁଣ ପିଢିର ମନ ମୋହନ ମିଶ୍ର, ବିଭୁଧେନ୍ଦ୍ର ମିଶ୍ର, ଦିବ୍ୟସିଂହ ଦାସ ଓ ଅଶୋକ ଦାସ ପ୍ରମୁଖ ସେତେବେଳେ କଂଗ୍ରେସ ପ୍ରତି ବିମୁଖ ହୋଇ କ୍ରମଶଃ ନେତାଜୀଙ୍କ ଫରୱାର୍ଡ ବ୍ଲକ ପ୍ରତି ଆକୃଷ୍ଟ ହୋଇଥିଲେ ।

ସେସମୟରେ ଇଂରେଜ ସରକାରଙ୍କର ଚରମ ଶତ୍ରୁ ଥିଲେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ୧୯୪୦ ମସିହା ଡିସେମ୍ବର ୫ ତାରିଖ ଦିନ କେତେକ ସର୍ତ୍ତରେ ନେତାଜୀଙ୍କୁ ଇଂରେଜ ସରକାର ଜେଲରୁ ମୁକ୍ତ କଲେ । ସର୍ତ୍ତ ଅନୁଯାୟୀ ନିଜ ଘରେ ସେ ଗୃହ ବନ୍ଦୀ ହୋଇ ରହିଲେ । ୧୯୪୧ ମସିହା ଜାନୁଆରୀ ୧୬ ତାରିଖ ରାତି ୯ଟାରେ ଇଂରେଜ ପୋଲିସ ଓ ଗୋଇନ୍ଦାମାନଙ୍କ ଆଖିରେ ଧୂଳି ଦେଇ ନାଟକୀୟ ଢଙ୍ଗରେ ପଳାୟନ କଲେ । ଦ୍ୱିତୀୟ ବିଶ୍ୱ ଯୁଦ୍ଧର ଏହି ଘଡିସନ୍ଧି ମୁହୂର୍ତ୍ତରେ ଇଂରେଜ ବିରୋଧୀ ଶକ୍ତି ଜର୍ମାନୀ, ଜାପାନ, ଇଟାଲୀ ପ୍ରଭୃତି ଦେଶ ସହିତ କୂଟନୈତିକ ସଂପର୍କ ସ୍ଥାପନ କରି ଦେଶ ମୁକ୍ତିପାଇଁ ଉଦ୍ୟମ ଆରମ୍ଭ କଲେ । ଜର୍ମାନୀ, ଇଟାଲୀ, ଜାପାନ ଦ୍ୱାରା ବନ୍ଦୀ ଥିବା ଭାରତୀୟ ସୈନ୍ୟ ଓ ବ୍ରହ୍ମଦେଶ, ସିଙ୍ଗାପୁର, ମାଲେସିଆ, ଇଣ୍ଡୋନେସିଆ ପ୍ରଭୃତି ଦେଶରେ ଥିବା ପ୍ରବାସୀ ଦେଶ ଓ ଜାତିପ୍ରାଣ ଭାରତୀୟମାନଙ୍କୁ ନେଇ ଗଠନ କଲେ ଆଜାଦ୍ ହିନ୍ଦ୍ ଫୌଜ । ନେତାଜୀ ୧୯୪୩ ମସିହା ଅକ୍ଟୋବର ୨୧ ତାରିଖ ଦିନ ସିଙ୍ଗାପୁରଠାରେ ଏକ ଅସ୍ଥାୟୀ ଆଜାଦ ହିନ୍ଦ୍ ସରକାର ଗଠନ କଲେ । ଆଜାଦ ହିନ୍ଦ୍ ସରକାରଙ୍କୁ ଜର୍ମାନୀ, ଜାପାନ, ଫିଲିପାଇନସ୍, କୋରିଆ, ଚୀନ୍, ଇଟାଲୀ ଓ ଆୟାର୍ଲ୍ୟାଣ୍ଡ ପ୍ରଭୃତି ଦେଶ ସମର୍ଥନ ଓ ସ୍ୱୀକୃତି ପ୍ରଦାନ କରିଥିଲେ । ଆଜାଦ୍ ହିନ୍ଦ୍ ସରକାରର ସ୍ୱତନ୍ତ୍ର ବ୍ୟାଙ୍କ, ମୁଦ୍ରା, ନ୍ୟାୟାଳୟ, ପ୍ରତିଷ୍ଠା ହେବା ସହିତ ନାଗରିକ ସଂହିତା ମଧ୍ୟ ପ୍ରଚଳିତ ହେଉଥିଲା । ଆଜାଦ ହିନ୍ଦ୍ ସରକାରରେ ବହୁ ଗୁରୁତ୍ୱପୂର୍ଣ୍ଣ ବିଭାଗରେ ଓଡିଆମାନେ ଦାୟିତ୍ୱ ଗ୍ରହଣ କରିଥିଲେ ।

ସଶକ୍ତ ସଂଗ୍ରାମ ମାଧ୍ୟମରେ ଭାରତର ସ୍ୱାଧୀନତା ଆଣିବାର ଉଦ୍ୟମ କରିଥିଲେ ନେତାଜୀ, ଯାହା ବହୁ ଓଡିଆମାନଙ୍କୁ ଆକୃଷ୍ଟ କରିଥିଲା । ତାଙ୍କ ଦେଶ ପ୍ରେମ ଓ ସଂଗ୍ରାମ ଶୈଳୀରେ ପ୍ରଭାବିତ ହୋଇ ଅନେକ ଓଡିଆ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗଦାନ କରିଥିଲେ । କର୍ଣ୍ଣେଲ ବ୍ରଜ ମୋହନ ପଟ୍ଟନାୟକଙ୍କ ନେତୃତ୍ୱରେ ଏକ ଓଡିଆ ଶିବିର ରେଙ୍ଗୁନରେ ସ୍ଥାପନ କରାଯାଇଥିଲା । ସେଠାରେ ଆଜାଦ୍

ହିନ୍ଦ୍ ଫୌଜ ପାଇଁ ଓଡିଆ ଯୁବକମାନଙ୍କୁ ରଣ କୌଶଳ ଓ ତାଲିମ ପ୍ରଦାନ କରାଯାଇଥିଲା । ଏକାଧିକ ବାର ନେତାଜୀ ସୁଭାଷ ବୋଷ ଏହି ଶିବିରକୁ ପରିଦର୍ଶନ କରିଥିଲେ । ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀ ଆଜାଦ ହିନ୍ଦ ସରକାରର କ୍ଷେତ୍ର ପ୍ରଚାର ଦାୟିତ୍ୱରେ ଥିଲେ । ଉକ୍ତ ଶିବିରରେ ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ରଚିତ ଦେଶାତ୍ମବୋଧକ ସଂଗୀତ ନେତାଜୀ ଶୁଣୁଥିଲେ । ୧୯୪୫ ମସିହାରେ ଭାରତ ବର୍ମା ସୀମାରେ ଥିବା ଆଜଦ ହିନ୍ଦ୍ ଫୌଜର ଏକ ଶିବିର ଉପରେ ବ୍ରିଟିଶ ସରକାରଙ୍କ ବାୟୁସେନା ବୋମାବର୍ଷଣ କରିଥିଲା । ସେଥିରେ ଅନେକ ଓଡିଆ ମୃତାହତ ହୋଇଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜରେ ୧୫୦୦ ଓଡିଆ ବୀର ସଂଗ୍ରାମୀ ଥିଲେ । ନେତାଜୀଙ୍କ ଦେଶପ୍ରେମ କାର୍ଯ୍ୟରେ ଅନ୍ୟଜଣେ ଓଡିଆ ଯୁବକ ବିଜୟାନନ୍ଦ ପଟ୍ଟନାୟକ (ବିଜୁବାବୁ) ବିଜୁବାବୁଙ୍କ ଭୂମିକା ମଧ୍ୟ କିଛି କମ ନଥିଲା । ସେସମୟରେ ବିଜୁବାବୁ ଇଂରେଜ କର୍ତ୍ତୃପକ୍ଷଙ୍କ ଇଣ୍ଡିଆନ ଏୟାର ଫୋର୍ସରେ ଟ୍ରାନ୍ସପୋର୍ଟ କମାଣ୍ଡ ବିଭାଗରେ ପାଇଲଟ୍ ଥିଲେ । ଏହା ସତ୍ତ୍ୱେ ବିଜୁବାବୁ ଥିଲେ ଜଣେ ପ୍ରଚଣ୍ଡ ଦେଶପ୍ରେମୀ ଓ ସ୍ୱାଧୀନତା ସଂଗ୍ରାମୀ । ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବିଜୁବାବୁ ତାଙ୍କ ଘରେ ଆଶ୍ରୟ ଦେଇ ସଂଗ୍ରାମକୁ ତ୍ୱରାନ୍ୱିତ କରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ରେଙ୍ଗୁନରେ ଫସି ରହିଥିବା ବ୍ରିଟିଶ ନାଗରିକମାନଙ୍କୁ ଉଦ୍ଧାର କରିବା ନିମନ୍ତେ ଦୁଃସାହସିକ ବୈମାନିକ ବିଜୁବାବୁ ବିମାନ ନେଇ ବହୁବାର ସେଠାକୁ ଯାଇଥିଲେ । ଏହି ଅବସରରେ ଆଜଦ୍ ହିନ୍ଦ୍ ଫୌଜ ପାଇଁ ଗୁପ୍ତରେ ବିଜୁବାବୁ ବିମାନରୁ ପ୍ରଚାରପତ୍ର ନିକ୍ଷେପ କରୁଥିଲେ । ଲକ୍ଷ୍ୟ ଥିଲା ନେତାଜୀଙ୍କ ଆଜାଦ ହିନ୍ଦ୍ ଫୌଜ ପାଇଁ ଜନ ସମର୍ଥନ ସୃଷ୍ଟି କରିବା । ଖୋର୍ଦ୍ଧା ଜିଲ୍ଲା ବେଗୁନିଆ ଥାନା ଅନ୍ତର୍ଗତ ପିଚୁକୋଳି ପଂଚାୟତରେ ଏକ ଅଜ୍ଞାତ ଗ୍ରାମ ଅବସ୍ଥିତ, ଯାହାର ନାମ ଚମ୍ପାଇଲୋ । ଏହି ଗ୍ରାମର ୨୨ ଜଣ ଯୋଦ୍ଧା ନେତାଜୀଙ୍କ ଆଜାଦ୍ ହିନ୍ଦ୍ ଫୌଜରେ ସାମିଲ ହୋଇଥିଲେ । ଦେଶ ପରାଧୀନ ଥିବା ସମୟରେ ଏହି ଗ୍ରାମର କିଛି ଲୋକ ଜୀବିକା ଅର୍ଜନ କରିବା ନିମନ୍ତେ ରେଙ୍ଗୁନ୍ ଯାଇଥିଲେ । ସେଠାରେ ସେମାନେ ଧାନ ଓ ଖୋଟ କଳରେ ଶ୍ରମିକ ରୂପେ କାର୍ଯ୍ୟ କରୁଥିଲେ । ସେମାନେ ସେଠାରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆହ୍ୱାନରେ ଆଜଦ୍ ହିନ୍ଦ୍ ଫୌଜରେ ଯୋଗଦାନ କରିଥିଲେ । ନିଜକୁ ସଂପୂର୍ଣ୍ଣ ରୂପେ ସମର୍ପିତ କରି ଦେଶମାତୃକାର ସେବା ପାଇଁ ସେମାନେ ଆଗେଇ ଆସିଥିଲେ । ଆଜଦ ହିନ୍ଦ୍ ଫୌଜର ସେହି ବୀର ପୁଙ୍ଗବମାନେ ଥିଲେ ଲଛମନ ଶତ୍ରୁଶଲ୍ୟ, ବିଶ୍ୱନାଥ ସାମନ୍ତ, ଅର୍ଜୁନ ଫତେସିଂହ, ଉମ୍ବରୁଧର ସ୍ୱାଇଁ , ପତିତପାବନ ବଳିୟାର ସିଂହ, ଭଗବାନ ସାମନ୍ତ ସିଂହାର, ଧୋବି ବରାଳ, ବେଲ ବରାଳ, ସୁରେନ୍ଦ୍ର ସୁନ୍ଦରାୟ, ଜଗନ୍ନାଥ ସାହୁ, ଭୋବନି ଦଳବେହେରା, ଲୋକନାଥ ଦଳସିଂହ, ଚୈତନ୍ୟ ଗୁମାନ ସିଂହ, ମଙ୍ଗୁଳି ମାହାନ୍ତି କୃଷ୍ଣଚନ୍ଦ୍ର ସାମନ୍ତରାୟ, ଦୈତାରୀ ଚମ୍ପତିରାୟ, ଅପର୍ତ୍ତି ମାର୍ଥା ଏବଂ ଅଚ୍ୟୁତ ସାମନ୍ତରାୟ । ଏହି ଗ୍ରାମର ସଂଗ୍ରାମୀମାନଙ୍କର ସନ୍ତାନମାନେ ଓ ସମଗ୍ର ଗ୍ରାମବାସୀ ନେତାଜୀଙ୍କ ଆଦର୍ଶରେ ଅନୁପ୍ରାଣୀତ । ପ୍ରତିବର୍ଷ ଜାନୁଆରୀ ୨୩ ତାରିଖ ନେତାଜୀଙ୍କ ଜନ୍ମ ଦିବସକୁ ଏହି ଗ୍ରାମବାସୀମାନେ ମହା ସମାରୋହରେ ପାଳନ କରନ୍ତି । ଏହି ଗ୍ରାମର ନାମ ଚମ୍ପାଇଲୋ କେବଳ ନୁହେଁ ବରଂ ନେତାଜୀଙ୍କ ଗ୍ରାମ କହିଲେ ଅଧିକ ପ୍ରାସଙ୍ଗିକତା ହେବ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଆଜାଦ୍ ହିନ୍ଦ୍ ଫୌଜର ମହିଳା ବାହିନୀର ନାମକରଣ କରିଥିଲେ ଝାନ୍ସୀ ରେଜିମେଣ୍ଟ ।

ଏହି ରେଜିମେଣ୍ଟକୁ ନେତୃତ୍ୱ ଦେଉଥିଲେ ଲକ୍ଷ୍ମୀ ସେହଗଲ । ଝାନ୍ସୀ ବାହିନୀର ବୀରାଙ୍ଗନା ଲକ୍ଷ୍ମୀ ଇନ୍ଦିରା ପଣ୍ଡା ଥିଲେ ଓଡିଶାର କୋରାପୁଟ ଜିଲ୍ଲାର ଜୟପୁର ସହରର । ନେତାଜୀଙ୍କ ଓଡିଆ ପ୍ରୀତି ଓଡିଆ ଜାତି ପ୍ରତି ଏକ ମହାର୍ଘ ଅବଦାନ । ଏହା ଓଡିଆଙ୍କ ପ୍ରତି ଆସ୍ଥା, ବିଶ୍ୱାସ ଓ ଶ୍ରଦ୍ଧାର ପ୍ରତୀକ ।

ଅଧ୍ୟାପକ, ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା–୭୫୨୦୫୪



# ମାଟିର ମହାପର୍ବ ମକର ଓ ଗଣପର୍ବ ଟୁସୁମେଳା

**ପ୍ରାଧାପକ ଡକ୍ଟର ଅଶୋକ କୁମାର ମହାନ୍ତି**

ବେଦର ବର୍ଣ୍ଣନା ଅନୁସାରେ, ଭୂଲୋକ ତଥା ଦ୍ୟୁଲୋକ ମଧ୍ୟରେ ରହିଛି ଅନ୍ତରୀକ୍ଷ ଲୋକ । ଦ୍ୟୁଲୋକରେ ସୂର୍ଯ୍ୟଙ୍କର ସ୍ଥିତି ।

ଅଖିଳ ବିଶ୍ୱକୁ ପ୍ରକାଶ ପ୍ରଦାନ କରୁଥିବା ଅନନ୍ତ ତେଜର ଭଣ୍ଡାର ସୂର୍ଯ୍ୟ । ସୂର୍ଯ୍ୟ ଦିନ ରାତି ସହ ଋତୁଚକ୍ର ଆବର୍ତ୍ତନର ନିୟାମକ । 'ଯଜ୍ଞ କଳ୍ପଦ୍ରୁମ' ଅନୁଯାୟୀ ସୂର୍ଯ୍ୟଦେବ ଉଦୟ କାଳରେ ବ୍ରହ୍ମା, ମଧ୍ୟାହ୍ନ ସମୟରେ ମହେଶ୍ୱର ଓ ଅସ୍ତକାଳରେ ବିଷ୍ଣୁ ରୂପରେ ଉପାସିତ ହୁଅନ୍ତି । ସମଗ୍ର ସଂସାରକୁ ଚଳମାନ ରଖୁଥିବା ସୂର୍ଯ୍ୟ ବଡ଼ ଶିକ୍ଷକ, ସନ୍ନ୍ୟାସୀ, ଚିକିତ୍ସକ ଓ କର୍ମଯୋଗୀ ।

ଆମ ସଂସ୍କୃତିରେ ସଂକ୍ରାନ୍ତିର ମହତ୍ତ୍ୱ ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟରାଶିକୁ ଗମନ ଅର୍ଥାତ୍ ରବି ସଂକ୍ରମଣ ହେତୁ ବହୁତ ବେଶି । ବାର ମାସରେ ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳା, ବିଛା, ଧନୁ, ମକର, କୁମ୍ଭ, ମୀନ ଆଦି ସଂକ୍ରାନ୍ତିକୁ ପରବର୍ତ୍ତୀ ସୌରମାସର ପ୍ରଥମଦିନ ବୋଲି ଗଣାଯାଏ । ସଂକ୍ରାନ୍ତିର ପୂର୍ବଦିନକୁ 'ମାସାନ୍ତ' ବୋଲି କୁହାଯାଏ ।

ସୂର୍ଯ୍ୟଙ୍କର ଗତି ଉତ୍ତରାୟଣ ଓ ଦକ୍ଷିଣାୟନ, ଗୋଟିଏ ବର୍ଷରେ ଦୁଇଟି ଅୟନ ହୁଏ । ମାଘମାସ ସଂକ୍ରାନ୍ତିକୁ ଉତ୍ତରାୟଣ ସଂକ୍ରାନ୍ତି ବା ମକର ସଂକ୍ରାନ୍ତି ଓ କର୍କଟ ବା ଶ୍ରାବଣ ସଂକ୍ରାନ୍ତିକୁ ଦକ୍ଷିଣାୟଣ ସଂକ୍ରାନ୍ତି କୁହାଯାଏ । ପ୍ରାୟତଃ ଇଂରାଜୀ ବର୍ଷ ଜାନୁଆରୀ ମାସ ମକର ସଂକ୍ରାନ୍ତି ବେଳକୁ ସୂର୍ଯ୍ୟ ଉତ୍ତରାୟଣରେ ସେ ମକର ରାଶିରେ ପ୍ରବେଶ କରନ୍ତି । ଏହି ସମୟ ଦେବ ସମୟ ଓ ସମସ୍ତ ଶୁଭକାର୍ଯ୍ୟ ପାଇଁ ଉପଯୁକ୍ତ ବେଳା ବୋଲି ବିବେଚନା କରାଯାଏ । ଦକ୍ଷିଣାୟନରେ ସୂର୍ଯ୍ୟଦେବ କର୍କଟକୁ ଚଳନ କରୁଥିବା ହେତୁ ଦେବ ଶୟନକାଳ ଭାବେ ପରିଚିତ ଏବଂ ଏହି ସମୟରେ କୌଣସି ମାଙ୍ଗଳିକ କାର୍ଯ୍ୟ କରାଯାଏ ନାହିଁ । ସଂକ୍ରାନ୍ତି, ଛଟ୍‌ପର୍ବ, ଶାମ୍ବଦଶମୀ, ରଥ ସପ୍ତମୀ ବା ମାଘ ସପ୍ତମୀ ଆଦି ସୂର୍ଯ୍ୟଙ୍କର ଆଧାରିତ ମୁଖ୍ୟ ପର୍ବ ହୋଇଥାଏ । ରବି ସଂକ୍ରମଣ ସମୟ ଅତ୍ୟନ୍ତ ପୁଣ୍ୟକାଳ ହୋଇଥିବାରୁ ଏହି ସମୟରେ ସ୍ନାନ, ହୋମ ଓ ମନ୍ତ୍ରଜପରେ ପୁଣ୍ୟ ସଂଚୟ ହୁଏ । ଚିକିତ୍ସାଶାସ୍ତ୍ର ଓ ବିଜ୍ଞାନ ମତରେ ଉକ୍ତ ଦିବସରେ ସ୍ତ୍ରୀ, ତୈଳ, ଆମିଷାଦି ବର୍ଜନୀୟ । ରାତ୍ରିକାଳରେ ଗୁରୁଖାଦ୍ୟ ମଧ୍ୟ ନିଷିଦ୍ଧ ।

ଡିସେମ୍ବର ମାସରେ ହେଉଥିବା ସୂର୍ଯ୍ୟଙ୍କର ସଂକ୍ରମଣକୁ ଧନୁସଂକ୍ରାନ୍ତି କୁହାଯାଏ । ଜ୍ୟୋତିଷ ଶାସ୍ତ୍ରାନୁସାରେ ଧନୁସଂକ୍ରାନ୍ତିର ଅଧିପତି ଗ୍ରହ ବୃହସ୍ପତି । ଦେବଗୁରୁ ବୃହସ୍ପତିଙ୍କ ଗ୍ରହସଂଖ୍ୟା ୫ । ଏହି ରାଶିର ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି ତାରା ।

ପୁରାଣ ମତରେ ସୂର୍ଯ୍ୟଦେବଙ୍କ ପିତାଙ୍କ ନାମ ମହର୍ଷି କଶ୍ୟପ ଏବଂ ମା'ଙ୍କ ନାମ ଅଦିତି । ତାଙ୍କର ଜଣେ ପତ୍ନୀଙ୍କ ନାମ ସଂଜ୍ଞା ଯିଏ ବିଶ୍ୱକର୍ମାଙ୍କ କନ୍ୟା ଏବଂ ସଂଜ୍ଞାଙ୍କଠାରୁ 'ଯମ' ନାମକ ପୁତ୍ର, 'ଯମୁନା' ନାମରେ କନ୍ୟା ଜାତ ହୋଇଛନ୍ତି । ଦ୍ୱିତୀୟ ପତ୍ନୀ

ଛାୟାଙ୍କଠାରୁ 'ଶନି'ଙ୍କର ଜନ୍ମ ହୋଇଛି । ମକର କ୍ଷେତ୍ର ଶନିଙ୍କ ଦଖଲରେ ଥାଏ । ଶନିଙ୍କ ସହ ଭଲ ସଂପର୍କ ନଥିବା ସୂର୍ଯ୍ୟଦେବ ମକର ରାଶିରେ ପ୍ରବେଶ କଲାମାତ୍ରେ ପିତା ସୂର୍ଯ୍ୟ, ପୁତ୍ର ଶନିଙ୍କ ମଧ୍ୟରେ ସୁସମ୍ପର୍କ ଆସେ । ତେଣୁ ମକର ସଂକ୍ରାନ୍ତିରେ ସମସ୍ତେ ବନ୍ଧୁ, ପ୍ରିୟ ପରିଜନମାନଙ୍କୁ ଭେଟନ୍ତି । ନୂଆ ଚାଉଳ, ଗୁଡ଼, ନଡ଼ିଆ, ଛେନା, କଦଳୀ, ପେସ୍ତାବାଦାମ, କିସ୍‌ମିସ୍, ଅଙ୍ଗୁର, ସେଓ, କମଳା ଆଦି ଫଳ, ଖୁଆ, ସର, ରାବିଡ଼ି, କ୍ଷୀର, ଅଦା, ମରିଚ ଆଦିରେ ପ୍ରସ୍ତୁତ ମକର ଚାଉଳ, ଦେବାଦେବୀ, ଧାନଖଳା କଳେଇଗଦା ଆଦିକୁ ପ୍ରସାଦରୂପେ ଅର୍ପଣ କରାଯାଇ ପରସ୍ପରକୁ ଖୁଆଇଦେଇ 'ମକରପର୍ବ' ପାଳନ କରନ୍ତି । ଏହାକୁ 'ମକର ମିଳନ' କହନ୍ତି ।

ମକର ସଂକ୍ରାନ୍ତି ବେଳକୁ ଖଳାରେ ଧାନକଳେଇକୁ ଗଦାମାରି ରଖାଯାଇଥାଏ ଓ ଏହି ଗଦାକୁ ପୂଜା କରାଯାଏ । ଆଗକାଳରେ ମକର ସଂକ୍ରାନ୍ତି ଦିନ ଲୋକେ ପୁରୁଣା ହାଣ୍ଡି ଫିଙ୍ଗି ନୂଆହାଣ୍ଡିରେ ରୋଷେଇ କରୁଥିଲେ । ଏହି ଅବସରରେ ଲୋକେ ବିଭିନ୍ନ ଘରକରଣା ପାଇଁ ନୂଆ ଜିନିଷ କିଣନ୍ତି । ନବବସ୍ତ୍ର ପରିଧାନ କରନ୍ତି । ମକରପର୍ବ ଅବସରରେ 'ଗୁଡ଼ିଉଡ଼ା'ର ମଜା ସମସ୍ତେ ନିଅନ୍ତି । ଆଗରୁ ମକର ସଂକ୍ରାନ୍ତିରେ ପରସ୍ପରକୁ ମକରଚାଉଳ ଖୁଆଖୋଇ ହୋଇ ନବ ବସ୍ତ୍ର ପିନ୍ଧି ସୁଖଦୁଃଖରେ ସବୁଦିନ ସାଥୀ ହୋଇ ରହିବାର ଶପଥ ନେବାକୁ 'ସଙ୍ଗାତବସା', 'ମକରବସା' ଆଦି ପ୍ରଥା ପ୍ରଚଳିତ ଥିଲା ।

ପୂର୍ବେ ମକର ସଂକ୍ରାନ୍ତି ପୂର୍ବଦିନ ଅର୍ଥାତ୍ ମାସାନ୍ତ ଦିନ ଗାଁର ଯୁବକମାନେ ପୋଖରୀ ବା ନଦୀ ଆଦିରେ ନଡ଼ା, ପତ୍ର ଆଦିରେ ଛୋଟକୁଡ଼ିଆ କରିଥାନ୍ତି । ତାକୁ 'ମକରପଲା' କୁହାଯାଏ । ଶୀତରେ ଅତିଷ୍ଠ ଲୋକେ ମକର ସଂକ୍ରାନ୍ତିଦିନ ବଡ଼ି ଭୋରରୁ ସ୍ନାନ କରି, ସ୍ନାନ ପରେ ସେ କୁଡ଼ିଆକୁ ଜଳାଇ ତା' ନିଆଁରେ ଉଷୁମ ପାଆନ୍ତି । ପ୍ରତୀକାତ୍ମକଭାବେ ପଲା ବା କୁଡ଼ିଆ ଜଳାଇ ଶୀତକୁ ବିଦାୟ ଦେବାସହ, ପରବର୍ତ୍ତୀ ସମୟରେ ଅଗ୍ନି ନିରୋଧ ସଚେତନତା ବାର୍ତ୍ତା ପ୍ରଚାର କରିଥାନ୍ତି ।

ଧାନ କଟାକଟି ସରିଥାଏ । ସମସ୍ତଙ୍କ ପାଇଁ ମଉଜ ମଜଲିସ୍ ପାଇଁ ପାଗ ମଧ୍ୟ ଅନୁକୂଳ ଥାଏ । ଏହି ଅବସରରେ ପିଠାପଣା, ସୁଆଦିଆ ଖାଦ୍ୟ, ବିଭିନ୍ନ କ୍ରୀଡ଼ା ମଧ୍ୟ ଗାଁ ଗହଳିରେ ବ୍ୟାପକଭାବେ ଆୟୋଜିତ ହୋଇଥାଏ । ଓଡ଼ିଶାର ଗାଁଗହଳିରେ ଏହି ମକର ସଂକ୍ରାନ୍ତିରେ ଏକମାସ ଧରି 'ଅଲଣା ଓଷା' ପୂଜାବିଧି ବ୍ରତ ପାଳନର ଉଦ୍‌ଯାପନ ଘଟେ । ସୁମିଷ୍ଟ ଅଲଣା ଜାଉ, ଚୁଡ଼ାଘଷା, ଉଖୁଡ଼ା ଓ ଅନ୍ୟାନ୍ୟ ଫଳଭୋଗର ପରମ୍ପରା ରହିଛି ।

ପୌଷ ଧନୁସଂକ୍ରାନ୍ତିଠାରୁ ମାଘ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଶ୍ରୀମନ୍ଦିର ସମେତ ଓଡ଼ିଶାର ପ୍ରତ୍ୟେକ ବିଷ୍ଣୁ ମନ୍ଦିର ଓ ବିଷ୍ଣୁ ଉପାସିତ ମଠମାନଙ୍କରେ ପହିଲିଭୋଗ ଏକମାସ ସକାଳର ଗୋପାଳବଲ୍ଲଭ ସହିତ ଭୋଗ କରାଯାଇଥାଏ । ଓଡ଼ିଶାରେ ଏଇ 'ପହିଲିଭୋଗ'ର ଲୋକପ୍ରିୟତା ଏତେ ବୃଦ୍ଧି ପାଇଛି ଯେ ଶିବ ମନ୍ଦିରମାନଙ୍କରେ ଏପରିକି ଶକ୍ତିପୀଠମାନଙ୍କରେ, ମଠରେ, ଜାଗା ଆଖଡ଼ାମାନଙ୍କରେ 'ପହିଲିଭୋଗ' ସ୍ୱତନ୍ତ୍ରଭାବେ କରାଯାଇଥାଏ ।

ଏଥିନିମନ୍ତେ ଏହି ଏକମାସ ଧରି ଶ୍ରୀମନ୍ଦିରରେ ରାତ୍ରୀ ୨.୩୦ମିନିଟ୍‌ରେ ଦ୍ୱାରଫିଟା, ଭିତର ଶୋଧ, ମଙ୍ଗଳ ଆଳତି ଓ ଅବକାଶ କରାଯାଇଥାଏ । ଅଣସରପିଣ୍ଡି ବା ବଲ୍ଲଭପିଣ୍ଡିଠାରେ ପାଣି ପଡ଼ି ପରିଷ୍କାର କରାଯାଇ ବଲ୍ଲଭ ବଡ଼ା ହୁଏ । ଏହା ପରେ ପହିଲିଭୋଗ ଛେକ ଆସିବା ପାଇଁ ରୋଷକୁ ଡକରାଯାଏ । ସୁଆର, ମହାସୁଆରମାନେ ବିରି, ଗହମରେ ଘୃତପାକ ହୋଇଥିବା ସ୍ୱତନ୍ତ୍ର ଧରଣର ପିଠାମାନ ପ୍ରସ୍ତୁତ କରିଥାନ୍ତି । ଛେକରେ ସେଗୁଡ଼ିକ ଆସିବା ପରେ ପୂଜାପଣ୍ଡାମାନେ ପଂଚୋପଚାରରେ ପୂଜା କରିଥାନ୍ତି । ପହିଲିଭୋଗରେ ବଡ଼ଝିଲି, ବଡ଼ି, ନାଡ଼ି, ଚୁଡ଼ାଭଜା, ଛତୁ, ବଡ଼ା, କାକରା, ଟାକିରି, ଗଇଣ୍ଡା, ମଣ୍ଡା, ଏଣ୍ଡୁରି, ଅମାଲୁ, ଚଢେଇନେଦା ('ଝଡ଼େଇଲଦା'ର ଅପଭ୍ରଂଶ), ଦରସୁଆବଡ଼ି, କାନ୍ତି, ନଡୁ, ଗଜା, ନଳିମୁଗେଇ, ଆରିସା, କଂଟେଇ ଓ

ନୂଆ ଚାଉଳ, ନୂଆ ଆଖୁରୁ ଉତ୍ପାଦିତ ଗୁଡ଼ରେ ନିର୍ମିତ ମୁଆଁ ଇତ୍ୟାଦି ୩୨ ପ୍ରକାର ଭୋଗ ନୈବେଦ୍ୟ କରାଯାଇଥାଏ । ଷୋଡ଼ଶ ଶତାବ୍ଦୀର ବୈଷ୍ଣବ ରଚନା ଅନୁଯାୟୀ ଏହି ପହିଲିଭୋଗ ହେଉଛି ମାତା ଯଶୋଦାଙ୍କ ଶ୍ରୀକୃଷ୍ଣଙ୍କୁ ପାହାନ୍ତା ପ୍ରହରରେ ଲଘୁଦ୍ରବ୍ୟ ଖୁଆଇବା ବାତ୍ସଲ୍ୟ ସ୍ନେହର ନିଦର୍ଶନ । ଏକଦା ଦ୍ୱାରିକାରେ ଶ୍ରୀକୃଷ୍ଣ ମାତା ଯଶୋଦାଙ୍କ ସ୍ମୃତିରେ ବ୍ୟାକୁଳିତ ହୋଇ ବାଳଗୋପାଳ ରୂପ ଧାରଣ କରିବାରୁ ନାରଦ ତାହାର ରହସ୍ୟ ଜିଜ୍ଞାସା କରିଥିଲେ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ନାରଦ ଗୋପପୁରକୁ ଯାଇ ଦେଖିଲେ ମାଆ ଯଶୋଦା କୃଷ୍ଣ ଏବଂ ବଳରାମଙ୍କୁ କୋଳରେ ବସାଇ ସୁମିଷ୍ଟ ଖାଦ୍ୟ ଆନନ୍ଦରେ ସେବନ କରାଉଛନ୍ତି । ଏଣୁ ଏହାର ସ୍ମାରକୀସ୍ୱରୂପ ଶ୍ରୀମନ୍ଦିରରେ ପହିଲିଭୋଗର ପ୍ରଚଳନ ରହିଛି । କଥିତ ଅଛି ମାଆ ଲକ୍ଷ୍ମୀ ଏହି ସମୟରେ ବାପଘରକୁ ଚାଲିଯାଉଥିବାରୁ ମାଆ ଯଶୋଦା ନିଜେ ରାନ୍ଧି ପାହାନ୍ତି ପ୍ରହରରେ କୃଷ୍ଣବଳରାମଙ୍କୁ ଖୁଆଇ ଦିଅନ୍ତି । ମାଆ ଲକ୍ଷ୍ମୀଙ୍କୁ ଅନୁକରଣ କରି ଓଡ଼ିଆ ଘରର ବୋହୂମାନେ ଏଇ ପୁଷମାସରେ ବାପଘରକୁ ଯିବାର ପ୍ରଥା ମଧ୍ୟ ପ୍ରଚଳିତ ଅଛି । ଏହି ମକରସଂକ୍ରାନ୍ତି ଦିନ ଏକମାସ ଧରି ବାପଘରକୁ ଚାଲିଯାଇଥିବା ମାଆ ମହାଲକ୍ଷ୍ମୀ ମକରଭାର ଧରି ଶ୍ରୀମନ୍ଦିରରେ ପହଞ୍ଚନ୍ତି ଓ ପହିଲିଭୋଗର ଅବସାନ ଘଟେ ।

ମକର ସଂକ୍ରାନ୍ତି ଦିନ ଶ୍ରୀଜଗନ୍ନାଥଙ୍କର ଉତ୍ତରାୟଣ ଯାତ୍ରା ଉତ୍ସବ ପାଳିତ ହୁଏ । ଏହିଦିନ ନୂଆ ଚାଉଳରେ ମକର ଚାଉଳ କରାଯାଇ ପ୍ରଭୁଙ୍କୁ ଭୋଗ କରାଯାଏ । ମକର ସଂକ୍ରାନ୍ତି ପୂର୍ବଦିନ ନବାଙ୍କ ବେଢ଼ା ହୁଏ । ଏହି ନବାଙ୍କବେଢ଼ାର ପ୍ରବର୍ତ୍ତକ ଶ୍ରୀଚୈତନ୍ୟ ମହାପ୍ରଭୁ ବୋଲି କୁହାଯାଏ । ନବାଙ୍କଦିନ ଅନ୍ୟାନ୍ୟ ନୀତି ସହ ଚାଉଳ ଓଗେର ଅଧିବାସ ହୋଇ ରହେ । ସଂକ୍ରାନ୍ତି ଦିନ ଦ୍ୱିପ୍ରହର ଧୂପ ସହିତ ଯାତ୍ରା ଭୋଗପାଇଁ ବିଭିନ୍ନ ସାମଗ୍ରୀ ଅଣାଯାଇ ଷୋଡ଼ଶୋପଚାରରେ ମଣୋହି ପଡ଼େ । ଟେରା ପଡ଼ିବା ପରେ ଏକ ଓଳି ଅନ୍ନ ବାହାରକୁ ଅଣାଯାଇ ମନ୍ଦିର ଚାରିପାଖରେ 'ଦିଗବଳି' ଦିଆଯାଏ । ଚାଉଳ ଏବଂ ମକର ଚାଉଳର ଅନ୍ୟାନ୍ୟ ସାମଗ୍ରୀ ଘଣ୍ଟ, ଛତା କାହାଳୀ ସହ ପଟୁଆରରେ ମନ୍ଦିର ପ୍ରଦକ୍ଷିଣ କରାଇ ନୈବେଦ୍ୟ ପାଇଁ ଶ୍ରୀଜୀଉଙ୍କ ଛାମୁରେ ରଖାଯାଏ । ହଡ଼ପ ନାଏକମାନେ ବାଘମୁହଁ ବାନ୍ଧି ଘଣ୍ଟ, ଛତୀ, କାହାଳୀସହ ପଟୁଆରରେ ବଡ଼ଦେଉଳକୁ ଏକଘେରା ପ୍ରଦକ୍ଷିଣ କରି ଭୋଗରେ ବଢ଼ାଯିବା ନିମିତ୍ତ ନଳିପାନ ଓ ଛାଚିପାନ ମଧ୍ୟ ଆଣିଥାନ୍ତି । ଫୁଲ ମେଳଣପାଇଁ ମାଳିମାନେ ବାଘମୁହଁ ବାନ୍ଧି ବଡ଼ଦେଉଳରେ ବେଢ଼ା ବୁଲନ୍ତି । ଏ ସମସ୍ତ ଦ୍ରବ୍ୟ ଅଣାଯିବା ପରେ ପ୍ରସାଦଲାଗି ବଢ଼େ ଏବଂ ବନ୍ଦାପନା କରାଯାଏ । ଶ୍ରୀଜଗନ୍ନାଥଙ୍କୁ ମକରଚାଉଳ ଭୋଗପରେ ଅସଂଖ୍ୟ ଭକ୍ତ ମକର ଚାଉଳ ଶ୍ରୀମନ୍ଦିରରେ ଭୋଗ କରାଉଥିବା ଲକ୍ଷ୍ୟ କରାଯାଏ ।

ମକର ସଂକ୍ରାନ୍ତି ଅବସରରେ ମୟୂରଭଞ୍ଜ, ସୁନ୍ଦରଗଡ଼, କେନ୍ଦୁଝର ସମେତ ଅନ୍ୟ ଜିଲ୍ଲା ଓ ବିହାର, ଝାଡ଼ଖଣ୍ଡ, ଆସାମ ତଥା ପଶ୍ଚିମବଙ୍ଗରେ 'ଟୁସୁମେଳା' ଧୂମ୍‌ଧାମ୍‌ରେ ପାଳିତ ହୁଏ । ବିଶେଷଭାବେ 'କୁଡୁମୀ' ଜାତିର ଲୋକ ଏହା ପାଳନ କରନ୍ତି । ପ୍ରତି ଗାଁରେ ଟୁସୁଦେବୀଙ୍କ ଆକର୍ଷଣୀୟ ମୂର୍ତ୍ତି ଗଢ଼ାଯାଇ ପୂଜା କରାଯାଏ । କେଉଁଠି ସାତ ଦିନ ତ କେଉଁଠି ମାସେ କାଳ ଉତ୍ସବ ଚାଲେ । କୁମାରୀ କନ୍ୟାମାନେ ଟୁସୁଦେବୀଙ୍କୁ ପୂଜା କରନ୍ତି । ଏହି ଅବସରରେ ଦେହରେ ହଳଦୀ ଲଗାଇ, ପିତଳ ଗହଣା ପିନ୍ଧିବାସହ ଗେଣ୍ଡୁଫୁଲ ଗଭାରେ ଖୋସନ୍ତି । ଟୁସୁଦେବୀଙ୍କ ଉଦ୍ଦେଶ୍ୟରେ ବିଭିନ୍ନ ଗୀତ ଗାନ କରାଯାଏ ।

କିମ୍ବଦନ୍ତୀ ଅନୁଯାୟୀ, ମୟୂରଭଞ୍ଜ ଅଂଚଳକୁ ବଙ୍ଗର ନବାବଙ୍କ ସୈନ୍ୟମାନେ ଆସି 'କୁଡୁମୀ' ସଂପ୍ରଦାୟର 'ଟୁସୁ' ନାମ୍ନୀ ଦିବ୍ୟ ସୁନ୍ଦରୀ ଝିଅକୁ ଅପହରଣ କରିନେଇଗଲେ । ଲୋକେ ନବାବଙ୍କ ନିକଟରେ ପ୍ରତିବାଦ କରିବାରୁ ସେ କନ୍ୟାକୁ ଫେରାଇଦେଲେ ମଧ୍ୟ 'ଟୁସୁ'ଙ୍କୁ ଆଦିବାସୀ ସମାଜ ଗ୍ରହଣ ନ କରିବାରୁ ସେ ନଦୀକୁ ଡେଇଁ ପ୍ରାଣତ୍ୟାଗ କଲେ । ତାଙ୍କ ବିରହରେ ମହିଳାମାନେ

ଲଣ୍ଡା ହୋଇ ଶୋକ ପ୍ରକାଶ କଲେ । ତେଣୁ ଟୁସୁଙ୍କ ପାଇଁ ଆରମ୍ଭ ହେଲା ମେଳା ।

ଅନ୍ୟ ମତ ଅନୁଯାୟୀ, ଉତ୍ତରପ୍ରଦେଶର ରାଜା ଦର୍ଶନ ସିଂହଙ୍କ କନ୍ୟା ଟୁସୁଙ୍କୁ ଅଯୋଧ୍ୟାର ନବାବ ଅପହରଣ କରିବାକୁ ଯୋଜନା କରିବାରୁ ରାଜା କନ୍ୟାକୁ ଧରି ପଳାୟନ କଲେ ଓ 'ଟୁସୁ' ଦାମୋଦର ନଦୀରେ ପ୍ରାଣ ବିସର୍ଜନ କଲେ ।

ଆଉ ଏକ ମତରେ, ମେବାରର ରାଜା ରତନ ସିଂହ ଆଲାଉଦ୍ଦିନ ଖିଲିଜୀଙ୍କ ସହ ଯୁଦ୍ଧ କରି ମୃତ୍ୟୁବରଣ କରିବାରୁ 'ରାଣୀ ପଦ୍ମିନୀ' ଅଗ୍ନିରେ ନିଜକୁ ଝାସ ଦେଲେ । ତେବେ ରତନ ସିଂହଙ୍କ ପରମାସୁନ୍ଦରୀ ନାତୁଣୀ 'ତୁସମନି'ଙ୍କୁ ଅପହରଣ କରିବାକୁ ସୁଲତାନ ଚେଷ୍ଟା କରିବାରୁ ସେ ନଦୀକୁ ଡେଇଁ ପ୍ରାଣତ୍ୟାଗ କଲେ ।

ବିହାର ଓ ମୟୂରଭଞ୍ଜର ସାନ୍ତାଳମାନେ ମକର ସଂକ୍ରାନ୍ତିରେ ମୃତ ଆତ୍ମୀୟମାନଙ୍କ ଅସ୍ଥି ବିସର୍ଜନ ଦାମୋଦର ନଦୀରେ କରନ୍ତି । ଏହାକୁ 'ଦାମୋଦର ଯାତ୍ରା' କୁହାଯାଏ । ଏଥିପାଇଁ ସଂପୃକ୍ତ ବ୍ୟକ୍ତିଙ୍କ ଘରେ ଉତ୍ସବ, ଭୋଜିଭାତ ଓ ନାଚଗୀତରେ ସମସ୍ତେ ମଜ୍ଜିଯାଆନ୍ତି । ମାଦଳର ତାଳେତାଳେ ଦିନରାତି ନୃତ୍ୟର ଆସର ଜମେ ।

ତାମିଲନାଡୁରେ ପୋଙ୍ଗଲ, କେରଳରେ ମକରବିଲାକୁ, ଆନ୍ଧ୍ରରେ ପାଣ୍ଡୁଗା, ପଞ୍ଜାବରେ ଲୋହଡ଼ି ଓ ମାଘୀ, ଗୁଜୁରାଟରେ ଉତ୍ତରାୟଣ, ଉତ୍ତରପ୍ରଦେଶ, ବିହାରରେ ଖିଚଡ଼ି, ଆସାମରେ ମାଘବିହୁ ବା ଭୋଗାଲିବିହୁ, କର୍ଣ୍ଣାଟକରେ ସୁଗି, ହିମାଚଳ ପ୍ରଦେଶରେ ମାଘସଜି, ଦିଲ୍ଲୀ, ହରିଆନାରେ ସିଧା ଓ ମାନାନା, ପଶ୍ଚିମବଙ୍ଗରେ ପୌଷସଂକ୍ରାନ୍ତି ଭାବେ ଉତ୍ସବ ପାଳନ କରାଯାଏ । ମକରର ପବିତ୍ର ଅବସରରେ ଗଙ୍ଗାସାଗରର ସଙ୍ଗମସ୍ଥଳରେ ବୁଡ଼ ପକାଇଲେ ପାପ ଧୋଇଯାଏ ବୋଲି ଲୋକଙ୍କର ବିଶ୍ୱାସ ।

ମକର ପର୍ବ ଏକ କୃଷିଭିତ୍ତିକ ପର୍ବ ଓ ଶ୍ରୀଜଗନ୍ନାଥଙ୍କର ବାରମାସରେ ତେର ପର୍ବ ମଧ୍ୟରୁ ଏକ ସ୍ୱତନ୍ତ୍ର 'ଉତ୍ତରାୟଣ ଯାତ୍ରା' ପର୍ବ । ସମଗ୍ର ଭାରତବର୍ଷରେ ଏହି ମହାନ୍ ଗଣପର୍ବ 'ମକର ପର୍ବ' ପାଳନର ମହତ୍ତ୍ୱ ରହିଛି ।

ମକ୍କୁବନ (୪ର୍ଥ ଗଳି)
ନବକଳେବର ରୋଡ, ପୁରୀ–୨



# ଅର୍କକ୍ଷେତ୍ରର ଉପାସ୍ୟ ଦେବତା ଅଂଶୁମାନ

**ଅନନ୍ତ ଗୋପାଳ ପଣ୍ଡା**

ସୃଷ୍ଟିର ସଂରଚନା ସମୟରୁ ଏ ସୃଷ୍ଟିକୁ ଗତିଶୀଳ କରିବା ସଙ୍ଗେ ସଙ୍ଗେ ଯାହାଙ୍କର ଉପସ୍ଥିତି ଏ ସୃଷ୍ଟିରେ ଦିନ ରାତି ସହିତ ଋତୁଚକ୍ରର ଆବର୍ତ୍ତନକୁ କରିଛି ସମ୍ଭବ, ଯାହାଙ୍କର ପ୍ରକାଶମାନ ସ୍ୱରୂପ ପ୍ରାଣୀମାନଙ୍କ ମଧ୍ୟରେ ଜୀବ ସତ୍ତାକୁ ଉଜ୍ଜୀବିତ କରିବା ପୂର୍ବକ କାର୍ଯ୍ୟରେ ଲିପ୍ତ ହେବା ପାଇଁ ଅନ୍ତର ଭିତରେ ଭରି ଦେଉଅଛି ପ୍ରେରଣା, ବେଦ ଓ ଉପନିଷଦମାନେ ଯାହାଙ୍କ ବନ୍ଦନା ଗାନରେ ହୋଇଛନ୍ତି ଶତମୁଖ, ଗ୍ରହମାନଙ୍କ ଅଧିପତି ଭାବରେ ଯାହାଙ୍କର ଚତୁଃପାର୍ଶ୍ୱରେ ଗ୍ରହମାନେ କରନ୍ତି ପରିକ୍ରମଣ, ସେ ହେଉଛନ୍ତି ସକଳ ଶକ୍ତିର ଆଧାର,ପ୍ରଭୁ ଦିବାକର । ଶ୍ରୀମଦ ଭଗବଦ ଗୀତାରେ ଭଗବାନ ଶ୍ରୀକୃଷ୍ଣ ସ୍ୱମୁଖରେ ନିଜର ବିଭୂତିକୁ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି, ''ଜ୍ୟୋତିଷାଂ ରବି ରଂଶୁମାନ'' ଅର୍ଥାତ ମୁଁ ଉଜ୍ଜ୍ୱଳ ବସ୍ତୁମାନଙ୍କ ମଧ୍ୟରେ କିରଣମୟ ସୂର୍ଯ୍ୟ । ପରଂବ୍ରହ୍ମ ଜ୍ୟୋତିରୂପେ ସୂର୍ଯ୍ୟ ନାରାୟଣଙ୍କଠାରେ ପ୍ରବିଷ୍ଟ ହୋଇ ଜଗତର ସୃଷ୍ଟି ସ୍ଥିତି ଓ ବିଲୟ କାର୍ଯ୍ୟ ସଂପାଦନ କରୁଅଛନ୍ତି । ନିଜର ଅନନ୍ତ ପରାକ୍ରମ ତଥା ଆକର୍ଷଣ ଶକ୍ତି ଦ୍ୱାରା ପ୍ରାକୃତ ଓ ଅପ୍ରାକୃତ ଜଗତର ସଂଚାଳକ ଓ ରକ୍ଷକ ଭାବରେ ଭାସ୍କର ହୁଅନ୍ତି ଅଭିହିତ । ପଞ୍ଚ ମହାଭୂତ ମଧ୍ୟରୁ ବାୟୁ ତତ୍ତ୍ୱର ଅଧିପତି ସୂର୍ଯ୍ୟଦେବତା ହୋଇଥିବାରୁ ପ୍ରାଣରକ୍ଷା ନିମନ୍ତେ ''ସୂର୍ଯ୍ୟ ଆତ୍ମା ଜଗତସ୍ତୁସ୍ଥଷଶ୍ଚ (ଯର୍ଜୁ ୩/୪୨) ମନ୍ତ୍ରରେ ହୁଅନ୍ତି ପୂଜିତ ।

ଜୀବମାନଙ୍କର ଶରୀର ସହିତ ସମଗ୍ର ଜଗତ ମଧ୍ୟ କ୍ଷିତି, ଆପ ତେଜ, ମରୁତ ଓ ବ୍ୟୋମ ଆଦି ପଞ୍ଚ ମହାଭୂତରେ ଗଠିତ । ଏହି ପଞ୍ଚ ମହାଭୂତର ଅଧିପତି ହେଉଛନ୍ତି ପଞ୍ଚଦେବତା । ଆଗମ ଶାସ୍ତ୍ରରେ କୁହାଯାଇଛି,

''ଆକାଶସ୍ୟଧିପୋ ବିଷ୍ଣୁ, ରଗ୍ନେର୍ଶ୍ଚୈବ ମହେଶ୍ୱରୀ,
ବାୟୋଃ ସୂର୍ଯ୍ୟଃ କ୍ଷିତେରୀଶୋ, ଜୀବନସ୍ୟ ଗଣାଧିପଃ'' ।

ଅର୍ଥାତ ପୃଥିବୀର ଅଧିପତି ଶିବ, ଜଳର ଅଧିପତି ଗଣେଶ, ତେଜର ଅଧିପତି ମାହେଶ୍ୱରୀ, ବାୟୁର ଅଧିପତି ସୂର୍ଯ୍ୟ ଓ ବ୍ୟୋମର ଅଧିପତି ବିଷ୍ଣୁ ଅଟନ୍ତି । ଏହି ପଞ୍ଚ ଦେବଦେବୀ ପରସ୍ପର ପୃଥକ ଭାବେ ପ୍ରତୀୟମାନ ହେଲେ ମଧ୍ୟ ବସ୍ତୁତଃ ସେମାନେ ନିରାକାର ବ୍ରହ୍ମଙ୍କର ସାକାର ବିଗ୍ରହ । ସେଥିପାଇଁ କୁହାଯାଏ ''ଉପାସନା ପଞ୍ଚବିଧଂ ବ୍ରହ୍ମୋପାସନ ମେବ,'' ଅର୍ଥାତ ପଞ୍ଚ ଦେବଦେବୀଙ୍କ ଉପାସନା ପରୋକ୍ଷରେ ପରଂବ୍ରହ୍ମଙ୍କର ଉପାସନା ଭାବରେ ଗ୍ରହଣୀୟ । ଭାରତୀୟ ସଂସ୍କୃତିରେ ଏହି ପଞ୍ଚ ଦେବଦେବୀଙ୍କ ପୂଜାବିଧି ଶାସ୍ତ୍ରସମ୍ମତ ଏବଂ କେଉଁ ଏକ ସ୍ମରଣାତୀତ କାଳରୁ ହୋଇଛି ପ୍ରଚଳିତ । ଆଚାର୍ଯ୍ୟ ଶଙ୍କରଙ୍କ ଭାଷାରେ,

''ଆଦିତ୍ୟଂ ଅମ୍ବିକାଂ ବିଷ୍ଣୁଂ, ଗଣନାଥଂ ମହେଶ୍ୱରମ ।
ପଞ୍ଚଯଜ୍ଞ ପରେ ନିତ୍ୟଂ, ଗୃହସ୍ଥଃ ପଞ୍ଚ ପୂଜୟେତ''

ଏହି ପଞ୍ଚଦେବତାଙ୍କୁ ଆଧାର କରି ସନାତନ ଧର୍ମାବଲମ୍ବୀମାନେ ପାଞ୍ଚଗୋଟି ସଂପ୍ରଦାୟରେ ହୋଇଛନ୍ତି ବିଭକ୍ତ । ସେମାନେ ହେଲେ, ଆଦିତ୍ୟଙ୍କୁ ଆଧାର କରି ସୌର, ଅମ୍ବିକାଙ୍କୁ ଆରାଧ କରି ଶାକ୍ତ, ବିଷ୍ଣୁଙ୍କୁ ଉପାସ୍ୟ କରି ବୈଷ୍ଣବ, ଗଣେଶଙ୍କ ଭକ୍ତ ଗାଣପତ୍ୟ ଏବଂ ଶିବଙ୍କ

ଅନୁଗତ ଶୈବ । ଧର୍ମ ଓ ମତ ନିର୍ବିଶେଷରେ ଏହି ପଞ୍ଚ ଦେବଙ୍କ ଉପାସନା ମଧ୍ୟରେ ସୂର୍ଯ୍ୟଙ୍କ ନିରାଜନା ଗ୍ରହଣ କରିଛି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା । ପ୍ରତ୍ୟେକ ସନାତନ ଧର୍ମାବଲମ୍ବୀ ଶଯ୍ୟା ତ୍ୟାଗ ପରେ ଉଦୟଭାନୁଙ୍କୁ ନମସ୍କାର କରିବା ସହିତ ସ୍ନାନ ସମୟରେ ବା ତତ୍ପରେ ତପନଙ୍କ ଉଦ୍ଦେଶ୍ୟରେ ପ୍ରଦାନ କରିଥାନ୍ତି ସୂର୍ଯ୍ୟାର୍ଘ୍ୟ । ଭାନୁ ନମସ୍କାର ପ୍ରିୟ ନ୍ୟାୟରେ ଅନ୍ତରର ଗଭୀରତମ ପ୍ରଦେଶରୁ ସୂର୍ଯ୍ୟନାରାୟଣଙ୍କୁ ନିମ୍ନୋକ୍ତ ମନ୍ତ୍ର ଉଚ୍ଚାରଣ ପୂର୍ବକ ଅର୍ପଣ କରିଥାନ୍ତି ଭକ୍ତିପୂତ ପ୍ରଣତି ।

ଓଁ ନମୋସ୍ତୁ ସୂର୍ଯ୍ୟାୟ ସହସ୍ର ଭାନବେ,
ନମୋସ୍ତୁ ବୈଶ୍ୱାନର ଜାତ ବେଦସେ ।
ତ୍ୱମେବ ଚାର୍ଘ୍ୟଂ ପ୍ରତିଗୃହଣଦେବ,
ଦେବାଧି ଦେବାୟ ନମୋ ନମସ୍ତେ'' ।।

ସୂର୍ଯ୍ୟଙ୍କ ଜନ୍ମ ବୃତ୍ତାନ୍ତ : ମରିଚି ଓ କଳା (କର୍ଦ୍ଦମ ଋଷିଙ୍କ ଜ୍ୟେଷ୍ଠ ଦୁହିତା)ଙ୍କ ଗର୍ଭରୁ ସମ୍ଭୂତ କଶ୍ୟପ ଋଷି, ଦକ୍ଷ ଓ ଅସିକ୍ନୀଙ୍କ ଗର୍ଭରୁ ଜାତ ତେର ଗୋଟି କନ୍ୟାଙ୍କର କରିଥିଲେ ପାଣି ଗ୍ରହଣ । ସେମାନଙ୍କ ମଧ୍ୟରୁ ପ୍ରଥମ ପତ୍ନୀ ଅଦିତିଙ୍କ ଗର୍ଭରୁ ଜନ୍ମନେଇଥିଲେ ଦେବତାଗଣ । କଶ୍ୟପ ଏବଂ ଅଦିତି ପୁତ୍ର ସନ୍ତାନ ଲାଭ କରିବା ନିମନ୍ତେ ଆରାଧନା ଓ ଆରୋଗ୍ୟର କ୍ଷେତ୍ର କୋଣାର୍କ ସନ୍ନିକଟ ଚନ୍ଦ୍ରଭାଗା କୂଳରେ ଯଜ୍ଞ ନାରାୟଣଙ୍କର ଉପାସନା କରି ସୂର୍ଯ୍ୟ ଦେବତାଙ୍କୁ ପୁତ୍ର ରୂପେ ମାଘ ମାସ ଶୁକ୍ଳ ପକ୍ଷ ସପ୍ତମୀ ତିଥିରେ ପ୍ରାପ୍ତ ହୋଇଥିଲେ । ପରବର୍ତ୍ତୀ ସମୟରେ ସେ ସ୍ଥାନ କଶ୍ୟପପୁର ନାମରେ ହୋଇଥିଲା ନାମିତ । ନୃସିଂହ ପୁରାଣରେ ସୂର୍ଯ୍ୟ ଦେବଙ୍କର ଜନ୍ମ ବୃତ୍ତାନ୍ତ ହୋଇଛି ବର୍ଣ୍ଣିତ ।

ଯଥା :–

''ଯେ ଅଦିତି ପ୍ରତ୍ୟକ୍ଷରେ ଅଟେ ଆଦିମାତ ।
ଇନ୍ଦ୍ର, ସୂର୍ଯ୍ୟ ବରୁଣଙ୍କୁ କରିବେକ ଜାତ ।।
ହରିହର ବ୍ରହ୍ମା ଅଂଶେ ହେବେ ତିନି ମୂର୍ତ୍ତି ।
ଏ ନିମନ୍ତେ ସେ ଅଦିତି ଉପୁଜି ଅଛନ୍ତି ।।
ତହିଁ ଉତ୍ତାରୁ ଖସନ୍ତେ ପୁଣି ବିନ୍ଦୁ ଟୋପି ।
ରୁଦ୍ରଦେବ ଜନମିବେ ହୋଇ ସୂର୍ଯ୍ୟ ରୂପୀ ।।
ମହା ଶୁକ୍ଳ ରୂପୀ ସିନା ଅଟନ୍ତି ସେ କାଶୀ ।
ସେ ଜନ୍ମହେଲେ ଉଜ୍ଜ୍ୱଳ ଦିଗେ ଯିବ ଦିଶି ।।''

ସୂର୍ଯ୍ୟଦେବଙ୍କ ଜନ୍ମଦିବସକୁ ଉତ୍ସବମୁଖର କରିବା ସହିତ ଆଶୀର୍ବାଦ ପ୍ରାପ୍ତି ନିମନ୍ତେ ପ୍ରତିବର୍ଷ ମାଘମାସ ଶୁକ୍ଳ ପକ୍ଷ ସପ୍ତମୀ ତିଥିରେ ବହୁ ଭକ୍ତ ଏଠାରେ ହୁଅନ୍ତି ସମବେତ ଏବଂ ପ୍ରାତଃକାଳୀନ ସୂର୍ଯ୍ୟଙ୍କୁ କରିଥାନ୍ତି ଆରାଧନା ।

**କ୍ଷେତ୍ରର ମହିମା :** ସତ୍ୟ ଯୁଗରୁ ଏହି କ୍ଷେତ୍ରର ମହିମା ହୋଇଛି ବିସ୍ତାରିତ । ସୂର୍ଯ୍ୟଦେବଙ୍କ ଆରାଧନାର କ୍ଷେତ୍ର ଭାବରେ ଯୁଗେ ଯୁଗେ ଏହି କ୍ଷେତ୍ର ଆକର୍ଷିତ କରିଛି ଦେବତା, ମୁନି, ଋଷି, ସିଦ୍ଧ ସାଧକ ତଥା ମହାପୁରୁଷମାନଙ୍କୁ । ସୂର୍ଯ୍ୟଙ୍କର ନାମାନୁସାରେ ଏହି କ୍ଷେତ୍ର ଅର୍କ କ୍ଷେତ୍ର ଭାବରେ ଲାଭ କରିଛି ପ୍ରସିଦ୍ଧି । ପୁରାଣ ଶାସ୍ତ୍ରମାନଙ୍କରେ ଏହି ସ୍ଥାନକୁ ମଧ୍ୟ ପଦ୍ମକ୍ଷେତ୍ର ନାମରେ କରାଯାଇଛି ନାମିତ । କାରଣ ସୂର୍ଯ୍ୟଙ୍କ ସହିତ ପଦ୍ମ ପ୍ରତ୍ୟକ୍ଷ ଭାବରେ ସଂପର୍କିତ । ଉଭୟଙ୍କ ମଧ୍ୟରେ ଥିବା ଭାବ ଓ ଦର୍ଶନଗତ ସଂପର୍କ ସମସ୍ତଙ୍କ ମନ ମଧ୍ୟରେ ଆଧ୍ୟାତ୍ମିକତାର କରିଥାଏ ବୀଜବପନ । ଉଦୟ ସୂର୍ଯ୍ୟଙ୍କ ପ୍ରଥମ କିରଣ ଏହି ସ୍ଥାନରେ ହୋଇଥାଏ ପ୍ରତିଫଳିତ । ଏତଦ୍‌ବ୍ୟତୀତ ଭକ୍ତ ଗୟାସୁର ଜୀବନର ଅନ୍ତିମ ମୁହୂର୍ତ୍ତରେ ଭଗବାନ ବିଷ୍ଣୁଙ୍କୁ ଅଭୟ ମୁଦ୍ରାରେ ଆଶୀର୍ବାଦ କରିବାପାଇଁ କରିଥିଲା ଅନୁରୋଧ । ସେଥିପାଇଁ ବିଷ୍ଣୁ ଚତୁର୍ଭୁଜରୁ ଆୟୁଧମାନ ତ୍ୟାଗ କରି ତାର ମନୋବାଞ୍ଛା କରିଥିଲେ ପରିପୂର୍ଣ୍ଣ । ଚାରିଗୋଟି ସ୍ଥାନରେ ଭଗବାନଙ୍କ ଆୟୁଧମାନ ପଡ଼ି ସ୍ଥାନଗୁଡିକର ମହତ୍ତ୍ୱକୁ କରିଥିଲା ବିଶେଷଭାବରେ ପ୍ରଖ୍ୟାପିତ । ଶଙ୍ଖ ଶ୍ରୀକ୍ଷେତ୍ର ପୁରୀରେ, ଚକ୍ର ଏକାମ୍ରକ୍ଷେତ୍ର ଭୁବନେଶ୍ୱରରେ, ପଦ୍ମ କୋଣାର୍କରେ ଏବଂ ଗଦା ଯାଜନଗରେ ପଡି କ୍ଷେତ୍ରଗୁଡିକୁ ଯଥାକ୍ରମେ ଶଙ୍ଖକ୍ଷେତ୍ର, ଚକ୍ରକ୍ଷେତ୍ର, ପଦ୍ମକ୍ଷେତ୍ର ଏବଂ ଗଦାକ୍ଷେତ୍ର ନାମରେ ଆଣିଦେଇଥିଲା ନୂତନ ପରିଚୟ ।

**ଯୁଗେ ଯୁଗେ ଅର୍କକ୍ଷେତ୍ର** : ପ୍ରତି ଯୁଗରେ ଆରାଧନା, ସାଧନା ଓ ଆରୋଗ୍ୟର କ୍ଷେତ୍ର ଭାବେ କୋଣାର୍କ ଆକର୍ଷିତ କରିଛି ଦେବତାମାନଙ୍କଠାରୁ ଆରମ୍ଭ କରି ବହୁ ମୁନି ଋଷି ମହାପୁରୁଷ, ଭକ୍ତ, ରୋଗାକ୍ରାନ୍ତ ତଥା ସାଧାରଣ ଜନତାଙ୍କୁ । ଏତଦ୍‌ବ୍ୟତୀତ ଅନେକ ମତବାଦୀ, ଧର୍ମାବଲମ୍ବୀ ଓ ପନ୍ଥୀମାନେ ଏଠାକୁ ଆସି ସାଧନା ଓ ଆରାଧନାରେ ଲିପ୍ତ ରହି ସେମାନଙ୍କ ଅଭିଷ୍ଟ କରିଛନ୍ତି ପରିପୂର୍ଣ୍ଣ । ସତ୍ୟଯୁଗରେ ଉପର ବର୍ଣ୍ଣନା ଅନୁଯାୟୀ ଋଷି କଶ୍ୟପ ଏବଂ ଆଦିମାତା ଅଦିତି ଏହି କ୍ଷେତ୍ରକୁ ଆସି ତପ ସାଧନା କରି ସୂର୍ଯ୍ୟଙ୍କ ସହିତ ଦେବତାମାନଙ୍କୁ ପୁତ୍ର ରୂପେ ଲାଭ କରିଛନ୍ତି । ନୃସିଂହ ପୁରାଣ ଅନୁସାରେ ସୃଷ୍ଟି, ସ୍ଥିତି ଓ ପ୍ରଳୟର ଦେବତା ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ଅଂଶ ଭାବରେ କରୁଣ, ଇନ୍ଦ୍ର ଓ ସୂର୍ଯ୍ୟ ଜନ୍ମ ଲାଭକରି ଏ ସୃଷ୍ଟିକୁ କରିଛନ୍ତି ଗତିଶୀଳ ।

ତ୍ରେତୟା ଯୁଗରେ ନାରଦଙ୍କ ଉପଦେଶକ୍ରମେ ପ୍ରଭୁ ରାମଚନ୍ଦ୍ରଙ୍କ ଆଜ୍ଞାନୁସାରେ ଅନୁଜ ଶତ୍ରୁଘ୍ନ ଲବଣ ଦୈତ୍ୟକୁ ବିନାଶ କରିବା ନିମନ୍ତେ ଏହି କ୍ଷେତ୍ରକୁ ଆସି ତପସ୍ୟା ଆଚରଣ ପୂର୍ବକ ସିଦ୍ଧିଲାଭ କରି ଦୈତ୍ୟକୁ କରିଥିଲେ ନିଧନ । ଏତଦ୍ ବ୍ୟତୀତ ରାମଚନ୍ଦ୍ର ପ୍ରତ୍ୟହ ଆଦିତ୍ୟ ହୃଦୟ ପାଠ କରୁଥିଲେ । ରାମାୟଣ ବର୍ଣ୍ଣନା ଅନୁଯାୟୀ ପ୍ରଭୁ ରଘୁନାଥ ମଧ ଏ କ୍ଷେତ୍ରକୁ କରିଛନ୍ତି ଆଗମନ ଏବଂ ରାମଚଣ୍ଡୀଙ୍କୁ କରିଛନ୍ତି ପ୍ରତିଷ୍ଠା । କେବଳ ସେତିକି ନୁହେଁ ମର୍ଯ୍ୟାଦା ପୁରୁଷୋତ୍ତମ ମଧ ଶଙ୍ଖକ୍ଷେତ୍ରରେ ମହୋଦଧିର ଅନତି ଦୂରରେ ଏକ ଲାଉକୁ ମହାଦେବ ଭାବରେ ପ୍ରତିଷ୍ଠା ପୂର୍ବକ କରିଥିଲେ ପୂଜାର୍ଚ୍ଚନା । ପରବର୍ତ୍ତୀ ସମୟରେ ସେ ମହାଦେବ ଲୋକନାଥ ନାମରେ ହୋଇଛନ୍ତି ପ୍ରଖ୍ୟାତ ।

ଦ୍ୱାପର ଯୁଗରେ ଜାମ୍ବବତୀଙ୍କ ପୁତ୍ର ଶାମ୍ବ କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇ ଆରୋଗ୍ୟ ନିମନ୍ତେ ଆସିଥିଲେ ଏହି ଅର୍କକ୍ଷେତ୍ରକୁ । ଶାମ୍ବଙ୍କର କୁଷ୍ଠ ବ୍ୟାଧିରେ ଆକ୍ରାନ୍ତ ହେବା ସଂପର୍କରେ ବର୍ଣ୍ଣନା ରହିଛି ଭବିଷ୍ୟ ପୁରାଣ, ବରାହ ପୁରାଣ ଏବଂ ଶାମ୍ବ ପୁରାଣରେ । ଶାମ୍ବଙ୍କର କୁଷ୍ଠରୋଗ ପଶ୍ଚାତ୍ ଭାଗରେ ରହିଛି ଅନେକ କାରଣ । ଶାମ୍ବ ଦେଖିବାକୁ କାମଦେବଙ୍କ ପରି ଥିଲେ ଅତ୍ୟନ୍ତ ସୁନ୍ଦର । ଏଥିପାଇଁ ତାଙ୍କୁ ମନ ଭିତରେ ଥିଲା ଗର୍ବ ଏବଂ ଅହଂକାର । ଶାମ୍ବ ଅନେକ ସମୟରେ ତାଙ୍କ ପିତାଙ୍କ ଅନୁପସ୍ଥିତିରେ ବିମାତାମାନଙ୍କୁ ସମ୍ମାନ ପ୍ରଦର୍ଶନ ପରିବର୍ତ୍ତେ ମିଥ୍ୟାର ଆଶ୍ରୟ ନେଇ ତାଚ୍ଛଲ୍ୟ, ବ୍ୟଙ୍ଗ, ବିଦ୍ରୂପ ସହିତ ଶାଳୀନତା ବିହୀନ ଆଚରଣ କରୁଥିଲେ ପ୍ରଦର୍ଶନ । ଏ ସବୁ ଶ୍ରୀକୃଷ୍ଣଙ୍କର କର୍ଣ୍ଣ ଗୋଚର ହେଉଥିଲେ ସୁଦ୍ଧା ସେ ଧୈର୍ଯ୍ୟର ସହିତ ପୁତ୍ର ଶାମ୍ବର କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ନଜର ରଖୁଥିଲେ । ଏକଦା ଶାମ୍ବ ନାରଦ ମୁନିଙ୍କୁ ଥଟ୍ଟା ପରିହାସ କରିବାରୁ ସେ ଦୁଃଖିତ ହେଲେ ଏବଂ ଶାମ୍ବକୁ ଉଚିତ ଶିକ୍ଷା ଦେବା ପାଇଁ କ୍ଷେତ୍ର କଲେ ପ୍ରସ୍ତୁତ । ଥରେ ବିମାତାମାନେ ସ୍ନାନ କରୁଥିବା ସମୟରେ ସ୍ନାନାଗାର ନିକଟକୁ ଯିବାପାଇଁ ନାରଦ ମୁନି ଶାମ୍ବକୁ ପ୍ରରୋଚିତ କଲେ । ଫଳସ୍ୱରୂପ ଶାମ୍ବ ମାତାମାନଙ୍କର ସ୍ନାନକାଳୀନ ଦୃଶ୍ୟ ଉପଭୋଗ କରିବା ସମୟରେ ମାତାମାନଙ୍କର ଦୃଷ୍ଟି ପଡିବାରୁ ସେମାନେ ଶାମ୍ବର ଏତାଦୃଶ ଘୃଣ୍ୟ କାର୍ଯ୍ୟକଳାପ ସଂପର୍କରେ ଶ୍ରୀକୃଷ୍ଣଙ୍କୁ ଅବଗତ କରାଇଲେ । ପୂର୍ବରୁ ପୁତ୍ରର କାର୍ଯ୍ୟକଳାପରେ ଅସନ୍ତୁଷ୍ଟ ଥିବା ପିତା ଶ୍ରୀକୃଷ୍ଣ ପୁତ୍ରକୁ କୁଷ୍ଠ ରୋଗରେ ଆକ୍ରାନ୍ତ ହେବା ପାଇଁ ଦେଲେ ଅଭିଶାପ । ପର ମୁହୂର୍ତ୍ତରେ ଶାମ୍ବ ଅନୁତାପ ଅନଳରେ ଦଗ୍ଧୀଭୂତ ହୋଇ ପିତାଙ୍କ ନିକଟରେ କଲେ କ୍ଷମା ଭିକ୍ଷା । ଅଭିଶାପରୁ ମୁକ୍ତ ହେବାପାଇଁ ଦ୍ୱାରିକାଧିପତି ପୁତ୍ର ଶାମ୍ବକୁ ପୂର୍ବ ଉପକୂଳରେ ଥିବା ଅର୍କକ୍ଷେତ୍ରରେ ସୂର୍ଯ୍ୟଦେବଙ୍କୁ ଉପାସନା କରିବା ନିମନ୍ତେ ଦେଲେ ଉପଦେଶ । ଶାମ୍ବ ପୁରାଣ ଅନୁଯାୟୀ, ଶାମ୍ବ ଋଷି ଦୁର୍ବାସାଙ୍କୁ ଅସମ୍ମାନ କରିବାରୁ ଋଷି କ୍ରୋଧାନ୍ୱିତ ହୋଇ କୁଷ୍ଠ ବ୍ୟାଧିରେ ଆକ୍ରାନ୍ତ ହେବାପାଇଁ ଅଭିଶାପ ଦେଇଥିଲେ । ଅଭିଶପ୍ତ ଶାମ୍ବ ପିତାଙ୍କ ଉପଦେଶାନୁକ୍ରମେ ଏହି ଅର୍କକ୍ଷେତ୍ରକୁ ଆସି ଚନ୍ଦ୍ରଭାଗା କୂଳରେ

ମୈତ୍ରେୟବନ (କଶ୍ୟପପୁର)ଠାରେ ଆଦିତ୍ୟଙ୍କର କରିଥିଲେ ଆରାଧନା । ଦ୍ୱାଦଶ ବର୍ଷ ତପସ୍ୟାରେ ମଗ୍ନ ରହି ସୂର୍ଯ୍ୟଦେବଙ୍କ କରୁଣାରୁ ଶାମ୍ବ ଚନ୍ଦ୍ରଭାଗାରେ ସ୍ନାନ ଉପରାନ୍ତେ ହୋଇଥିଲେ ରୋଗମୁକ୍ତ । ରୋଗମୁକ୍ତ ଦିବସଟି ଥିଲା ପୌଷ ମାସ ଶୁକ୍ଳ ପକ୍ଷ ଦଶମୀ ତିଥି, ଯାହା ପରେ 'ଶାମ୍ବ ଦଶମୀ' ନାମରେ ହୋଇଛି ନାମିତ । ସେହିଦିନଠାରୁ ପୁରପଲ୍ଲୀ ସର୍ବତ୍ର ଶାମ୍ବଦଶମୀ ତିଥିରେ ଦିବସବ୍ୟାପୀ ସୂର୍ଯ୍ୟଦେବଙ୍କୁ କରାଯାଏ ଆରାଧନା ।

ସେହିପରି କଳିଯୁଗରେ ଗଙ୍ଗ ବଂଶୀୟ ରାଜା ଅନଙ୍ଗଭୀମ ଦେବଙ୍କ ପୁତ୍ର ଲାଙ୍ଗୁଳା ନରସିଂହଦେବ ମାତ୍ର ଅଠର ବର୍ଷ ବୟସରେ ଦାକ୍ଷିଣାତ୍ୟରୁ ରାଜ୍ୟ ଜୟକରି ଆଣିଥିଲେ ବିପୁଳ ଧନରତ୍ନ । ରାଜମାତା କସ୍ତୁରୀ ଦେବୀ ଥିଲେ ସୂର୍ଯ୍ୟ ଉପାସିକା । ଆଦିତ୍ୟଙ୍କ କୃପାରୁ ସେ ହୋଇଥିଲେ ପୁତ୍ରବତୀ । ପୁତ୍ରର ବିଜୟ ଉଲ୍ଲାସରେ ଉଲ୍ଲସିତା ରାଜମାତା ପୁତ୍ର ନରସିଂହଦେବଙ୍କୁ ଅର୍କକ୍ଷେତ୍ରରେ ସୂର୍ଯ୍ୟଦେବଙ୍କର ଏକ ମନ୍ଦିର ନିର୍ମାଣ ନମନ୍ତେ ଦେଲେ ପ୍ରସ୍ତାବ । ମାତାଙ୍କ ଇଚ୍ଛାକୁ ପୂର୍ଣ୍ଣ କରିବା ନିମନ୍ତେ ଲାଙ୍ଗୁଳା ନରସିଂହଦେବ ଚନ୍ଦ୍ରଭାଗା ନଦୀ ମୁହାଣ ଓ ସମୁଦ୍ରର ସଂଗମ ସ୍ଥଳରେ ଏକ ଭବ୍ୟ କାରୁକାର୍ଯ୍ୟପୂର୍ଣ୍ଣ ସୂର୍ଯ୍ୟ ମନ୍ଦିର ନିର୍ମାଣ କରିଥିଲେ । ଏହି ମନ୍ଦିରରେ ସୂର୍ଯ୍ୟ ନାରାୟଣଙ୍କ ବିଗ୍ରହ ୧୨୫୬ ମସିହା ପବିତ୍ର ମାଘମାସ ଶୁକ୍ଳ ପକ୍ଷ ସପ୍ତମୀ ତିଥି ରବିବାରରେ ପ୍ରତିଷ୍ଠା ହୋଇଥିଲା । ଏହି ମନ୍ଦିରର ନିର୍ମାଣଶୈଳୀ ଏପରି ଥିଲା ଯେ ଉଦୟକାଳୀନ ସୂର୍ଯ୍ୟଙ୍କର ପ୍ରଥମ କିରଣ ଗର୍ଭଗୃହରେ ସ୍ଥାନିତ ସୂର୍ଯ୍ୟଦେବଙ୍କର ମୂର୍ତ୍ତିରେ ଥିବା ହୀରା ଉପରେ ପଡି ପ୍ରତିଫଳିତ ରଶ୍ମି ମନ୍ଦିରକୁ ଆଲୋକିତ କରୁଥିଲା ।

**ସୂର୍ଯ୍ୟଦେବ ଏବଂ ମନ୍ଦିର ସହିତ ଦ୍ୱାଦଶ ଅଙ୍କର ସମ୍ପର୍କ** : ସୂର୍ଯ୍ୟ ଦେବ ଏବଂ କୋଣାର୍କଠାରେ ନିର୍ମିତ ସୂର୍ଯ୍ୟ ମନ୍ଦିରର ଦ୍ୱାଦଶ ବା ବାର (୧୨) ସଂଖ୍ୟା ସହିତ ରହିଛି ବାରଗୋଟି ସମ୍ପର୍କ, ଯାହା ବାର ସଂଖ୍ୟାର ମହତ୍ତ୍ୱକୁ କରୁଛି ପ୍ରତିପାଦିତ ।

୧. ସୂର୍ଯ୍ୟଦେବ ହେଉଛନ୍ତି ଦ୍ୱାଦଶ ଶକ୍ତିଯୁକ୍ତ । ଏହି ଶକ୍ତିମାନେ ହେଲେ ତାପିନି, ଧୂମା, ମାରିଚି, ଜ୍ୱାଳିନୀ,ଯୁଗଯାନୀ, ସୁଦାମା, ଭୋଗଦା, ବିଶ୍ୱା, ବୋଧିନୀ, ସନ୍ନିରୋଧିନୀ, ଧରଣୀ ଓ କ୍ଷମା । ସାଧକଗଣ ଗ୍ରହ, ନକ୍ଷତ୍ରମାନଙ୍କ ସହିତ ତପନଙ୍କର ଦ୍ୱାଦଶ ଶକ୍ତିକୁ ସଂଯୁକ୍ତ କରି ସାଧନାରେ ସିଦ୍ଧିଲାଭ କରିଥାନ୍ତି ।

୨. ଆଦିତ୍ୟ ଦ୍ୱାଦଶ ନାମ ସ୍ତୋତ୍ରମ୍‌ରେ ସୂର୍ଯ୍ୟଙ୍କର ବାରଗୋଟି ନାମ ରହିଛି । ଏହି ନାମ ସମୂହ ହେଲେ ଆଦିତ୍ୟ, ଦିବାକର, ଭାସ୍କର, ପ୍ରଭାକର, ସହସ୍ରାଂଶୁ, ତ୍ରିଲୋଚନ, ହରିଦଶ୍ୱ, ବିଭାବସୁ, ସବିତା, ଅଂଶୁମାନ, ତପନ, ଏବଂ ସୂର୍ଯ୍ୟ ।

୩. ସୌର ଗଣନାରେ ମାସ ସଂଖ୍ୟା ହେଉଛି ବାର ଏବଂ ରାଶି ସଂଖ୍ୟା ମଧ ବାର । ପ୍ରତି ମାସରେ ସୂର୍ଯ୍ୟ ଦେବ ଗୋଟିଏ ଗୋଟିଏ ରାଶିରେ କରନ୍ତି ଅବସ୍ଥାନ । ଏହି ରାଶିମାନେ ହେଲେ ମେଷ, ବୃଷ, ମିଥୁନ, କର୍କଟ, ସିଂହ,କନ୍ୟା, ତୁଳା, ବିଛା, ଧନୁ, ମକର, କୁମ୍ଭ ଓ ମୀନ । ସୌର ବର୍ଷ ମେଷ ସଂକ୍ରାନ୍ତି ବା ମହାବିଷୁବ ସଂକ୍ରାନ୍ତିରୁ ହୋଇଥାଏ ଆରମ୍ଭ ।

୪. ଦ୍ୱାଦଶ ରାଶିରେ ଅବସ୍ଥାନ କରୁଥିବା ସୂର୍ଯ୍ୟଙ୍କର ନାମ ମଧ ବାର, ଯାହା ଦ୍ୱାଦଶ ଆଦିତ୍ୟ ଭାବରେ ଶ୍ରୀମଦ ଭାଗବତର ଦ୍ୱାଦଶ ସ୍କନ୍ଧ ଅନ୍ତର୍ଗତ ଏକାଦଶ ଅଧ୍ୟାୟରେ ବିସ୍ତୃତ ଭାବରେ ହୋଇଛି ବର୍ଣ୍ଣିତ । ଯଥା :– ବାର ଆଦିତ୍ୟ ବାର ମାସେ, କହିବା ବିସ୍ତାରି ବିଶେଷେ ।'' ବୈଶାଖ ବା ମେଷ ମାସରେ ସୂର୍ଯ୍ୟଙ୍କର ନାମ ଅର୍ଯ୍ୟମା, ଜ୍ୟେଷ୍ଠରେ ମିତ୍ର, ଆଷାଢ଼ରେ ବରୁଣ, ଶ୍ରାବଣରେ ଇନ୍ଦ୍ର, ଭାଦ୍ରବରେ ବିବସ୍ୱାନ, ଆଶ୍ୱିନରେ ତ୍ୱଷ୍ଟା, କାର୍ତ୍ତିକରେ ବିଷ୍ଣୁ, ମାର୍ଗଶିରରେ ଆଦିତ୍ୟ, ପୌଷରେ ଭଗ, ମାଘରେ ପୂଷା, ଫାଲଗୁନରେ ପର୍ଜନ୍ୟ ଓ ଚୈତ୍ରରେ ଧାତା । ପ୍ରତିମାସରେ ସୂର୍ଯ୍ୟଙ୍କର ଏକ ଚକ ବିଶିଷ୍ଟ ରଥରେ ସପ୍ତ ନିଯୋଗ ଯଥା:– ଯକ୍ଷ, ଗନ୍ଧର୍ବ, ବିଦ୍ୟାଧର, ଅପ୍‌ସରା,

ରକ୍ଷ, ଋଷି ଓ ନାଗମାନେ ହୋଇଥାନ୍ତି ପରିବର୍ତ୍ତନ । ଏ ସଂପର୍କରେ ଦ୍ୱାଦଶ ସ୍କନ୍ଧରେ ରହିଛି ବର୍ଣ୍ଣନା ।

ଯଥା :-

''ରଥ ମଣ୍ଡଳର ବିଚାର । ଯକ୍ଷ ଗନ୍ଧର୍ବ ବିଦ୍ୟାଧର ॥

ଅପ୍ସରା ରକ୍ଷ ଋଷିନାଗ । ଏ ଆଦି ସପତ ନିଯୋଗ ॥''

ଏତଦବ୍ୟତୀତ ସାରଥି ଅରୁଣଙ୍କ ସହିତ ସାତ ଗୋଟି ଅଶ୍ୱ ରଥରେ ହୋଇଥାନ୍ତି ସଂଯୁକ୍ତ । ସେମାନେ ହେଲେ ସାତ ଗୋଟି ଛନ୍ଦ । ଯଥା:- ଗାୟତ୍ରୀ, ଉଷ୍ଣିକ, ଅନୁଷ୍ଟୁପ, ତ୍ରିଷ୍ଟୁପ, ବୃହତୀ, ପଙ୍କ୍ତି ଓ ଜଗତି ।

୫. ଶାମ୍ବ ରୋଗମୁକ୍ତ ହେବା ପାଇଁ ବାରବର୍ଷ ସୂର୍ଯ୍ୟଙ୍କୁ ତପସ୍ୟା କରିଥିଲେ ।

୬. ଆମ ଶରୀରରେ ନିଃଶ୍ୱାସ, ପ୍ରଶ୍ୱାସ ଓ ରକ୍ତର ଚାରଣ ଭୂମି ବା ମୁଖ୍ୟ କେନ୍ଦ୍ର ହେଉଛି ହୃଦୟ, ଯାହାର ଅନ୍ୟନାମ ହୃଦପଦ୍ମ । ଏହି ନିଃଶ୍ୱାସ, ପ୍ରଶ୍ୱାସ, ରକ୍ତ ଆଦି ସଂଚାଳନକାରୀ ଅଂଶ ହେଉଛି ବାୟୁ ତତ୍ତ୍ୱ । ଏହି ବାୟୁ ତତ୍ତ୍ୱର ଅଧିପତି ହେଉଛନ୍ତି ସୂର୍ଯ୍ୟ । ଆମ ଶରୀରରେ ଥିବା ଷଡ଼ଚକ୍ର ମଧ୍ୟରୁ ହୃଦୟ ହେଉଛି ଅନାହତ ଚକ୍ର । ଏହି ଚକ୍ରରେ ରହିଛି ଦ୍ୱାଦଶ ଦଳ ବା ପାଖୁଡା ବିଶିଷ୍ଟ ପଦ୍ମ । ସୂର୍ଯ୍ୟଙ୍କ କିରଣ ଆମ ହୃଦୟରେ ଥିବା ପ୍ରାଣ ଶକ୍ତିକୁ କରେ ସଂଜୀବିତ ।

୭. କୋଣାର୍କ ମନ୍ଦିର ନିର୍ମାଣ କରିବାଲାଗି ଶିଳ୍ପୀମାନଙ୍କୁ ବାର ବର୍ଷ ସମୟ ଲାଗିଥିଲା ।

୮. ଏହି ମନ୍ଦିର ନିର୍ମାଣ କରିବା ନିମନ୍ତେ ବାରଶହ ବର୍ଦ୍ଧକୀ କାରିଗର ହୋଇଥିଲେ ନିଯୁକ୍ତ ।

୯. ଏହି ମନ୍ଦିର ନିର୍ମାଣ କରିବା ପାଇଁ ରାଜା ତାଙ୍କର ବାର ବର୍ଷର ରାଜସ୍ୱ ବ୍ୟୟ କରିଥିଲେ ।

୧୦. ବାର ଏକର ପରିମିତ ସ୍ଥାନରେ କୋଣାର୍କ ସୂର୍ଯ୍ୟମନ୍ଦିର ଅବସ୍ଥିତ ।

୧୧. ସୂର୍ଯ୍ୟ ମନ୍ଦିରର ଆକୃତି ହେଉଛି ରଥ ସଦୃଶ । ଏହି ରଥାକୃତି ମନ୍ଦିରର ବାମ ପାର୍ଶ୍ୱରେ ବାର ଏବଂ ଦକ୍ଷିଣ ପାର୍ଶ୍ୱରେ ବାରଗୋଟି ଚକ ରହିଅଛି ।

୧୨. ବାର ବର୍ଷ ବୟସର ବାଳକ ଧରମା କୋଣାର୍କ ସ୍ଥିତ ଅସଂପୂର୍ଣ୍ଣ ସୂର୍ଯ୍ୟମନ୍ଦିରକୁ ମୁଦକରି ମନ୍ଦିର ନିର୍ମାଣର କାର୍ଯ୍ୟକୁ ସଂପୂର୍ଣ୍ଣ କରିଥିଲା ।

ଆରାଧନା ଏବଂ ଆରୋଗ୍ୟର ପାବନ କ୍ଷେତ୍ର କୋଣାର୍କର ଉପାସ୍ୟ ଦେବତା ସବିତା ହେଉଛନ୍ତି ଏକାଧାରରେ ତ୍ରିଶକ୍ତି – ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସମାହାର । ସେ ସୃଷ୍ଟି, ସ୍ଥିତି ଏବଂ ବିଲୟର ଦେବତା । ସୂର୍ଯ୍ୟଙ୍କ ଉଦୟଠାରୁ ଅସ୍ତ ପର୍ଯ୍ୟନ୍ତ ବିଭିନ୍ନ ସମୟର କିରଣ ରାଜି ଏହି ତ୍ରିଶକ୍ତିଙ୍କ ସ୍ଥିତିକୁ କରିଥାଏ ପ୍ରମାଣିତ । ଯଜ୍ଞ କଳ୍ପଦ୍ରୁମରେ ଏହାର ରହିଛି ବର୍ଣ୍ଣନା ।

ଯଥା :-

''ଉଦୟେ ବ୍ରହ୍ମଣୋ ରୂପଂ, ମଧ୍ୟାହ୍ନେ ତୁ ମହେଶ୍ୱରଃ ।
ଅସ୍ତମାନେ ସ୍ୱୟଂ ବିଷ୍ଣୁ, ତ୍ରିମୂର୍ତ୍ତିଶ୍ଚ ଦିବାକର ॥''

ଅର୍ଥାତ ସୂର୍ଯ୍ୟଦେବ ଉଦୟ କାଳରେ ବ୍ରହ୍ମା, ମଧ୍ୟାହ୍ନରେ ମହେଶ୍ୱର ଏବଂ ଅସ୍ତକାଳରେ ବିଷ୍ଣୁ ଭାବରେ ଉପାସକଙ୍କ ଦ୍ୱାରା ହୁଅନ୍ତି ଉପାସିତ । ବିଜ୍ଞାନ ମଧ୍ୟ ସୌର ଜଗତର ଆରାଧ ଭାବେ ସୂର୍ଯ୍ୟଙ୍କୁ କରିଛି ଗ୍ରହଣ ଏବଂ ସୂର୍ଯ୍ୟଙ୍କଠାରୁ ସମସ୍ତ ଗ୍ରହମାନଙ୍କର ଉତ୍ପତ୍ତିର ତଥ୍ୟକୁ କରିଛି ସାର୍ବଜନୀନ ।

ଦୃଶ୍ୟମାନ ଜଗତର ସ୍ଥିତିକୁ ଗତିଶୀଳ କରିବାରେ ସୂର୍ଯ୍ୟ ନାରାୟଣଙ୍କର ଉପସ୍ଥିତି ଏକାନ୍ତ ଅପରିହାର୍ଯ୍ୟ । ଜୀବମାନଙ୍କର ଶରୀରକୁ କାର୍ଯ୍ୟକ୍ଷମ କରିବା ସହିତ ଅରୋଗ୍ୟ ରଖିବା ନିମନ୍ତେ ସବିତାଙ୍କ କିରଣ ମହୌଷଧି ସଦୃଶ । କ୍ଷେତ୍ରାଧିପତି ସୂର୍ଯ୍ୟଦେବଙ୍କ ପରି ପଦ୍ମକ୍ଷେତ୍ର କୋଣାର୍କ ମଧ୍ୟ ପୌରାଣିକ ଏବଂ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏକ ପାବନ କ୍ଷେତ୍ର ଭାବେ କାଳ କାଳ

ଧରି ଆକର୍ଷିତ କରୁଥିବ, ସୁର ନର, ସିଦ୍ଧ ସାଧକ, ରୋଗୀ ଭୋଗୀମାନଙ୍କୁ ତା'ର ନୈସର୍ଗିକ ଶୋଭାରାଜିରେ କରିବା ପାଇଁ ବିଚରଣ, ସିଦ୍ଧିଲାଭ ଉଦ୍ଦେଶ୍ୟରେ ଯୋଗ ସାଧନ, ମନର ଅଭୀଷ୍ଟ କରିବା ପାଇଁ ପରିପୂର୍ଣ୍ଣ, ବ୍ୟାଧି ନିବାରଣ ନିମନ୍ତେ ଗ୍ରହଣ କରିବା ପାଇଁ ରବିଙ୍କର କିରଣ ଏବଂ କୃପାଲାଭ ନିମନ୍ତେ ଉଦିତ ସୂର୍ଯ୍ୟଙ୍କୁ ଦର୍ଶନ ସହିତ ସୂର୍ଯ୍ୟାର୍ଘ୍ୟ କରିବା ପାଇଁ ଅର୍ପଣ ।

ଶ୍ରୀକ୍ଷେତ୍ର ବିହାର, ଭୁବନେଶ୍ୱର

# ବନ୍ଦେ ଭାରତ ଜନନୀ

**ଡାକ୍ତର ରାମଚନ୍ଦ୍ର ରାଉତ**

ବନ୍ଦନା କରୁଛୁ ଭାରତ ମାତା !
ବିଶ୍ୱେ ବେଦ ପୁରାଣାଦି ପ୍ରଣିତା ।
ପାଦ ପ୍ରକ୍ଷାଳେ ଯା' ସାଗର ନୀର
ଶିରେ ମଣ୍ଡିତ ମୁକୁଟ ଗିରିବର ।
ପ୍ଲାବନୀ ମା' ଗଙ୍ଗା ପବିତ୍ରଧାର
ଚାରିଧାମ ଚାରିଯୁଗେ ରୁଚିର ।
ଓଁ କାର ମନ୍ତ୍ର ଯେଉଁଠୁ ଉତ୍ପତ୍ତି
ଶୂନ୍ୟ ଆକଳନ ସଂସ୍କୃତ ଉକ୍ତି ।
ଅଷ୍ଟାଧ୍ୟାୟୀ, ଅଷ୍ଟାଙ୍ଗ ଯୋଗ ଜ୍ଞାନ
ଗୀତା, ମହାଭାରତ, ରାମାୟଣ ।
ଗିରିରାଜ ନନ୍ଦିନୀ ସାଗର ଦୁଲଣୀ
ମା' ସରସ୍ୱତୀ ଝାନ୍ସୀର ରାଣୀ ।

ଚାରିଯୁଗେ ଚବିଶ ଅବତାର
ଧନୁର୍ବିଦ୍ୟା, ଆୟୁର୍ବେଦ ବିଚାର ।
ଗାଥା ଗାନ କଲେ ହେବ ପୁରାଣ
ତଥାପି ସବୁ ନହେବ ସମ୍ପୂର୍ଣ୍ଣ ।
ଦେଢ଼ଶହ କୋଟିଜନଙ୍କ ଜୟ ଗାନ
କରୁଛୁ ତୋ ପାଦପଦ୍ମ ବନ୍ଦନ ।

ସେବିକା ନିର୍ଦ୍ଦେଶକ
ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ
ବିଭାଗୀୟ ମୁଖ୍ୟ ଦପ୍ତର (ତଳ ମହଲା)
ଭୁବନେଶ୍ୱର–୧



# ଆମ ପରମ୍ପରାରେ ଶାମ୍ବ ଦଶମୀ

ସମ୍ବେଦନା ମିଶ୍ର

ସୂର୍ଯ୍ୟ ସକଳ ଶକ୍ତିର ଆଧାର । ହିନ୍ଦୁ ଶାସ୍ତ୍ର ଅନୁସାରେ ଆଲୋକ ଏବଂ ଜୀବନର ଉତ୍ସ ଭାବରେ ସୂର୍ଯ୍ୟଙ୍କୁ ଆରାଧନା କରାଯାଏ । ସେ ସମସ୍ତ କର୍ମର ସାକ୍ଷୀ ରହିଥାନ୍ତି । ଓଡ଼ିଶାର ବିଭିନ୍ନ ପର୍ବପର୍ବାଣି ସୂର୍ଯ୍ୟଦେବଙ୍କୁ ସମର୍ପିତ । ପୌଷ ମାସର ଶୁକ୍ଳ ପକ୍ଷ ଦଶମୀ ତିଥିରେ ପାଳିତ ହେଉଥିବା ଶାମ୍ବ ଦଶମୀ ସୂର୍ଯ୍ୟ ଉପାସନାର ଏକ ବିଶେଷ ତିଥି, ଯାହାକୁ ମାଆମାନେ ସେମାନଙ୍କର ସନ୍ତାନର ଦୀର୍ଘାୟୁ କାମନା କରି ସୂର୍ଯ୍ୟଦେବଙ୍କ ଉଦ୍ଦେଶ୍ୟରେ ପାଳନ କରନ୍ତି ।

ସୂର୍ଯ୍ୟ ଅନ୍ଧକାର ନାଶ କରନ୍ତି, ଆଲୋକ ପ୍ରଦାନ କରନ୍ତି ଏବଂ ସମସ୍ତ ପ୍ରକାରର ପାପ ନଷ୍ଟ କରନ୍ତି । ଅଥର୍ବ ବେଦ ଉଲ୍ଲେଖ ଅଛି ଯେ, ସୂର୍ଯ୍ୟ କିରଣରେ ରୋଗ ଉପଶମ ଶକ୍ତି ରହିଛି । ସୂର୍ଯ୍ୟ ଦେବଙ୍କରଠାରୁ ବିଚ୍ଛୁରିତ ହେଉଥିବା ସପ୍ତରଙ୍ଗର ବର୍ଣ୍ଣାଳିରେ ବିଭିନ୍ନ ପ୍ରକାରର ରୋଗର ନିରାକରଣ ଶକ୍ତି ରହିଛି, ଯାହାକି ବିଜ୍ଞାନ ସିଦ୍ଧ । ତେଣୁ ଶାମ୍ବ ଦଶମୀରେ ସୂର୍ଯ୍ୟଙ୍କୁ ବିଶେଷ ପୂଜା ଆରାଧନା ସହ ଆରୋଗ୍ୟ କାମନା କରାଯାଇଥାଏ ।

ବର୍ଷର ବାରମାସ ଯାକ ବିଭିନ୍ନ ପର୍ବପର୍ବାଣି ପାଳିତ ହେଉଥିଲେ ମଧ୍ୟ ମୁଖ୍ୟତଃ ଶ୍ରାବଣ ଅମାବାସ୍ୟା ଚିତାଲାଗିଠାରୁ ପୌଷ ଶୁକ୍ଳ ଦଶମୀ ବା ଶାମ୍ବଦଶମୀ ମଧ୍ୟରେ ଅଧିକାଂଶ ପର୍ବ ପାଳିତ ହୋଇଥାଏ । ଏହି ସମୟ ମଧ୍ୟରେ ପାଳିତ ହେଉଥିବା ପବପର୍ବାଣିରେ ଏଥିପାଇଁ ଗାଉଁଲୀ ଢଗ ରହିଛି, ଯଥା–'ଅଇଲା ଚିତୋଉ ନାନୀ/ ବାରଓଷା ପର୍ବ ସଙ୍ଗରେ ଘେନି, ଶମ୍ବର ଦଶମୀ ଅଲଣାଦାଉ/ସବୁ ଓଷା ବାର ଏଇଠି ଥାଉ' । ଶାମ୍ବ ଦଶମୀକୁ ଚାନ୍ଦ୍ରମାନ ବର୍ଷର ଶେଷ ପର୍ବ କହିବାର ତାତ୍ପର୍ଯ୍ୟ ହେଉଛି ଏହାପରେ ଚିତାଲାଗି ଅମାବାସ୍ୟା ପର୍ଯ୍ୟନ୍ତ ପ୍ରାୟ ଛଅମାସ ପର୍ଯ୍ୟନ୍ତ ଆଉ ଏତେ ପିଠାପଣାର ପର୍ବ ପଡ଼େ ନାହିଁ । ଓଡ଼ିଆଙ୍କ ସୁସ୍ୱାଦୁ, ସୁମିଷ୍ଟ, ତୃପ୍ତିକର ଖାଦ୍ୟ ପ୍ରସ୍ତୁତି ଦକ୍ଷତାର ଅସଲ ନିଦର୍ଶନ । କଥା ଅଛି–ଶମ୍ବର ଦଶମୀରେ ମଣିଷ ଗୋଟିଏକୁ ପିଠା ଗୋଟିଏ । କୃଷିପ୍ରଧାନ ଓଡ଼ିଶା ରାଜ୍ୟରେ ଏ ସମୟ ପନିପରିବାର ପ୍ରାଚୁର୍ଯ୍ୟର ସମୟ । ବିଭିନ୍ନ ପନିପରିବାରେ ଏ ପର୍ବରେ ଯେଉଁ ତରକାରୀ ପ୍ରସ୍ତୁତ ହୁଏ, ତାକୁ ଘଡ଼ଘଡ଼ା ତିଅଣ କୁହାଯାଏ । ଏହି ପର୍ବର ମୁଖ୍ୟ ହେଉଛି ଏହି ଘାଣ୍ଟ ତରକାରୀ ବା ଘଡ଼ାଘଡ଼ା ତିଅଣ ।

### ପୂଜାବିଧି

ନାରୀମାନେ ନିଜ ସନ୍ତାନସନ୍ତତିଙ୍କ ମଙ୍ଗଳ କାମନା କରି ଶାମ୍ବଦଶମୀ ପର୍ବ ନିଷ୍ଠାର ସହ ପାଳନ କରନ୍ତି । ଏହି ପର୍ବର ବିଶେଷତ୍ୱ ହେଉଛି ସୂର୍ଯ୍ୟଙ୍କର ଆକାଶରେ ତିନି ସ୍ଥିତିକୁ ଲକ୍ଷ୍ୟ କରି ଘରେ ତିନି ପ୍ରକାର ଧୂପ ବା ପୂଜା ଅନୁଷ୍ଠିତ ହୋଇଥାଏ । ଅରୁଣୋଦୟ ସମୟରେ ପ୍ରଥମ ଧୂପ ହୁଏ । ହିନ୍ଦୁ ନାରୀ ଶୁଦ୍ଧପୂତ ଶୁଚିମନ୍ତ ହୋଇ ଏହି ମୁହୂର୍ତ୍ତରେ ଫଳମୂଳ ଓ ମିଷ୍ଟାନ୍ନ ଇତ୍ୟାଦି ନୈବେଦ୍ୟ ବାଢ଼ନ୍ତି । ଏହି ବ୍ରାହ୍ମମୁହୂର୍ତ୍ତରେ ପୂଜାନୈବେଦ୍ୟ ବା ପ୍ରଥମ ଧୂପ ଅନୁଷ୍ଠାନ କରି ସୂର୍ଯ୍ୟପୁରାଣ ପାରାୟଣ କରିଥାନ୍ତି ।

ମଧ୍ୟାହ୍ନରେ ମଧ୍ୟାହ୍ନ ସୂର୍ଯ୍ୟ ତେଜୋଦୀପ୍ତ ଭାସ୍କରଙ୍କୁ ଦ୍ୱିତୀୟ ଧୂପ ଦିଆଯାଏ । ଏହା ଶାମ୍ବ ଦଶମୀର ମୁଖ୍ୟ ଧୂପ । ଏଥିରେ ଗଇଁଠା, ଅଟକାଳି, ବିଭିନ୍ନ ପ୍ରକାରର ପିଠା, ଖେଚୁଡ଼ି, ଘଡ଼ଘଡ଼ା ତିଅଣ ଆଦି ଭୋଗ ହୁଏ । ଶେଷଧୂପ ବା ତୃତୀୟ ଧୂପ ହେଉଛି ସନ୍ଧ୍ୟା ସମୟର ଅସ୍ତାଚଳଗାମୀ ସୂର୍ଯ୍ୟଦେବଙ୍କ ନିମିତ୍ତ । ଏହି ଧୂପରେ ମଧ୍ୟ ଏଣ୍ଡୁରି, କାକରା, ମାଲପୁଆ, ଗଜା ଆଦି ନୈବେଦ୍ୟ ଅର୍ପଣ କରାଯାଇଥାଏ ।

### ପୌରାଣିକ

ଶାମ୍ବପୁରାଣ ହେଉଛି ସୂର୍ଯ୍ୟପୁରାଣର ଅନ୍ତର୍ଗତ । ଏହି ଉପପୁରାଣ ଶାମ୍ବପୁରାଣରେ ଶାମ୍ବଦଶମୀର ତାତ୍ପର୍ଯ୍ୟ ବର୍ଣ୍ଣିତ । ଏହି ଶାମ୍ବପୁରାଣ ଦେବର୍ଷି ନାରଦ ଶ୍ରୀକୃଷ୍ଣ ଜାମ୍ବବତୀ ପୁତ୍ର ଶାମ୍ବଙ୍କୁ ଶୁଣାଇଛନ୍ତି । ଶାମ୍ବନାମାନୁସାରେ ଏହି ଦଶମୀକୁ ଶାମ୍ବ ଦଶମୀ, ଗାଁ ଗହଳରେ ଶମ୍ବର ଦଶମୀ କୁହାଯାଏ । କଥିତ ଅଛି, ଶ୍ରୀକୃଷ୍ଣଙ୍କ ସବୁ ପୁତ୍ର ମଧ୍ୟରେ ଜାମ୍ବବତୀ ଗର୍ଭଜାତ ଶାମ୍ବ ଅତ୍ୟନ୍ତ ସୁନ୍ଦର ଥିଲେ । ଦୁର୍ଯ୍ୟୋଧନଙ୍କ କନ୍ୟା ଲକ୍ଷଣାଙ୍କୁ ଶାମ୍ବ ଅପହରଣ କରି ଆଣିଲେ । ବଳରାମଙ୍କ ସହାୟତାରେ ଶାମ୍ବ ବିବାହ କଲେ ଦୁର୍ଯ୍ୟୋଧନ ପୁତ୍ରୀ ଲକ୍ଷଣାଙ୍କୁ । ଅନ୍ତଃପୁର ମଧ୍ୟରେ ଶ୍ରୀକୃଷ୍ଣ ସତ୍ୟଭାମାଙ୍କ ସହ ପ୍ରେମାଳାପରେ ମଗ୍ନଥିବା ବେଳେ ଦ୍ୱାର ଦେଶରେ ଶାମ୍ବଙ୍କୁ ଜଗାଇ ଆଦେଶ ଦେଇଥିଲେ– କାହାକୁ ଅନ୍ତଃପୁରକୁ ନ ଛାଡ଼ିବା ପାଇଁ । ଏ ସମୟରେ ମହର୍ଷି ଦୁର୍ବାସା ଦ୍ୱାରଦେଶରେ ଉପନୀତ ହେଇ ଶ୍ରୀକୃଷ୍ଣ ଦର୍ଶନ ଚାହିଁଲେ । ଶାମ୍ବ ଭୟଭୀତ ହୋଇ ଶ୍ରୀକୃଷ୍ଣଙ୍କୁ ଡାକି ଦେଲେ । ଶ୍ରୀକୃଷ୍ଣ ଶାମ୍ବଙ୍କୁ କୁଷ୍ଠ ରୋଗ ହେବା ନିମନ୍ତେ ଅଭିଶାପ ଦେଲେ । ଶ୍ରୀକୃଷ୍ଣ ପୁତ୍ରକୁ ଅଭିଶାପ ଦେଇ ଅନୁତପ୍ତ ହୋଇ ଦୁର୍ବାସାଙ୍କୁ ପୁତ୍ର ଶାମ୍ବର କୁଷ୍ଠ ମୁକ୍ତି ଉପାୟ ପଚାରିବାରୁ ଦୁର୍ବାସା ଅର୍କକ୍ଷେତ୍ର କୋଣାର୍କ କଥା କହି ଶାମ୍ବଙ୍କୁ ସେ କ୍ଷେତ୍ରରେ ସୂର୍ଯ୍ୟପୂଜା କରିବା ପାଇଁ ନିର୍ଦ୍ଦେଶ ଦେଲେ । ସଂସ୍କୃତ ଶାମ୍ବପୁରାଣରେ ଚନ୍ଦ୍ରଭାଗା ତୀର୍ଥ ମାହାତ୍ମ୍ୟ ବିଶଦ ବର୍ଣ୍ଣିତ । ଦେବର୍ଷି ନାରଦଙ୍କ ସହ ଶାମ୍ବ ପୁଣ୍ୟଧାମ ଚନ୍ଦ୍ରଭାଗା ତୀରରେ ପ୍ରବେଶ କଲେ । ସେହି ଦିନ ଥିଲା ପୌଷମାସ ଶୁକ୍ଳ ପକ୍ଷ ଦଶମୀ ତିଥି ।

ସେଠାରେ ସୂର୍ଯ୍ୟଙ୍କ ପୂଜାରାଧନା କଲେ । ସୂର୍ଯ୍ୟଙ୍କୁ ଚାହିଁ ଚାହିଁ ତପସ୍ୟା କଲେ । ଶାମ୍ବ ଚନ୍ଦ୍ରଭାଗା ନଦୀକୂଳରେ ତପସ୍ୟା କରି ସୂର୍ଯ୍ୟନାରାୟଣ ବା ପ୍ରଭୁ ଆଦିତ୍ୟ ନାରାୟଣଙ୍କର ଏକ ମଣି ବିଗ୍ରହ ପାଇଥିଲେ । ସୂର୍ଯ୍ୟ ହିଁ ଭଗବାନ ନାରାୟଣଙ୍କ ସ୍ୱରୂପ । ଇଷ୍ଟ ମନ୍ତ୍ର ହେଉଛି– 'ନମଃ ସବିତ୍ରେ ଜଗଦେକ ଚକ୍ଷୁଷେ ଜଗତ୍–ପ୍ରସୂତି–ସ୍ଥିତିନାଶ ହେତବେ/ ତ୍ରୈମୟାୟ ତ୍ରିଗୁଣାତ୍ମଧାରିଣେ ବିରଞ୍ଚି ନାରାୟଣ ଶଙ୍କରାତ୍ମନେ ନମଃ' । ତାଙ୍କରି ଆଶୀର୍ବାଦ ବଳରେ ଶାମ୍ବ ଦୁରାରୋଗ୍ୟ ବ୍ୟାଧି ଦୂର ହୋଇ ସୁନ୍ଦର ଶରୀର ଲାଭ କରିଥିଲେ । ଏଇ ଦିନଟି ଥିଲା ମାଘ ମାସ ଶୁକ୍ଳ ପକ୍ଷ ସପ୍ତମୀ ତିଥି । ଶାମ୍ବ କୁଷ୍ଠ ରୋଗରୁ ମୁକ୍ତି ପାଇ ସମଗ୍ର କଳିଙ୍ଗରେ ସୂର୍ଯ୍ୟପୂଜା ବିଧିର ପ୍ରଚାର କରାଇଲେ । ସେଥିପାଇଁ ସେ ଭାରତର ସାତଟି ସ୍ଥାନ– ଉଲ୍ଲାର୍କ, ପୁଣ୍ଡାର୍କ, ମାର୍କେତୋୟାର୍କ, ବାଲୋର୍କ, କୋଣାର୍କ, ଚାପାର୍କ ଏବଂ କଳିଙ୍ଗର କୋଣାର୍କ ସ୍ଥାପନ କଲେ । ପ୍ରଥମେ ସେ ଚନ୍ଦ୍ରଭାଗା ନଦୀକୂଳରେ ଏକ ମନ୍ଦିର ତିଆରି କରାଇ ପୌଷ ଶୁକ୍ଳ ଦଶମୀ (ଶାମ୍ବଦଶମୀ) ତିଥିରେ ମର୍ତ୍ତ୍ୟଲୋକରେ ସୂର୍ଯ୍ୟ ମୂର୍ତ୍ତି ପୂଜାର ପ୍ରଥା ପ୍ରଚଳିତ କରାଇଥିଲେ । ପ୍ରଭୁ ଆଦିତ୍ୟ ନାରାୟଣଙ୍କୁ ଏହି ପୂଜା ସମ୍ପର୍କରେ ଶାମ୍ବ ଜଣାନ୍ତେ ପ୍ରଭୁ ସୂର୍ଯ୍ୟଦେବ କହିଲେ, ମୋର ପୂଜା ପାଇଁ ଉପଯୁକ୍ତ ପୁରୋହିତ ଭାରତବର୍ଷରେ ନାହାନ୍ତି । ଏଣୁ ଶାକ ଦ୍ୱୀପରୁ ମଗ ବ୍ରାହ୍ମଣଙ୍କୁ ଅଣାଇ ଏହି ପୂଜା କଲେ ମୁଁ ସନ୍ତୋଷ ଲାଭ କରିବି । ସେଥିପାଇଁ ଭବିଷ୍ୟ ପୁରାଣରେ ଲେଖା ଅଛି :–

ନଯୋଗ୍ୟ ପରିଚର୍ଯ୍ୟାୟ ଜମ୍ବୁଦ୍ୱୀପେ ମମାନଘ ।

ମମ ପୂଜା ପରାନ୍ କୃତ୍ୱା ଶାକଦ୍ୱୀପୀଦମାୟ ।।

ତାହା ହିଁ ହେଲା । ଶାମ୍ବ ଶାକ ଦ୍ୱୀପରୁ ବ୍ରାହ୍ମଣ / ଗ୍ରହ ବ୍ରାହ୍ମଣମାନଙ୍କୁ ଅଣାଇ ଭାରତବର୍ଷରେ ସୂର୍ଯ୍ୟପୂଜାର ବ୍ୟବସ୍ଥା କରାଇଥିଲେ । ସେହିକାଳରୁ ଆମ ଦେଶରେ

ଶାମ୍ବ ଦଶମୀରେ ସୂର୍ଯ୍ୟଙ୍କର ବ୍ରତପାଳନ ଓ ପୂଜାର ପ୍ରଚଳନ ରହିଛି ।

ନିଜେ ଦେବର୍ଷି ନାରଦ ଭୁବନ ଭାସ୍କର ସୂର୍ଯ୍ୟଦେବଙ୍କ ଅଭିଶାପରେ ଧବଳ କୁଷ୍ଠ ବ୍ୟାଧିରେ ଗ୍ରସ୍ତ ହୋଇଥିବା କଥା ରହିଛି । ନାରଦ ମଧ୍ୟ ଏ କ୍ଷେତ୍ରରେ ସୂର୍ଯ୍ୟଙ୍କର ଦ୍ୱାଦଶ ନାମ ଯଥା– ଆଦିତ୍ୟ, ଭାସ୍କର, ପ୍ରଭାକର, ଦିବାକର, ସହସ୍ରାଂଶୁ, ତ୍ରିଲୋକ–ଲୋଚନ, ଦେବେଦେବେଶ, ଛାୟାରମଣ, ଦିନକର, ଦ୍ୱାଦଶାତ୍ମକ ତ୍ରିବିକ୍ରମ, ସୂର୍ଯ୍ୟଦେବ ଜପ କରି ସୂର୍ଯ୍ୟ ପୂଜାରାଧନା କରି ଧବଳ କୁଷ୍ଠ ମୁକ୍ତ ହୋଇଥିଲେ । ସେଥିପାଇଁ ଏ ଦଶମୀକୁ ଶାମ୍ବଦଶମୀ କୁହାଯାଏ । ଶାମ୍ବ ବାଲୁକାରେ ସୂର୍ଯ୍ୟ ମୂର୍ତ୍ତି ଗଠନ କଲେ । ବିବିଧ ପୁଷ୍ପ, ଧୂପ, ଦୀପ, ଚନ୍ଦନ ଇତ୍ୟାଦିରେ ଷୋଡ଼ଶୋପଚାର ପୂଜା କରିଥିଲେ, ସେହି ସ୍ଥାନ ହିଁ ଆଜିର କୋଣାର୍କ ।

ସୂର୍ଯ୍ୟପୂଜାର ଇତିହାସ ଅତ୍ୟନ୍ତ ପ୍ରାଚୀନ । ଉଲ୍ଲେଖ ଅଛି ଦିଗ୍‌ବିଜୟୀ ସମ୍ରାଟ୍ ହର୍ଷବର୍ଦ୍ଧନଙ୍କ ରାଜଦରବାରରେ ମୟୂରଭଟ୍ଟ ନାମକ ଜଣେ ଅଗାଧ ସଂସ୍କୃତ ଜ୍ଞାନସଂପନ୍ନ କବି ଥିଲେ । ସେ କୁଷ୍ଠରୋଗାକ୍ରାନ୍ତ ହୋଇ ଶହେ ଶ୍ଳୋକ ବିଶିଷ୍ଟ ସୂର୍ଯ୍ୟସ୍ତୁତି ରଚନା କରି ନିତ୍ୟ ପାରାୟଣ କରି ବ୍ୟାଧିମୁକ୍ତ ହୋଇଥିଲେ । ଭାଗବତ ଏକାଦଶ ସ୍କନ୍ଧରେ ଶାମ୍ବଙ୍କର ଲୌହମୂଷଳ ଧାରଣ ଓ ଯଦୁବଂଶ କଥା ରହିଛି । ତେଣୁ ତାଙ୍କ ନାମରେ ନାମିତ ଶାମ୍ବଦଶମୀ, ସୂର୍ଯ୍ୟପୂଜା । ସୂର୍ଯ୍ୟଙ୍କର ଏ କ୍ଷେତ୍ରରେ କୁମ୍ଭୀର ରୂପୀ ମହାଦୈତ୍ୟ ଅର୍କବଧ କରି କୋଣାର୍କ ସ୍ଥାପନ କରିଥିବା କଥା ମଧ୍ୟ ରହିଛି ।

ଯେଉଁ ସ୍ଥାନରେ କୃଷ୍ଣଙ୍କ ପୁତ୍ର ଶାମ୍ବ ସୂର୍ଯ୍ୟଙ୍କ କୃପା ପ୍ରାପ୍ତି ନିମନ୍ତେ ତପଶ୍ଚରଣ କରିଥିଲେ, ତାହା ମୈତ୍ରେୟବନ ନାମରେ ଖ୍ୟାତ । ସୂର୍ଯ୍ୟଙ୍କର ଅନ୍ୟ ନାମ ମିତ୍ର । ତାଙ୍କ ନାମାନୁସାରେ ଚନ୍ଦ୍ରଭାଗା ତୀରରୁ ଏକ ବ୍ୟାପକ ଅଞ୍ଚଳ ମୈତ୍ରେୟବନ ନାମରେ ଖ୍ୟାତ ।

'ଗ୍ରହଜାଗ' ସଂସ୍କାର ଗ୍ରନ୍ଥରେ ଉଲ୍ଲେଖ ଅଛି – ଜାତଂ ସୂର୍ଯ୍ୟ କଳିଯେଂଷୁ । ଅର୍ଥାତ ସୂର୍ଯ୍ୟଙ୍କର ଜନ୍ମସ୍ଥାନ କଳିଙ୍ଗ ଦେଶ । କୋଣାର୍କ ସମେତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବହୁ ସୂର୍ଯ୍ୟ ମନ୍ଦିର ଏବଂ ପୀଠ ତଥା ତୀର୍ଥକ୍ଷେତ୍ର ରହିଛି । ଏପରିକି ଖଣ୍ଡଗିରିରେ ଦ୍ୱିତୀୟ ଶତାବ୍ଦୀରେ ଅନନ୍ତ ଗୁମ୍ଫାରେ ଖୋଦିତ ସୂର୍ଯ୍ୟ ମୂର୍ତ୍ତି ସୂର୍ଯ୍ୟପୂଜାର ପ୍ରାଚୀନ ପ୍ରତୀକ । ଷଷ୍ଠ ଶତାବ୍ଦୀରେ ଖିଚିଂର ସୂର୍ଯ୍ୟ ମନ୍ଦିର, ନବମ ଶତାବ୍ଦୀର ଗଞ୍ଜାମ ଜିଲ୍ଲାର ବୁଗୁଡ଼ା, ଭଦ୍ରକର ପାଳିଆ ଏବଂ ଖୋର୍ଦ୍ଧାର ବିରଞ୍ଚିନାରାୟଣ ମନ୍ଦିର ପ୍ରାଚୀନ ସୂର୍ଯ୍ୟପୂଜାର ପ୍ରତୀକ ଭାବେ ଦଣ୍ଡାୟମାନ ।

ପ୍ଲଟ୍ ନଂ – ୯୫୯/୧୦, ସମ୍ବିତ ଭିଲ୍ଲା
ଘାଟିକିଆ, ଭୁବନେଶ୍ୱର



# ଚନ୍ଦନ ହଜୁରୀ
## (ଚାଖି ଖୁଣ୍ଟିଆ)

ଭାରତରେ ସିପାହୀ ବିଦ୍ରୋହର ବହ୍ନି ୧୮୫୭ ମସିହାରେ ପ୍ରଜ୍ଜ୍ୱଳିତ ହୋଇ ଉଠିଥିଲା । ଏହି ବିଦ୍ରୋହରେ ଯେଉଁ କେତେଜଣ ବୀର ପୁରୁଷମାନେ ସାମିଲ ହୋଇଥିଲେ, ସେମାନଙ୍କ ମଧ୍ୟରେ ଚାଖିଖୁଣ୍ଟିଆ ବା ଚନ୍ଦନ ହଜୁରୀଙ୍କ ନାମ ଉଲ୍ଲେଖଯୋଗ୍ୟ । ସୁଦୂର ଉତ୍ତର ଭାରତରେ ଇଂରେଜମାନଙ୍କ ବିରୁଦ୍ଧରେ ତାଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟଧାରା ପାଇଁ ସେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ସେ ଇଂରେଜ ଶାସନ ବିରୁଦ୍ଧରେ ଭାରତର ଜନଗଣଙ୍କ ମନରେ ବିପ୍ଳବର ଭାବ ସୃଷ୍ଟି କରି ଭାରତର ସ୍ୱାଧୀନତା ସଂଗ୍ରାମରେ ନିଜକୁ ଉତ୍ସର୍ଗ କରିବା ସହିତ ଓଡ଼ିଶାର ଗର୍ବ ଓ ଗୌରବକୁ ଜାତୀୟ ସ୍ତରର ଉଚ୍ଚତମ ସୋପାନରେ ପହଞ୍ଚାଇ ପାରିଥିଲେ । ସେ ଥିଲେ ଏକାଧାରରେ ଜଣେ କବି, ସମାଜ ସଂସ୍କାରକ ଓ ମହାନ୍ ବିପ୍ଳବୀ । ତାଙ୍କର ସାହିତ୍ୟ ସରସ ସୁନ୍ଦର ଏବଂ ସରଳ ଯାହାକି ଉତ୍କଳ ଜନନୀଙ୍କର ସାରସ୍ୱତ ଭଣ୍ଡାରକୁ ଅତୁଳନୀୟ ଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ମହାନ୍ ବିପ୍ଳବୀ ତଥା ମହାନ୍ ବୀର ଏବଂ ସୁନାମଧନ୍ୟ କବିଙ୍କର ଅମରକୃତି ଜନମାନସରେ ଚିର ସ୍ମରଣୀୟ ହୋଇ ରହିଛି ଏବଂ ରହିବ ।



୧୮୨୭ ଖ୍ରୀଷ୍ଟାବ୍ଦ ଶାମ୍ବ ଦଶମୀ ତିଥିରେ ପୁରୀ ହରଚଣ୍ଡି ସାହିର ହଜୁରୀ ରଘୁନାଥ ଖୁଣ୍ଟିଆ (ଭୀମସେନ ରାଜପଣ୍ଡା)ଙ୍କ ଔରସରୁ ଓ ସହଧର୍ମିଣୀ କମଳାବତୀଙ୍କ ଗର୍ଭରୁ ଉତ୍କଳର ଏହି ବରପୁତ୍ର ଚନ୍ଦନ ହଜୁରୀଙ୍କ ଜନ୍ମ । ହଜୁରୀ ରଘୁନାଥ ରାଜପଣ୍ଡା ପୁରୀ ଶ୍ରୀମନ୍ଦିର ମଧ୍ୟରେ ଜଗନ୍ନାଥଙ୍କଠାରେ ଚନ୍ଦନଲାଗି ସମୟରେ ପୁତ୍ର ଜନ୍ମର ସୁସମ୍ବାଦ ପାଇଥିବାରୁ ପୁତ୍ରର ନାମ ଚନ୍ଦନ ବୋଲି ନାମକରଣ କରିଥିଲେ ଏବଂ ବଳିଆରଭୁଜ ଶ୍ରୀଜଗନ୍ନାଥଙ୍କୁ ବିନମ୍ରତାର ସହିତ ପ୍ରଣତି ଜଣାଇ ନିବେଦନ କରି କହିଥିଲେ, ''ହେ ବଳିଆରଭୁଜ ମହାବାହୁ ମୋ ଚନ୍ଦନ ତୁମ୍ଭଙ୍କୁ ଲାଗିଲା ।'' ଚନ୍ଦନଙ୍କ ଡାକ ନାମ ଥିଲା 'ଚାଖି' । କାରଣ ସେ ଶୈଶବାବସ୍ଥାରେ ନିତାନ୍ତ ଚପଳ ସ୍ୱଭାବର ଥିଲେ । କୌଣସି କାର୍ଯ୍ୟ ସେ କରିବାକୁ ପଛାଉ ନଥିଲେ । ଏଣୁ ପିତାମାତା ତାଙ୍କୁ ''ଚାଖି ଚାଖି'' ବୋଲି ଡାକୁଥିଲେ ଓ ସେ ଉତ୍ତର ଜୀବନରେ ଚାଖି ଖୁଣ୍ଟିଆ ନାମରେ ପରିଚିତ ହୋଇଥିଲେ ।

ଚନ୍ଦନ ହଜୁରୀ ବାଲ୍ୟାବସ୍ଥାରୁ ରାମଦୟାଲ ନାମକ ଜଣେ ପଣ୍ଡିତଙ୍କ ପାଖରେ ହିନ୍ଦୀ ଶିକ୍ଷା ଲାଭ କରିଥିଲେ । ଆପଣାର ଯାତ୍ରୀ ବ୍ୟବସାୟ ରକ୍ଷା କରିବାଲାଗି ସେ ହିନ୍ଦୀ

ଶିକ୍ଷା ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିଥିଲେ ଏବଂ ହିନ୍ଦୀ ଭାଷାରେ କହିବା ଓ ଲେଖିବାରେ ସେ ସିଦ୍ଧହସ୍ତ ଥିଲେ । ଚାଖି ଖୁଣ୍ଟିଆଙ୍କୁ ଯେତେବେଳେ ବାରବର୍ଷ ସେତେବେଳେ ତାଙ୍କର ବୈବାହିକ ସମ୍ପର୍କ ସ୍ଥାପିତ ହୋଇଥିଲା । ତାଙ୍କର ପତ୍ନୀଙ୍କ ନାମ ଥିଲା ସୁନ୍ଦରମଣି ।

ଚାଖି ଖୁଣ୍ଟିଆ ବାଲ୍ୟାବସ୍ଥାରୁ ଶ୍ରୀଜଗନ୍ନାଥଙ୍କର ଜଣେ ଶ୍ରେଷ୍ଠ ସେବକ ହିସାବରେ ନିଜକୁ ପରିଚିତ କରାଇ ପାରିଥିଲେ । ତାଙ୍କ ପ୍ରାଣରେ ସର୍ବଦା ଜଗନ୍ନାଥଙ୍କ ପ୍ରତି ଥିବା ଅପୂର୍ବ ପ୍ରୀତି ତଥା ଭକ୍ତିର ନିଦର୍ଶନ ସ୍ୱରୂପ ସେ ଭବିଷ୍ୟତରେ ଅନେକ ଜଗନ୍ନାଥ ବିରୋଧୀ ସଂସ୍ଥା ତଥା କାର୍ଯ୍ୟକଳାପ ବିରୁଦ୍ଧରେ ବିପ୍ଳବର ସ୍ୱର ଉତ୍ତୋଳନ କରିଥିଲେ । ୧୮୧୭ ଖ୍ରୀଷ୍ଟାବ୍ଦ ବେଳେ ପୁରୀ ଇଂରେଜମାନଙ୍କ ବସତି ହେବା ସଂଗେସଂଗେ କେତେକ ପାଦ୍ରୀଙ୍କ ଆଡ୍‌ଡ଼ାସ୍ଥଳୀ ହୋଇଥିଲା । ପାଦ୍ରୀମାନେ ସମଗ୍ର ଦେଶରେ ବୁଲି ବୁଲି ହିନ୍ଦୁ ଧର୍ମ ତଥା ପିତୁଳା ପୂଜାର କଠୋର ଅପପ୍ରଚାର ଚଳାଇ ଥିଲେ । କେବଳ ଏତିକି ନୁହେଁ ପାଦ୍ରୀମାନେ ହିନ୍ଦୁ ଧର୍ମର ଶ୍ରେଷ୍ଠ ପୀଠ ପୁରୁଷୋତ୍ତମ ବା ପୁରୀର ସ୍ଥାନେ ସ୍ଥାନେ ହିନ୍ଦୁ ଧର୍ମ ତଥା ଜଗନ୍ନାଥଙ୍କ ବିଗ୍ରହ ବିଷୟରେ ଅତି କୁତ୍ସିତ ପ୍ରଚାର କରିବାକୁ ଭୁଲି ନଥିଲେ । ଏପରିକି ଜଗନ୍ନାଥଙ୍କର ବିଜେ ରାସ୍ତା ବା ବଡ଼ଦାଣ୍ଡରେ ଚନ୍ଦନଯାତ୍ରା ଯିବା ଛକ ଉପରେ ତଥା ପୁରୀର ପ୍ରଧାନ ପ୍ରବେଶ ଦ୍ୱାର ନିକଟରେ ପାଦ୍ରୀମାନେ ଏକ ଛଣ ଘର କରି ସେଠାରେ ବାପ୍‌ଟିଷ୍ଟ ମିଶନ୍ କାର୍ଯ୍ୟାଳୟ ଖୋଲି ଦିନ ରାତି ଜଗନ୍ନାଥ ଓ କାଠ ମୂର୍ତ୍ତିଙ୍କ କୁତ୍ସିତ ରୂପ ବିଷୟରେ ନିର୍ଭୀକ ଭାବେ ପ୍ରଚାର କରୁଥିଲେ । ତାହା ଅତି ଶ୍ରୁତିକଟୁ ଥିଲା । ଏଥିରେ ଚାଖି ଖୁଣ୍ଟିଆ ଅତ୍ୟଧିକ ଉତ୍ତ୍ୟକ୍ତ ହୋଇ ତାଙ୍କର ବଳଶାଳୀ ଦଳକୁ ନେଇ ପାଦ୍ରୀ ପ୍ରଚାର କେନ୍ଦ୍ରମାନଙ୍କ ଉପରେ ଆକ୍ରମଣ କଲେ । ଶତାଧିକ ପାଦ୍ରୀ ଚାଖିଙ୍କ ଆକ୍ରମଣ ଫଳରେ ମୃତାହତ ହୋଇଥିଲେ । ସେମାନଙ୍କର ବହୁ କୁତ୍ସାମୂଳକ ପ୍ରଚାରପତ୍ର ନଷ୍ଟ କରି ଦିଆଗଲା । 'ଜଗନ୍ନାଥ ପରୀକ୍ଷା' ନାମକ ଅପପ୍ରଚାରମୂଳକ ବହିର ପାଣ୍ଡୁଲିପି ପୋଡ଼ି ଦିଆଗଲା । ମାତ୍ର ପ୍ରବଳ ପରାକ୍ରମୀ ଇଂରେଜ ଶାସକ ଚାଖିଙ୍କ ସମେତ ତାଙ୍କର ସହକର୍ମୀମାନଙ୍କୁ ଦୃଢ଼ ହସ୍ତରେ ଦମନ କରିଥିଲେ । ଶେଷରେ ଏ ଆନ୍ଦୋଳନ ନିଷ୍ଫଳ ହୋଇଥିଲା ସତ, ଇଂରେଜମାନଙ୍କର ଏହି ପ୍ରକାର ଧର୍ମ ବିରୋଧୀ ଦମନମୂଳକ କାର୍ଯ୍ୟକଳାପ ପରବର୍ତ୍ତୀ ସମୟରେ ସିପାହୀ ବିଦ୍ରୋହର ଏକ ଅଙ୍ଗଭାବେ ରୂପ ନେଇଥିଲା ।

ଝାନ୍‌ସି ରାଣୀ ଲକ୍ଷ୍ମୀବାଈଙ୍କର ପରିବାର ସହିତ ଚାଖି ଖୁଣ୍ଟିଆଙ୍କର ପୂର୍ବରୁ ସମ୍ପର୍କ ଥିଲା । ଝାନ୍‌ସି ରାଣୀ ଲକ୍ଷ୍ମୀବାଈ (ମନୁ) ଯେତେବେଳେ ଦୁଇ ବର୍ଷର ଶିଶୁ କନ୍ୟା ଥିଲେ, ସେତେବେଳେ କାଶୀର ମରହଟ୍ଟା ଶାସକ ଚିମାଜୀଙ୍କର ଦେବାନ୍ ମେରାପନ୍ତ ତାମ୍ବେ ପୁରୀ ଆସିଥିଲେ । ମେରାପନ୍ତଙ୍କର ଭୀମସେନଙ୍କ ପରିବାର ସହିତ ଘନିଷ୍ଠତା ହେଲା ଏବଂ ପରେ ଏହା ଗୁରୁଶିଷ୍ୟ ସମ୍ପର୍କରେ ପରିଣତ ହେଲା । ଅର୍ଥାତ୍ ହୁଜୁରୀ ପରିବାର ହେଲେ ତାମ୍ବେ ପରିବାରର ଗୁରୁ । ଏହି ସମୟରେ ମେରାପନ୍ତ ପେଶୱା ବାଜିରାଓଙ୍କ ଦରବାରରେ ଚାକିରି ଗ୍ରହଣ କରି ବିଠୁର ଚାଲିଗଲେ । ସେଠାରେ ବାଜିରାଓ ମନୁବାଈଙ୍କୁ ନିଜର କନ୍ୟାପରି ପାଳିଲେ ଏବଂ ପେଶୱାଙ୍କ ଚେଷ୍ଟାରେ ମନୁବାଈଙ୍କ ବିବାହ ହେଲା ଝାନ୍‌ସି ଅଧିପତି ଗଙ୍ଗାଧର ରାଓଙ୍କ ସହିତ ଏବଂ ମନୁବାଈ ପରିଚିତ ହେଲେ ଲକ୍ଷ୍ମୀବାଈ ନାମରେ, ମାତ୍ର ବିବାହର ୪ ବର୍ଷ ପରେ ୧୮୫୦ରେ ନବଜାତ ୩ ମାସ ସନ୍ତାନର ମୃତ୍ୟୁ ଓ ୧୮୫୩ରେ ଝାନ୍‌ସିର ମହାରାଜା ଗଙ୍ଗାଧର ରାଓଙ୍କ ମୃତ୍ୟୁ ଝାନ୍‌ସି ରାଜ ପରିବାରକୁ ବିପର୍ଯ୍ୟସ୍ତ କରିଥିଲା । ଡେଲହାଉସୀଙ୍କ ରାଜସ୍ୱତ୍ୱ ଲୋପନୀତି ଅନୁଯାୟୀ ଝାନ୍‌ସି ହୋଇଗଲା ଇଂରେଜ ସାମ୍ରାଜ୍ୟର ଅଂଶବିଶେଷ, ଯଦିଓ ଝାନ୍‌ସି ରାଜମାତା ଲକ୍ଷ୍ମୀବାଈ ଦାମୋଦର ରାଓଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରି ବଂଶ ରକ୍ଷା କରିବାକୁ ସ୍ଥିର କରିଥିଲେ ।

ଚାଖି ପାଦ୍ରୀ ଆନ୍ଦୋଳନ ପରେ କିଛି ଦିନ ପାଇଁ ବିଠୁର ଚାଲି ଯାଇଥିଲେ କିନ୍ତୁ ଫେରିବା ପରେ ପରେ ଲକ୍ଷ୍ମୀବାଈଙ୍କ ହସ୍ତାକ୍ଷରରେ ବିପ୍ଳବାଗ୍ନିର ନିମନ୍ତ୍ରଣ ପାଇଥିଲେ । ନିମନ୍ତ୍ରଣ ପାଇ ହର୍ଷ ବିଷାଦପୂର୍ଣ୍ଣ ମନରେ ପୁରୀ ତ୍ୟାଗ କରିଥିଲେ । ପୁରୀ ଛାଡ଼ିବାର ଅଳ୍ପଦିନ ଆଗରୁ ଚନ୍ଦନ ହଜୁରୀ 'ଚକାନୟନକୁ ପତିତ କହି' ନାମକ ପ୍ରସିଦ୍ଧ ପଦ୍ୟ ରଚନା କରି ସେ ନୀଳାଦ୍ରିନାଥ ଜଗନ୍ନାଥଙ୍କଠାରେ ଅଭିମାନଭରା ଅନୁରୋଧ କରି ଦେଶକୁ ଚଣ୍ଡାଳ ସ୍ୱରୂପୀ ଇଂରେଜଙ୍କ ଗ୍ରାସରୁ ରକ୍ଷା କରିବାକୁ ପ୍ରାର୍ଥନା କରିଥିଲେ ।

''ଧଣ୍ଡାମାଳ ବୁହା ଦୁର୍ଦ୍ଦଶା ରାହୁ ଚଣ୍ଡାଳ ଗ୍ରାସୁଅଛି ଚାହୁଁ ଚାହୁଁ
ଭଣ୍ଡାରେ ଖଣ୍ଡା ନାହିଁକି ମଣିମା ଗଣ୍ଡାକର ଦିଶୁ ନାହିଁ ମହିମା ହେ
ହଣ୍ଡା ମୋ ଯାଉଅଛି ଫାଟି
ଅଣ୍ଡାକର କୃପା ଜଳ ବୃଷ୍ଟିକରି ମୋ ଚିତ୍ତ ଚାତକ ପାଟି ହେ ।''

ଜଗନ୍ନାଥଙ୍କର ଅପାର କରୁଣାକୁ ପାଥେୟ କରି ଚାଖି ସିପାହୀ ବିଦ୍ରୋହରେ ଯୋଗଦେବା ପାଇଁ ମିରଟ୍ ଯାତ୍ରା କଲେ । ୧୮୫୭ ମଇ ୨୪ ତାରିଖରେ ସେ ଝାନ୍ସିରେ ପହଞ୍ଚିଥିଲେ । ଝାନ୍ସିରେ ପହଞ୍ଚିବା ପରେ ରାଣୀ ଲକ୍ଷ୍ମୀବାଈ କିପରି ଇଂରେଜମାନଙ୍କୁ ଝାନ୍ସିରୁ ତଡ଼ିବାକୁ ହେବ ସେଥିପାଇଁ ଚନ୍ଦନ ହଜୁରୀଙ୍କ ପରାମର୍ଶ ଲୋଡ଼ିଲେ । ଚନ୍ଦନ ହଜୁରୀ ପ୍ରଥମେ ରାଜ୍ୟର ଅବସ୍ଥା ଅନୁଧ୍ୟାନ କରିବା ପାଇଁ ରାଣୀଙ୍କଠାରୁ ସମ୍ମତି ନେଲେ । ଚନ୍ଦନ ହଜୁରୀଙ୍କ ନଗର ପରିକ୍ରମା ଉଦ୍ଦେଶ୍ୟ କେହି ବୁଝିପାରିଲେ ନାହିଁ ଏବଂ ସେ କୌଶଳକ୍ରମେ ଜାଣି ପାରିଲେ ଯେ ଇଂରେଜମାନଙ୍କ ବିରୁଦ୍ଧରେ ଅସନ୍ତୋଷ କ୍ରମେ କୁହୁଳୁଛି । ଏହି ସୁଯୋଗରେ ଖୁବ୍ ଚତୁରତାର ସହିତ ଚନ୍ଦନ ହଜୁରୀଙ୍କ ପରାମର୍ଶରେ ରାଣୀଙ୍କ ସୈନ୍ୟବାହିନୀର ସୈନ୍ୟ ସଂଖ୍ୟା ଏବଂ ଯୁଦ୍ଧକୌଶଳ ବୃଦ୍ଧି କରାଗଲା । ତେଣେ ଚନ୍ଦନ ହଜୁରୀ ବିଠୁରକୁ ଯାଇ ସେଠାରେ ରାଜ୍ୟହରା ହୋଇଥିବା ବାଜିରାଓଙ୍କ ପୋଷ୍ୟପୁତ୍ର ନାନାସାହେବଙ୍କ ସହିତ ଗୁପ୍ତ ମନ୍ତ୍ରଣା କଲେ । ଚନ୍ଦନ ହଜୁରୀଙ୍କ ମନ୍ତ୍ରଣା ଅନୁଯାୟୀ ନାନାସାହେବ ଏବଂ ଲକ୍ଷ୍ମୀବାଈ ଉଭୟ ଇଂରେଜ ଶାସନ ବିରୁଦ୍ଧରେ ଖଡ୍ଗ ଉତ୍ତୋଳନ କରିବାକୁ ପ୍ରସ୍ତୁତ ହେଲେ । ଏହି ଚରମ ମୁହୂର୍ତ୍ତରେ ବାରାକପୁରଠାରେ ଜଳି ଉଠିଲା ବିପ୍ଳବର ବହ୍ନି । ଏହାର ପ୍ରଥମ କର୍ତ୍ତା ହେଲେ ମଙ୍ଗଳ ପାଣ୍ଡେ । ବିଦ୍ରୋହ କ୍ରମେ ଦେଶସାରା ବ୍ୟାପୀ ଗଲା । ଇଂରେଜ ରକ୍ତରେ ଲାଲ ହୋଇ ଉଠିଲା ଝାନ୍ସିର ମାଟି । ଚନ୍ଦନ ହଜୁରୀ ରାଣୀଙ୍କୁ ସତର୍କ କରାଇ ଦେଲେ ଏହା ସଂଗ୍ରାମର ଆରମ୍ଭ, ଶେଷ ନୁହେଁ । ଗୃହ ଶତ୍ରୁମାନଙ୍କୁ ସର୍ବଦା ସତର୍କ ରହିବାକୁ ସେ ସୂଚାଇ ଦେଲେ । ଏହି ସମୟରେ ଇଂରେଜମାନେ ପୁଣି ଶକ୍ତି ସଂଗ୍ରହ କରି ଝାନ୍ସି ଆକ୍ରମଣ କଲେ । ରାଣୀ ପାରିଷଦଙ୍କ ସହିତ ପରାମର୍ଶ କରୁଥାନ୍ତି । କେହି ଉତ୍ସାହପୂର୍ଣ୍ଣ କଥା କହୁ ନଥାନ୍ତି । ପ୍ରଧାନମନ୍ତ୍ରୀ ଲକ୍ଷ୍ମଣ ରାଓ ଆତ୍ମସମର୍ପଣ କରିବାକୁ ପରାମର୍ଶ ଦେଇ ସାରିଥାନ୍ତି । ଏହି ସମୟରେ ଚନ୍ଦନ ହଜୁରୀ ଦୃଢ଼ କଣ୍ଠରେ ଘୋଷଣା କଲେ, ''ମହାରାଣୀ ଝାନ୍ସିର ସ୍ୱାଧୀନତା ବା ଦେଶବାସୀଙ୍କ ସ୍ୱାଧୀନତାକୁ ନେଇ ଖେଳିବାର ଅଧିକାର ଆପଣଙ୍କର ନାହିଁ, ଆପଣଙ୍କ ଦେହରେ କ'ଣ ମରହଟ୍ଟା ରକ୍ତ ପ୍ରବାହିତ ହେଉ ନାହିଁ? ଆତ୍ମସମର୍ପଣ କରି ସ୍ୱାଧୀନତା ପ୍ରତି ବିଶ୍ୱସଘାତକତା କରନ୍ତୁ ନାହିଁ ।'' ଚନ୍ଦନ ହଜୁରୀଙ୍କର ଏହି ଉତ୍ସାହପୂର୍ଣ୍ଣ ବାଣୀ ରାଣୀଙ୍କ ମନରେ ଅଦମ୍ୟ ସାହସ ଭରିଦେଲା । ବିଶ୍ୱାସଘାତକ ବୁନ୍ଦେଲ ସରକାର ସର୍ଦ୍ଦାର ଠାକୁର ଲାଲାଜୀଙ୍କ ବିଶ୍ୱାସଘାତକତା ଯୋଗୁଁ ଝାନ୍ସି ଦୁର୍ଗର ପତନ ହେଲା । ଯୁଦ୍ଧ କ୍ଷେତ୍ରରେ ରାଣୀ ନିହତ ହେଲେ । ଏକ ଅଖ୍ୟାତ ନଦୀକୂଳରେ ଚନ୍ଦନ ହଜୁରୀଙ୍କ ସମ୍ମୁଖରେ ରାଣୀଙ୍କ ପୁଣ୍ୟ ଦେହରେ ଅଗ୍ନି ସଂଯୋଗ କରାଗଲା । ଚନ୍ଦନ ହଜୁରୀଙ୍କ ନୟନରୁ ଝରି ଆସିଲା ଶ୍ରାବଣର ଧାରା । ତା'ପରେ ଆରମ୍ଭ ହେଲା ଇଂରେଜମାନଙ୍କ ଦମନର ବିଭୀଷିକା । ଦୀର୍ଘ ଦେଢ଼ବର୍ଷ କାଳ ଜଙ୍ଗଲରେ ଏଣେତେଣେ ଲୁଚି ବିଦ୍ରୋହର ୪ ବର୍ଷ ପରେ ୧୮୬୫ ମସିହା କୁମାର ପୂର୍ଣ୍ଣିମା ଦିନ ଚନ୍ଦନ ହଜୁରୀ ଆସି ପହଞ୍ଚିଲେ ପୁରୀରେ ।

ଏହା ପୂର୍ବରୁ ପୁରୀରେ ଚନ୍ଦନ ହଜୁରୀଙ୍କ ମୃତ୍ୟୁ ଖବର ଆସି ପହଞ୍ଚିଥାଏ ଏବଂ ତାଙ୍କ ପତ୍ନୀ ବିଧବା ହୋଇଥାନ୍ତି । ଚନ୍ଦନ ହଜୁରୀଙ୍କୁ ଦେଖି ସେ ପୁଣି ସଧବା ହେଲେ । ଏତିକିରେ ହଜୁରୀ ମହାଶୟଙ୍କ ନିର୍ଯାତନାର ଅନ୍ତ ହେଲା ନାହିଁ । ଦିନେ ପୋଲିସ୍ କମିଶନ୍‌ର ଚନ୍ଦନ ହଜୁରୀଙ୍କ ଉପରେ ନୋଟିସ୍ ଜାରୀ କଲେ ଯେ, ସହର ମଧ୍ୟସ୍ଥ ପୋଲିସ୍ ଫାଣ୍ଡିରେ ପ୍ରତ୍ୟହ ହାଜର ହେବେ । ଏହି ଆଦେଶ ଅନୁଯାୟୀ ହଜୁରୀଙ୍କୁ ପ୍ରତ୍ୟହ ଫାଣ୍ଡିରେ ହାଜର ହେବା ପାଇଁ ପଡ଼ିଲା । କିନ୍ତୁ ପୋଲିସ୍‌ର ତୀକ୍ଷ୍ଣ ଦୃଷ୍ଟିକୁ ଭ୍ରୂକ୍ଷେପ ନକରି ସେ ଭଗବତ ଆରାଧନା ଓ ଓଡ଼ିଆ ସାହିତ୍ୟର ସାଧନାରେ ମଜ୍ଜିଗଲେ । ବିପ୍ଳବୀ, ଦେଶପ୍ରେମୀ ହୋଇଗଲେ ସାହିତ୍ୟିକ ଚନ୍ଦନ ହଜୁରୀ । ସାହିତ୍ୟ ସାଧନାରେ ସେ ତାଙ୍କର ଶେଷ ଜୀବନ ବିତାଇଥିଲେ । ବିଧିର ନିର୍ଦ୍ଦେଶକ୍ରମେ ୧୮୭୦ ବୈଶାଖ ଶୁକ୍ଳ ଅଷ୍ଟମୀ ତିଥିରେ ତାଙ୍କର ମହାପ୍ରୟାଣ ହୋଇଥିଲା ।

ସେ ଥିଲେ ବୀର ଓ ଜଗନ୍ନାଥଙ୍କର ପରମ ସେବକ । ଏକନିଷ୍ଠ ସାଧନା, ବଳିଷ୍ଠ ନେତୃତ୍ୱ, ଅବଦମିତ ଦେଶପ୍ରେମ, ଅତୁଳନୀୟ ତ୍ୟାଗ, ଅସାଧାରଣ ବ୍ୟକ୍ତିତ୍ୱ ଓ ଧୀଶକ୍ତି ପାଇଁ ସେ ଚିରନମସ୍ୟ ହୋଇ ରହିବେ ।



# ବୀର ସୁରେନ୍ଦ୍ର ସାଏ

ସିପାହୀ ବିଦ୍ରୋହର ପ୍ରାୟ ୪୦ ବର୍ଷ ପୂର୍ବରୁ ୧୮୧୭ ମସିହାରେ ଓଡ଼ିଶାରେ ପାଇକ ବିଦ୍ରୋହ ସଂଗଠିତ ହୋଇଥିଲା । ବୀର ଓଡ଼ିଆ ପାଇକମାନେ ସେମାନଙ୍କର ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରି ଓଡ଼ିଶା ମାଟିରୁ ଗୋରା ଫିରିଙ୍ଗି ଶାସକମାନଙ୍କୁ ହଟାଇବା ନିମନ୍ତେ ତରବାରୀ ଧରିବା ପାଇଁ ପଶ୍ଚାତପଦ ହୋଇନଥିଲେ । ଯାହାଫଳରେ ଫିରିଙ୍ଗି ଶାସନର ମେରୁଦଣ୍ଡ ଭାଙ୍ଗି ଯାଇଥିଲା । କିନ୍ତୁ ପାଇକମାନେ ନିରାଶ ହୋଇଥିଲେ । କାରଣ ଏହି ବିଦ୍ରୋହର ମୁଖ୍ୟ ଗୋପର କରୁଣାକର ସର୍ଦ୍ଦାରଙ୍କୁ ବନ୍ଦୀ କରାଗଲା, କୁଜଙ୍ଗର ନାରାୟଣ ପରମଗୁରୁ ଓ କନିକାର ବାମଦେବ ପାଟଯୋଷୀ ଦ୍ୱୀପାନ୍ତର ଦଣ୍ଡ ଭୋଗ କଲେ ଏବଂ ଜୟୀ ରାଜଗୁରୁ ଫାଶି ପାଇଲେ । ବିପ୍ଳବୀ ବକ୍ସି ଜଗବନ୍ଧୁ ବିଦ୍ୟାଧର ବିଶ୍ୱାସଘାତକତାର ଶିକାର ହୋଇ ମୃତ୍ୟୁବରଣ କଲେ । ପରିଶେଷରେ ମୁକୁନ୍ଦ ଦେବ ବନ୍ଦୀ ହେଲେ । ପାଇକ ବିଦ୍ରୋହର ତେଜିୟାନ୍ ଅଗ୍ନିଶିଖା ଲିଭିଗଲା । ପୁନର୍ବାର ପଶ୍ଚିମ ଓଡ଼ିଶାରେ ୧୮୨୭ ମସିହାରେ ବୀର ସୁରେନ୍ଦ୍ର ସାଏ ଏହି ନିର୍ବାପିତ ଅଗ୍ନିଶିଖାକୁ ପ୍ରଜ୍ୱଳିତ କରି ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ସମ୍ବଲପୁର ମାଟିରୁ ବ୍ରିଟିଶ ଶାସନ ଲୋପ କରିବା । ତେଣୁ ସେ ୧୮୨୭-୧୮୬୪ ମସିହା ଜାନୁଆରୀ ୨୩ ତାରିଖ ପର୍ଯ୍ୟନ୍ତ ବିଦ୍ରୋହର ବହ୍ନିକୁ ପ୍ରଜ୍ୱଳିତ କରି ରଖିଥିଲେ । ପ୍ରଥମ ପର୍ଯ୍ୟାୟରେ ଇଂରେଜମାନଙ୍କ ବିରୁଦ୍ଧରେ ତାଙ୍କର ସଂଗ୍ରାମ ୧୮୨୭-୧୮୪୦ ମସିହା ପର୍ଯ୍ୟନ୍ତ ବିକ୍ଷିପ୍ତ ଏବଂ ସୀମିତ ଥିଲା । କିନ୍ତୁ ଦ୍ୱିତୀୟ ପର୍ଯ୍ୟାୟରେ ଏହା ଅଧିକ ସୁସଙ୍ଗଠିତ, ସୁସଂହତ ତଥା ବୀରତ୍ୱପୂର୍ଣ୍ଣ ଥିଲା । ସୁରେନ୍ଦ୍ର ସାଏଙ୍କ କୌଶଳପୂର୍ଣ୍ଣ ଗରିଲା ଯୁଦ୍ଧ, ରଣସଜ୍ଜା, ଦୃଢ଼ମନୋବଳ, ଅସୀମ ଧୈର୍ଯ୍ୟ ଓ ସାହସ ନିକଟରେ ଇଂରେଜମାନେ ହାର ମାନି ଥିଲେ । ଓଡ଼ିଶାର ଏହି ବରପୁତ୍ର, ବିପ୍ଳବୀ ବୀର ସୁରେନ୍ଦ୍ର ସାଏଙ୍କ ବିପ୍ଳବର ଜୟଗାଥା ଓଡ଼ିଶା ଇତିହାସରେ ଚିରଦିନ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ପୃଷ୍ଠା ମଣ୍ଡିତ କରୁଥିବ ।



ସେହି ମହାନ୍ ବୀର ପୁରୁଷ ଓ ଭାରତର ସର୍ବଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ ୧୮୦୯ ମସିହା ଜାନୁଆରୀ ମାସ ୨୩ ତାରିଖ ଦିନ ସମ୍ବଲପୁର ସହରର ଉତ୍ତରକୁ ପ୍ରାୟ ୨୧ ମାଇଲ ଦୂରରେ ଅବସ୍ଥିତ ବରଗାଁ ବା ଖିଣ୍ଡା ଗ୍ରାମରେ ଚୌହାନ୍ ରାଜ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସୁରେନ୍ଦ୍ର ସାଏ ଗାଙ୍ଗପୁର ରାଜ୍ୟର ହାତୀବାଡ଼ି ଜମିଦାରଙ୍କ କନ୍ୟାଙ୍କୁ ବିବାହ କରିଥିଲେ ଏବଂ ତାଙ୍କର ଗୋଟିଏ ପୁତ୍ର

ଓ ଗୋଟିଏ କନ୍ୟା ଥିଲା । ତାଙ୍କ ପୁତ୍ରର ନାମ ହେଉଛି ମିତ୍ରଭାନୁ ସାଏ ।

୧୮୨୭ ମସିହାରେ ସମ୍ବଲପୁରର ରାଜା ମହାରାଜା ସାଏ ଅପୁତ୍ରିକ ହୋଇ ମୃତ୍ୟୁବରଣ କଲେ । ମହାରାଜା ସାଏଙ୍କ ଉତ୍ତରାଧିକାରୀ କିଏ ହେବ ତାହା ନିରୂପଣ କରିବା କ୍ଷମତା ଇଂରେଜ ସରକାର ନିଜ ହାତକୁ ନେଲେ । ରାଜଗାଦି ଦାବି କରିଥିବା ବହୁ ବ୍ୟକ୍ତିଙ୍କୁ ଉପେକ୍ଷା କରି ବିଧବା ରାଣୀ ମୋହନ କୁମାରୀଙ୍କ ହାତରେ ଶାସନ ଦାୟିତ୍ୱ ନ୍ୟସ୍ତ କଲେ । ସେହି କାରଣରୁ ବହୁ ଆଦିବାସୀ ଜମିଦାର ବିଦ୍ରୋହ କରିଥିଲେ । ବଳରାମ ସାଏ ଓ ସୁରେନ୍ଦ୍ର ସାଏ ଏହି ବିପ୍ଳବର ନେତୃତ୍ୱ ନେଇଥିଲେ । ଇଂରେଜମାନେ ନିଶ୍ଚିତ ଥିଲେ ଯେ ରାଣୀ ମୋହନ କୁମାରୀ ସୁଚାରୁରୂପେ ଶାସନ କାର୍ଯ୍ୟ ପରିଚାଳନା କରିପାରିବେ ନାହିଁ । ତେଣୁ ରାଣୀ ସେମାନଙ୍କ ହାତରେ ଖେଳନା ହୋଇ ରହିବେ ଏବଂ ଇଂରେଜମାନେ ନିଜର ରାଜନୈତିକ ଅଭିସନ୍ଧି ହାସଲ କରିପାରିବେ । ପ୍ରକୃତ ପକ୍ଷେ ସମ୍ବଲପୁର ରାଜବଂଶର ସୁରେନ୍ଦ୍ର ସାଏ ରାଜଗାଦି ଲାଭ କରିବା କଥା, ମାତ୍ର ଇଂରେଜମାନେ ଜାଣିଥିଲେ ସୁରେନ୍ଦ୍ର ସାଏ କେବେ ହେଲେ ତାଙ୍କର ଅନୁଗାମୀ ହେବେ ନାହିଁ । ତେଣୁ ରାଣୀ ମୋହନ କୁମାରୀ ରାଜ୍ୟ ଶାସନ ପରିଚାଳନା କରିବା ପ୍ରତିବାଦରେ ସମ୍ବଲପୁର ଅଞ୍ଚଳରେ ବିଦ୍ରୋହର ବହ୍ନି ଜଳି ଉଠିଥିଲା ।

ସୁରେନ୍ଦ୍ର ସାଏଙ୍କ ଜୀବନ କାଳ ୭୫ ବର୍ଷ ମଧ୍ୟରୁ ଦୀର୍ଘ ୩୭ ବର୍ଷ କାରାଗାରରେ କଟିଥିଲା । ସେ ୧୮୨୭ରୁ ୧୮୪୦ ପର୍ଯ୍ୟନ୍ତ ୧୩ ବର୍ଷ ଓ ୧୮୫୭ରୁ ୧୮୬୪ ପର୍ଯ୍ୟନ୍ତ ୭ ବର୍ଷ ଏହିପରି ଦୁଇଟି ପର୍ଯ୍ୟାୟରେ ମୋଟରେ ୨୦ ବର୍ଷ ଇଂରେଜ ସରକାରଙ୍କ ବିରୁଦ୍ଧରେ ନିରବଚ୍ଛିନ୍ନ ଭାବରେ ଘମାଘୋଟ ଲଢ଼େଇ କରିଥିଲେ । ତାଙ୍କର ଅଦ୍ଭୁତ ସଂଗଠନ ଶକ୍ତି, ଅସୀମ ପରାକ୍ରମ, ଅସାଧାରଣ ରଣକୌଶଳ ବ୍ରିଟିଶ୍ ଶାସକ ଓ ସୈନ୍ୟବାହିନୀକୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସେତେବେଳେ କ୍ୟାପ୍‌ଟେନ୍ ହିଗ୍ନସ୍‌ଙ୍କ ଅଧିନାୟକତ୍ୱରେ ସମ୍ବଲପୁରରେ ଇଂରେଜମାନଙ୍କ ରାମଗଡ଼ ବାଟାଲିୟନ୍ ଅବସ୍ଥାପିତ ହୋଇଥାନ୍ତି । ସୁରେନ୍ଦ୍ର ସାଏଙ୍କ ପକ୍ଷରୁ ତାଙ୍କ ଅନୁଗାମୀମାନେ ଧନୁଶର ଧରି ଗରିଲା ଯୁଦ୍ଧ କରିଥିବାରୁ ଇଂରେଜ ସୈନ୍ୟମାନେ ତାର ମୁକାବିଲା କରିପାରି ନଥିଲେ । ପରେ ହଜାରୀବାଗ୍‌ର କ୍ୟାପ୍‌ଟେନ୍ ଉଇଲକିନସନ୍‌ଙ୍କ ନିର୍ଦ୍ଦେଶରେ ଆଉ ଏକ ସୈନ୍ୟବାହିନୀ ସମ୍ବଲପୁରରେ ଆସି ଯୋଗ ଦେଲେ । ଏହାପରେ ବିଦ୍ରୋହ କିଛି ମାତ୍ରାରେ ଦମନ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ପ୍ରଶମିତ ହୋଇପାରି ନଥିଲା । ଇଂରେଜମାନେ ବାଧ୍ୟ ହୋଇ ରାଣୀ ମୋହନ କୁମାରୀଙ୍କୁ ଗାଦିଚ୍ୟୁତ କରି ପୁନର୍ବାର ରାଜବଂଶର ଦୂର ସମ୍ପର୍କୀୟ ବ୍ୟକ୍ତି ନାରାୟଣ ସିଂହଙ୍କୁ ସମ୍ବଲପୁର ରାଜଗାଦି ପ୍ରଦାନ କଲେ । ମାତ୍ର ସେ ଥିଲେ ସମ୍ପୂର୍ଣ୍ଣ ଅଯୋଗ୍ୟ । ଏହା ଫଳରେ ପୁଣି ବିଦ୍ରୋହ ମୁଣ୍ଡ ଟେକିଲା । ୧୮୩୭ ଖ୍ରୀଷ୍ଟାବ୍ଦରେ ରାସପୂର୍ଣ୍ଣିମା ମଧ୍ୟରାତ୍ରିରେ ଦେବ୍ରୀଗଡ଼ଠାରେ ସୁରେନ୍ଦ୍ର ସାଏ, ଉଦ୍ଦ୍ୟନ୍ତ ସାଏ, ବଳରାମ ସିଂହ ଓ ଲୋଚନପୁର ଜମିଦାର ବଳଭଦ୍ର ଦେଓ ମିଳିତ ହୋଇ ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିବା ସମୟରେ ଇଂରେଜମାନେ ଅଚାନକ ସେଠାରେ ପହଞ୍ଚି ବଳଭଦ୍ର ଦେଓଙ୍କୁ ହତ୍ୟା କଲେ । ସୌଭାଗ୍ୟକ୍ରମେ ସୁରେନ୍ଦ୍ର ସାଏ ତାଙ୍କ ଭାଇମାନଙ୍କ ସହ କୌଶଳ କରି ଖସି ଯାଇଥିଲେ । ୧୮୪୦ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ–ପଶ୍ଚିମ ସୀମାନ୍ତର ତତ୍କାଳୀନ ଇଂରେଜ ଏଜେଣ୍ଟ କର୍ଣ୍ଣେଲ ଆଉସ୍ଲେଙ୍କ ସହାୟତାରେ ସୁରେନ୍ଦ୍ର ସାଏ, ଉଦ୍ଦ୍ୟନ୍ତ ସାଏ ଓ ବଳରାମ ସିଂହଙ୍କୁ ବନ୍ଦୀ କରାଯାଇ ଆଜୀବନ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା । ସେମାନେ ହଜାରୀବାଗ ଜେଲରେ ବନ୍ଦୀ ହୋଇ ରହିଲେ । ଏହିଠାରେ ସୁରେନ୍ଦ୍ର ସାଏଙ୍କ ପ୍ରଥମ ପର୍ଯ୍ୟାୟ ସଂଗ୍ରାମର ଯବନିକା ପଡ଼ିଲା ।

୧୮୪୯ ଖ୍ରୀଷ୍ଟାବ୍ଦରେ ନାରାୟଣ ସିଂହଙ୍କର ମୃତ୍ୟୁ ବେଳକୁ ସୁରେନ୍ଦ୍ର ସାଏ ହଜାରୀବାଗରେ ବନ୍ଦୀ ଜୀବନଯାପନ କରୁଥାନ୍ତି । ୧୮୫୭ରେ ଭାରତର ସିପାହୀମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିଥିଲେ । ସେହି ବର୍ଷ ଜୁଲାଇ ମାସ ୩୦ ତାରିଖ ଦିନ ସିପାହୀମାନେ ବଳ ପ୍ରୟୋଗପୂର୍ବକ ହଜାରୀବାଗ୍ ଜେଲରେ ପ୍ରବେଶ କରି

ସୁରେନ୍ଦ୍ର ସାଏଙ୍କ ସମେତ ୩୨ ଜଣ ବନ୍ଦୀଙ୍କୁ ମୁକ୍ତ କରି ଦେଇଥିଲେ । ମୁକ୍ତି ପାଇ ସୁରେନ୍ଦ୍ର ସାଏ ସଙ୍ଗେ ସଙ୍ଗେ ସମ୍ବଲପୁର ଫେରି ଆସିଲେ ଏବଂ ସମ୍ବଲପୁରବାସୀଙ୍କୁ ସୁସଙ୍ଗଠିତ କରି ପୁନର୍ବାର ସଂଗ୍ରାମ କରିବାକୁ ଆଗେଇ ଆସିଲେ । ଦେବ୍ରୀଗଡ଼ ହେଲା ସୁରେନ୍ଦ୍ରଙ୍କ ସଂଗ୍ରାମର କେନ୍ଦ୍ରସ୍ଥଳ । କୌଶଳକ୍ରମେ ସୁରେନ୍ଦ୍ର ସାଏ ପ୍ରଥମେ ସମ୍ବଲପୁର ଅଞ୍ଚଳରେ ଥିବା ଇଂରେଜମାନଙ୍କର ବାହ୍ୟ ଯୋଗାଯୋଗ ସମ୍ପର୍କ ଛିନ୍ନ କଲେ । ବଡ଼ ବଡ଼ ପଥର ଖଣ୍ଡ ରଖି ରାସ୍ତା ଅବରୋଧ କରିବା ସହ ପାହାଡ଼ ଉପରେ ଥିବା ଶିଆଳୀ ଲତାରେ ବଡ଼ ବଡ଼ ପଥରକୁ ବାନ୍ଧିରଖି ଆବଶ୍ୟକ ସ୍ଥଳେ ଲତାକୁ କାଟି ଦେଉଥିଲେ । ଫଳରେ ପଥରଖଣ୍ଡମାନ ପଡ଼ି ଇଂରେଜମାନଙ୍କୁ ଆଘାତ ଦେଉଥିଲା । ଅନ୍ୟ ପକ୍ଷରେ ଇଂରେଜମାନଙ୍କ ଗୁଳିଗୁଳା ଘଞ୍ଚ ଜଙ୍ଗଲରେ ଥିବା ଗଛଗୁଡ଼ିକରେ ବାଜି ସବୁ ନଷ୍ଟଭ୍ରଷ୍ଟ ହୋଇଯାଉଥିଲା । ପାହାଡ଼ ମଧ୍ୟସ୍ଥ ଘଞ୍ଚ ଜଙ୍ଗଲରେ ସୁରେନ୍ଦ୍ରଙ୍କ ପକ୍ଷର ଆକ୍ରମଣକାରୀମାନେ ଲୁଚିଛପି ଗରିଲା ଯୁଦ୍ଧ କରିବା ପାଇଁ ବେଶ୍ ସୁବିଧା ପାଉଥିଲେ । ଇଂରେଜମାନଙ୍କ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ଆଗରେ ସମ୍ବଲପୁରବାସୀଙ୍କ ଧନୁତୀର, ବର୍ଚ୍ଛା, ଖଣ୍ଡା, ନିଆଁଧରା ବନ୍ଧୁକ ଆଦି ବିଶେଷ କିଛି କାମ ଦେବ ନାହିଁ ବୋଲି ସେ ଗରିଲା ଯୁଦ୍ଧର ଆଶ୍ରୟ ନେଇଥିଲେ ।

୧୮୬୧ରେ ମେଜର ଇମ୍ପେଙ୍କୁ ସମ୍ବଲପୁରର ଡେପୁଟୀ କମିଶନର ରୂପେ ନିଯୁକ୍ତି ଦିଆଗଲା । ମେଜର ଇମ୍ପେ ଯୁଦ୍ଧ ନୀତି ପରିତ୍ୟାଗ କରି ଶାନ୍ତି ନୀତି ଅନୁସରଣ କଲେ । ସୁରେନ୍ଦ୍ର ସାଏଙ୍କ ବିରୁଦ୍ଧରେ ଯୁଦ୍ଧ ବନ୍ଦ ଘୋଷଣା କଲେ । ଆତ୍ମ ସମର୍ପଣ କରିଥିବା ବିଦ୍ରୋହୀମାନଙ୍କୁ କ୍ଷମା ପ୍ରଦାନ କରି ସେମାନଙ୍କର ବାଜ୍ୟାପ୍ତ ସମ୍ପତ୍ତି ଫେରସ୍ତ କରି ଦିଆଯିବାର ନିଷ୍ପତ୍ତି ନେଲେ । ଏହାପରେ ସୁରେନ୍ଦ୍ରଙ୍କର ଭାଇ ଓ ପୁତ୍ର ଆତ୍ମସମର୍ପଣ କରିଥିଲେ । ସେମାନଙ୍କୁ ଇମ୍ପେ ସମ୍ମାନର ସହ ଖିଣ୍ଡା ଗ୍ରାମରେ ଆଶ୍ରୟ ଦେଇଥିଲେ । ପରେ ପରେ ୧୮୬୨ ମସିହା ମଇ ମାସ ୧୬ ତାରିଖ ଦିନ ରାତିରେ ଘୋର ଜଙ୍ଗଲ ମଧ୍ୟରେ ଇମ୍ପେ ସାହେବଙ୍କ ସହ ସୁରେନ୍ଦ୍ର ସାଏଙ୍କର ସାକ୍ଷାତ ହେଲା ଏବଂ ସେହିଠାରେ ସୁରେନ୍ଦ୍ର ସାଏ ଆତ୍ମସମର୍ପଣ କରିଥିଲେ । ୧୮୬୩ରେ ଇମ୍ପେ ସାହେବଙ୍କର ମୃତ୍ୟୁ ହେବାରୁ ସମ୍ବଲପୁରର ରାଜନୈତିକ ପରିସ୍ଥିତି ବଦଳିଗଲା । ମେଜର ଇମ୍ପେଙ୍କ ସ୍ଥାନରେ କ୍ୟାପ୍‌ଟେନ୍ କମ୍ବରଲେଜ୍ ନିଯୁକ୍ତି ପାଇଲେ । କମ୍ବରଲେଜ୍ ଉଚ୍ଚ ପୋଲିସ୍ ଅଫିସର କ୍ୟାପ୍‌ଟେନ୍ ଷ୍ଟୁଆର୍ଟ ଓ ମିଷ୍ଟର ବେରିଲ୍‌ଙ୍କ ସହାୟତାରେ ୧୮୬୪ ମସିହା ଜାନୁଆରୀ ୨୩ ତାରିଖ ରାତ୍ର ୧୧ ଘଣ୍ଟା ସମୟରେ ସୁରେନ୍ଦ୍ର ସାଏ ଓ ତାଙ୍କ ପରିବାରବର୍ଗ ଶୋଇଥିବା ସମୟରେ ତାଙ୍କ ଘର ଉପରେ ଚଢ଼ାଉକରି ସେମାନଙ୍କୁ ବନ୍ଦୀ କଲେ । ସେହି ରାତ୍ରିରେ ସେମାନଙ୍କୁ ରାୟପୁର ନିଆଗଲା । ପରେ ସେମାନଙ୍କୁ ନାଗପୁର ଜେଲ୍ ଓ ଆଜୀବନ ଦେଶାନ୍ତର ଦଣ୍ଡରେ ଦଣ୍ଡିତ କରାଯାଇ ୧୮୬୬ ମସିହାରେ ଅସୀରଗଡ଼ ଦୁର୍ଗକୁ ପଠାଇ ଦିଆଗଲା । ଉକ୍ତ ଅସୀରଗଡ଼ ଦୁର୍ଗରେ ୧୮୮୪ ମସିହା ଫେବୃୟାରୀ ମାସ ୨୮ ତାରିଖରେ ବୀର ସୁରେନ୍ଦ୍ର ସାଏଙ୍କ ଜୀବନଦୀପ ନିର୍ବାପିତ ହେଲା ।

ଘୋର ଅରଣ୍ୟ ମଧ୍ୟରେ ଲୁଚି ରହି ସାହସୀ ଓଡ଼ିଆମାନଙ୍କୁ ଏକତ୍ର କରି ବିଭିନ୍ନ ରଣକୌଶଳରେ ସେମାନଙ୍କୁ ତାଲିମ ଦେଇ ଶୃଙ୍ଖଳାବୋଧ ଓ ନୈତିକତାକୁ ବଜାୟ ରଖି ସୁରେନ୍ଦ୍ର ସାଏ ଇଂରେଜମାନଙ୍କ ବିରୁଦ୍ଧରେ ଏକକ ସଂଗ୍ରାମର ନେତୃତ୍ୱ ନେଇଥିଲେ । ଏହା ଓଡ଼ିଆ ଜାତିର ଇତିହାସରେ ଏକ ସ୍ମରଣୀୟ ଘଟଣା । ଓଡ଼ିଶାର ଏହି ଜାତୀୟ ବୀରଙ୍କର ଧୈର୍ଯ୍ୟ, ସାହସ, ଦୃଢ଼ ନେତୃତ୍ୱ ଓ ମନୋବଳ ତଥା ଶୃଙ୍ଖଳା ଓ ନୈତିକତା ଏବଂ ମହତ୍ ଆଦର୍ଶ ଯୁଗେ ଯୁଗେ ଓଡ଼ିଆ ଜାତି ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିଥିବ ।



# ବକ୍ସି ଜଗବନ୍ଧୁ

ପ୍ରାଚୀନ କାଳରୁ ଉତ୍କଳ ବିଶାଳ ବୈଭବରେ ପରିପୂର୍ଣ୍ଣ ଏବଂ ଅତ୍ୟନ୍ତ ଶକ୍ତିଶାଳୀ ଦେଶ ଭାବରେ ପରିଚିତ ଥିଲା । ଏହାର ଇତିହାସ, କଳାକୃତି, ସଂସ୍କୃତି ଓ ଶିକ୍ଷା ଅତ୍ୟନ୍ତ ଋଦ୍ଧିମନ୍ତ । ବିଜୟର ବୀରତ୍ୱ ଗାଥା ଆଜି ବି ଓଡ଼ିଶାବାସୀଙ୍କ ମନରେ ଅପୂର୍ବ ଶିହରଣ ସୃଷ୍ଟି କରେ । ଇତିହାସର ଘଟଣା ପ୍ରବାହରେ ଯେତେବେଳେ ଓଡ଼ିଶାର ସ୍ୱାଧୀନତା ଅବକ୍ଷୟମୁଖୀ, ସେତେବେଳେ ଓଡ଼ିଶାର ଶେଷ ସ୍ୱାଧୀନତା ବଜାୟ ରଖିବା ପାଇଁ ଉତ୍କଳ ଜନନୀର ଯେଉଁ କେତେଜଣ ବୀର ସୁଯୋଗ୍ୟ ସନ୍ତାନ ଇଂରେଜମାନଙ୍କ ସହ ସଂଗ୍ରାମ କରିଥିଲେ, ସେମାନଙ୍କ ମଧ୍ୟରୁ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଅନ୍ୟତମ । ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ବଳିଷ୍ଠ ତ୍ୟାଗ, ଅପୂର୍ବ ସାହସ ଓ ବୀରତ୍ୱ ସହ ତାଙ୍କର ଆତ୍ମୋତ୍ସର୍ଗ ଓଡ଼ିଶା ଇତିହାସର ଏକ ଗୌରବପୂର୍ଣ୍ଣ ରକ୍ତରଞ୍ଜିତ ଅଧ୍ୟାୟ ।



ବକ୍ସି ଜଗବନ୍ଧୁଙ୍କର ୧୮୦୪ ପୂର୍ବବର୍ତ୍ତୀ ଜୀବନୀ ଏ ପର୍ଯ୍ୟନ୍ତ ଅଜଣା ରହିଛି । କେତେକ ଐତିହାସିକ ମତ ଦିଅନ୍ତି ତାଙ୍କ ଜୀବନ କାଳ ୧୭୮୦ ମସିହାରୁ ୧୮୨୯ ମସିହା ମଧ୍ୟରେ ସୀମାବଦ୍ଧ ଥିଲା । ଇଂରେଜମାନେ ୧୮୦୪ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ କରି ତାଙ୍କର ରାଜ୍ୟକୁ 'ଖାସ୍' କଲେ ଅର୍ଥାତ୍ ପ୍ରତ୍ୟକ୍ଷ ଇଂରେଜ ଶାସନାଧୀନ ଅଞ୍ଚଳ ସହିତ ତାଙ୍କୁ ମିଶାଇ ଦିଆଗଲା । ପାଇକଙ୍କ ନିଷ୍କର ଜମି ଉପରେ ଉଚ୍ଚ ହାରରେ କର ଧାର୍ଯ୍ୟ ହେଲା । ଫଳରେ ପାଇକମାନେ ତାଙ୍କର ବଂଶାନୁକ୍ରମିକ ନିଷ୍କର ବୃତ୍ତିରୁ ବଞ୍ଚିତ ହେଲେ । ଖୋର୍ଦ୍ଧା ଖାସ୍ ହେବା ପରେ ସେହି ଜମିଦାରୀର ରାଜସ୍ୱ ଅନେକ ପରିମାଣରେ ବୃଦ୍ଧି କରାଯାଇ ଜଣେ ବିଦେଶୀ ଜମିଦାରଙ୍କୁ ପଚ୍ଚା ଦିଆଗଲା । ଅନେକ ସର୍ବସ୍ୱାନ୍ତ ହୋଇ ନିଜର ଘରଦ୍ୱାର ଛାଡ଼ି ନିକଟବର୍ତ୍ତୀ କରଦ ରାଜ୍ୟମାନଙ୍କରେ ଆଶ୍ରୟ ନେଲେ । ଯେଉଁମାନେ ରହିଲେ ସେମାନଙ୍କ ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଲା । ପାଇକମାନେ ବୀର ଜାତି । ସେମାନେ ଅନ୍ୟାୟ ଅତ୍ୟାଚାରକୁ ନିରବରେ ସହ୍ୟ କରିବାରେ ଅଭ୍ୟସ୍ତ ନୁହନ୍ତି । ଯେଉଁମାନଙ୍କ ଯୋଗୁଁ ସେମାନଙ୍କ ଅବସ୍ଥା ଏପରି ଦୟନୀୟ ହୋଇ ପଡ଼ିଛି, ସେମାନଙ୍କୁ ଉଚିତ ଶିକ୍ଷା ଦେବା ପାଇଁ ପାଇକମାନେ ଦୃଢ଼ ସଂକଳ୍ପ ନେଲେ ଓ ସୁଯୋଗର ଅପେକ୍ଷାରେ ରହିଲେ । ୧୮୧୭ ସାଲ ମାର୍ଚ୍ଚ ମାସରେ ସେ ସୁଯୋଗ ଆସିଲା । ଜୁହୁଳୁଥିବା ବିଦ୍ରୋହାଗ୍ନି ଜଳି ଉଠିଲା । ପାଇକମାନେ ସେମାନଙ୍କର ସେନାଧ୍ୟକ୍ଷ ଓ ପ୍ରିୟ ନେତା ବକ୍ସି ଜଗବନ୍ଧୁଙ୍କର ନେତୃତ୍ୱରେ ଇଂରେଜମାନଙ୍କର ଅନ୍ୟାୟ ନୀତି ଓ ନିର୍ଯାତନା ବିରୁଦ୍ଧରେ ବିଦ୍ରୋହ କଲେ ।

ବକ୍ସି ଜଗବନ୍ଧୁ ଖୋର୍ଦ୍ଧା ରାଜାଙ୍କ ସେନାବାହିନୀର ସେନାପତି ଥିଲେ । ରାଜ୍ୟରେ ତାଙ୍କର ସ୍ଥାନ ରାଜାଙ୍କ ପରେ ଥିଲା । ତାଙ୍କର ସେରଗଡ଼ ଓ ବଡ଼ମ୍ବା ରାଜାଙ୍କ ସହିତ ବୈବାହିକ ସମ୍ବନ୍ଧ ଥିଲା । ସୁତରାଂ ସେ ଉଚ୍ଚ ବଂଶଜ ବୋଲି ଅନୁମାନ କରାଯାଏ । ଶ୍ରୀ ସୁଧାକର ପଟ୍ଟନାୟକ ଜଗବନ୍ଧୁଙ୍କ ବଂଶାବଳୀ ସମ୍ବନ୍ଧରେ ଗୋଟିଏ ପୋଥିରୁ କିଛି ସୂଚନା ପାଇଥିଲେ । ସେହି ପୋଥି ଅନୁସାରେ ଜଗବନ୍ଧୁ ବିଦ୍ୟାଧର ଭୋଇବଂଶର ପ୍ରଥମ ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ମନ୍ତ୍ରୀ ଦନେଇ ବିଦ୍ୟାଧରଙ୍କ ଅଷ୍ଟମ ବଂଶଧର । ଜଗବନ୍ଧୁଙ୍କର ପଦବୀ ବିଦ୍ୟାଧର ହୋଇଥିବାରୁ ତାଙ୍କର କେତେକ ଦେଶୀୟ ରାଜାଙ୍କ ସହିତ ବୈବାହିକ ସମ୍ବନ୍ଧ ଥିବାରୁ ଉପରୋକ୍ତ ତଥ୍ୟ ସତ୍ୟ ବୋଲି ମନେ ହୁଏ ।

ଷ୍ଟାର୍ଲିଂ ସାହେବ ତାଙ୍କର ଓଡ଼ିଶା ଇତିହାସରେ ଗୋଟିଏ କିମ୍ବଦନ୍ତୀ ଉପରେ ଭିତ୍ତି କରି ଲେଖିଛନ୍ତି ଯେ, ଜଗବନ୍ଧୁଙ୍କ ଶାରୀରିକ ଗଠନ ସୁନ୍ଦର ଓ ବଳିଷ୍ଠ ଥିଲା ଏବଂ ସେ ଶକ୍ତିମାନ ପୁରୁଷ ଥିଲେ । ୧୮୧୭ ମସିହାରୁ ବକ୍ସି ଜଗବନ୍ଧୁ ବୀର ପାଇକମାନଙ୍କୁ ସଙ୍ଗଠିତ କଲେ । ଗଣ ବିପ୍ଳବ ଓ ଜାତୀୟ ଜାଗରଣର ସୂତ୍ରପାତ କରିଥିଲେ । ତେଣୁ ସେ ହେଉଛନ୍ତି ସ୍ୱାଧୀନତା ସଂଗ୍ରାମର ପ୍ରଥମ କର୍ଣ୍ଣଧାର । କୁହୁଳୁଥିବା ନିଆଁ ଜଳିବା ପାଇଁ ଏକ ସ୍ଫୁଲିଙ୍ଗ ଦରକାର କରେ । ୧୮୧୭ ମସିହାରେ ଇଂରେଜମାନେ ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କୁ ଗୋଟିଏ ହତ୍ୟା ମାମଲା ସମ୍ପର୍କରେ ଗିରଫ କଲେ । ସେହି ଘଟଣାର ପ୍ରତିବାଦରେ ଘୁମୁସରର ୩୦୦/୪୦୦ କନ୍ଧ ବାଣପୁରରେ ପଶି ସରକାରୀ ଖଜଣାଖାନା ଲୁଟ୍ କଲେ ଓ ସରକାରୀ ଦପ୍ତର ସବୁ ଆକ୍ରମଣ କଲେ । କୁହୁଳୁଥିବା ବିଦ୍ରୋହର ନିଆଁ ପ୍ରବଳ ଭାବରେ ଜଳି ଉଠିଲା । ଖୋର୍ଦ୍ଧାର ପାଇକମାନେ ଏହି ସୁଯୋଗ ନେଇ ଜଗବନ୍ଧୁଙ୍କ ନେତୃତ୍ୱରେ ବିଦ୍ରୋହ କଲେ । ଜଗବନ୍ଧୁଙ୍କର ପରମ ଶତ୍ରୁ ଚରଣ ପଟ୍ଟନାୟକ ତାଙ୍କର କ୍ରୋଧାଗ୍ନିର ପ୍ରଥମ ଶିକାର ହେଲେ ।

ହଠାତ୍ ପାଇକ ବିଦ୍ରୋହ ହେବାରୁ ଇଂରେଜ କର୍ତ୍ତୃପକ୍ଷ ବିବ୍ରତ ହୋଇ ପଡ଼ିଲେ । ପାଇକମାନେ ବାଣପୁର ଓ ଖୋର୍ଦ୍ଧାରେ ଥିବା ସବୁ ସରକାରୀ ଅଫିସ୍ ଭାଙ୍ଗି ଦେଲେ, ଖଜଣାଖାନା ଲୁଟ୍ କଲେ । ପାଇକମାନଙ୍କ ସାଙ୍ଗରେ ଇଂରେଜ ସୈନ୍ୟଙ୍କର ଗଙ୍ଗପଡ଼ା, ବାଳକାଟି, ପିପିଲି ଇତ୍ୟାଦି ସ୍ଥାନମାନଙ୍କରେ ସଂଘର୍ଷ ହୋଇଥିଲା । ତଦ୍ଦ୍ୱାରା ପାଇକମାନଙ୍କର ଗତିରୋଧ ହୋଇ ପାରିଲା ନାହିଁ । ପାଇକମାନେ ପୁରୀ ଆଡ଼କୁ ଅଗ୍ରସର ହେଲେ । ପୁରୀରେ ପାଇକମାନେ ଇଂରେଜ ସୈନ୍ୟଙ୍କ ପ୍ରତିରୋଧ କରି ପାରିଲେ ନାହିଁ । ଇଂରେଜମାନେ ରାଜା ମୁକୁନ୍ଦ ଦେବଙ୍କୁ ବନ୍ଦୀ କରି କଟକ ଆଣିଲେ ।

୧୮୧୭ ମସିହା ଏପ୍ରିଲ ମାସ ୧୨ ତାରିଖରେ ସାମରିକ ଆଇନ ପ୍ରବର୍ତ୍ତନ କରାଗଲା । କ୍ରମେ ସେ ଆଇନ ପୁରୀ ଓ ପିପିଲିରେ ପ୍ରବର୍ତ୍ତନ କରାଗଲା । ମେଜର୍ ସାର୍ ଜି. ମାଟିନ୍‌ଡ଼େଲ୍‌ଙ୍କୁ ସାମରିକ କମିଶନର ରୂପେ ନିଯୁକ୍ତି କରାଗଲା । ସେହିବର୍ଷ ଅକ୍ଟୋବର ମାସ ଶେଷ ବେଳକୁ ଇଂରେଜମାନେ ବିଦ୍ରୋହକୁ ସମ୍ପୂର୍ଣ୍ଣ ଭାବରେ ଦମନ କରି ଦେଇଥିଲେ । କିନ୍ତୁ ଇଂରେଜ କର୍ତ୍ତୃପକ୍ଷ ଶାନ୍ତିରେ ନିଃଶ୍ୱାସ ମାରି ପାରିଲେ ନାହିଁ । କାରଣ ଜଗବନ୍ଧୁ ବିଦ୍ୟାଧର, କୃଷ୍ଣଚନ୍ଦ୍ର ଭ୍ରମରବର ଓ ସେମାନଙ୍କ ଅନୁଚରମାନେ ଜଙ୍ଗଲରେ ଆତ୍ମଗୋପନ କରି ରହିଲେ । ପୁଣି କେତେବେଳେ ବିଦ୍ରୋହର ନିଆଁ ଜଳି ଉଠିବ ଏହି ଭୟରେ କର୍ତ୍ତୃପକ୍ଷ ସବୁବେଳେ ସତର୍କ ହୋଇ ରହିଥିଲେ । ୧୮୧୮ ମସିହାରୁ ଇଂରେଜ ସୈନ୍ୟ ଓ ଆତ୍ମଗୋପନକାରୀ ପାଇକମାନଙ୍କ ମଧ୍ୟରେ ଲୁଚକାଳି ଖେଳ ଚାଲିଲା । ଶତଚେଷ୍ଟା ସତ୍ତ୍ୱେ ଏପରିକି ଜଗବନ୍ଧୁଙ୍କ ପରିବାରକୁ ବନ୍ଦୀ କରି ରଖିବା ସତ୍ତ୍ୱେ ମଧ୍ୟ ଇଂରେଜମାନେ ବିଦ୍ରୋହୀ ନେତା ଜଗବନ୍ଧୁ, କୃଷ୍ଣଚନ୍ଦ୍ର ଭ୍ରମରବର ଓ ତାଙ୍କର ଅନୁଚରବର୍ଗଙ୍କୁ ଧରି ପାରିଲେ ନାହିଁ । ଶେଷରେ ବଡ଼ଲାଟ୍ ନିମ୍ନଲିଖିତ ସର୍ତ୍ତରେ ୧୮୨୨ରେ ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ର ଭ୍ରମରବରଙ୍କୁ କ୍ଷମା ଦେବା ବିଷୟ ଘୋଷଣା କଲେ :

(୧) ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ର ସେମାନଙ୍କର ବଂଶାନୁକ୍ରମିକ ପଦବୀ 'ବକ୍ସି' ଓ 'ଦେଓ୍ୱାନ୍' ବ୍ୟବହାର କରିବେ ନାହିଁ ।

(୨) ସେମାନେ କଟକରେ ରହିବେ ଓ ବିନା ଅନୁମତିରେ କଟକ ଛାଡ଼ିବେ ନାହିଁ ।

(୩) ସେମାନଙ୍କୁ ଯଥାକ୍ରମେ ୧୦୦ ଟଙ୍କା ଓ ୫୦ ଟଙ୍କା ମାସିକ ଭତ୍ତା ଦିଆଯିବ ।

ଏହି ଘୋଷଣା ସତ୍ତ୍ୱେ ଜଗବନ୍ଧୁ, କୃଷ୍ଣଚନ୍ଦ୍ର ଓ ତାଙ୍କର ଅନୁଚରମାନେ ଆତ୍ମସମର୍ପଣ କଲେ ନାହିଁ, କିନ୍ତୁ ବିଦ୍ରୋହୀମାନଙ୍କ ଅବସ୍ଥା କ୍ରମେ ଶୋଚନୀୟ ହୋଇ ଉଠିଲା । ଇଂରେଜ କର୍ତ୍ତୃପକ୍ଷଙ୍କ ସତର୍କତା ଯୋଗୁଁ ସେମାନେ କୌଣସି ସୂତ୍ରରୁ ସାହାଯ୍ୟ ପାଇ ପାରିଲେ ନାହିଁ । ନୟାଗଡ଼ ଓ ଅନ୍ୟାନ୍ୟ ରାଜାମାନଙ୍କୁ ସତର୍କ କରାଇ ଦିଆଗଲା ଯେ,ସେମାନେ ଯଦି କୌଣସି ପ୍ରକାରର ସାହାଯ୍ୟ କରନ୍ତି, ତେବେ ସେମାନଙ୍କ ପ୍ରତି କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ । ସୁତରାଂ ରାଜାମାନେ ମଧ୍ୟ ଭୟରେ ବିଦ୍ରୋହୀମାନଙ୍କୁ ସାହାଯ୍ୟ କଲେ ନାହିଁ । ଏପରି ପରିସ୍ଥିତିରେ ବିଦ୍ରୋହୀମାନଙ୍କର ଆତ୍ମସମର୍ପଣ ବ୍ୟତୀତ ଅନ୍ୟ କିଛି ଉପାୟ ରହିଲା ନାହିଁ । ଶେଷରେ ନୟାଗଡ଼ ରାଜା ଓ ତାଙ୍କର ଦେୱାନ୍ ବରଜୁ ପାଇକରାୟ ଜଗବନ୍ଧୁଙ୍କୁ ସରକାରଙ୍କର ସର୍ତ୍ତ ଗ୍ରହଣ କରି ଆତ୍ମସମର୍ପଣ କରିବାକୁ ପ୍ରବର୍ତ୍ତାଇଲେ । ଜଗବନ୍ଧୁ ଅନନ୍ୟୋପାୟ ହୋଇ ସେହି ସର୍ତ୍ତକୁ ଗ୍ରହଣ କରି ମଇ ମାସ ୨୭ ତାରିଖ ୧୮୨୫ ମସିହାରେ ଆତ୍ମସମର୍ପଣ କଲେ । ତାଙ୍କ ସହ ତାଙ୍କର ୮ ଜଣ ବିଶ୍ୱସ୍ତ ପାର୍ଶ୍ୱଚର ମଧ୍ୟ ଆତ୍ମସମର୍ପଣ କଲେ ।

ବକ୍ସି ଜଗବନ୍ଧୁଙ୍କୁ ଇଂରେଜ ସରକାର କଟକସ୍ଥିତ ବକ୍ସି ବଜାରଠାରେ ଗୃହବନ୍ଦୀ କରି ରଖିଲେ । ସେହିଠାରେ ୧୮୨୯ ମସିହା ଜାନୁଆରୀ ୨୪ ତାରିଖରେ ବକ୍ସିଙ୍କର ଜୀବନଦୀପ ନିର୍ବାପିତ ହେଲା ଏବଂ ଏକ ମହାନ୍ ଜୀବନର ଅବସାନ ଘଟିଲା ।



# ଜିଲ୍ଲା ସ୍ତରରେ ଥିବା ଉତ୍କଳ ପ୍ରସଙ୍ଗ ଏବଂ ଓଡ଼ିଶା ରିଭ୍ୟୁ ପୁସ୍ତକର ବିକ୍ରୟ କେନ୍ଦ୍ର

| କ୍ରମିକ ସଂଖ୍ୟା | ଜିଲ୍ଲାର ନାମ | ପୁସ୍ତକ ବିକ୍ରୟ କେନ୍ଦ୍ର |
|---|---|---|
| ୧. | ଅନୁଗୋଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଅନୁଗୋଳ<br>ଯୋଗାଯୋଗ ନଂ–୯୯୩୭୨୩୫୯୯୫ |
| ୨. | ବାଲେଶ୍ୱର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଚେରିହତା, ବାଲେଶ୍ୱର<br>ଯୋଗାଯୋଗ ନଂ–୯୮୬୧୧୫୩୩୯୯ |
| ୩. | ବରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ,ଗାନ୍ଧୀ ଛକ ପାଖ, ବରଗଡ଼<br>ଯୋଗାଯୋଗ ନଂ–୯୪୩୭୨୪୦୫୩୦ |
| ୪. | ଭଦ୍ରକ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଆପାଟବିନ୍ଧ ଛକ, ବାଲେଶ୍ୱର<br>ଯୋଗାଯୋଗ ନଂ–୯୪୩୭୩୨୦୭୬୨ |
| ୫. | ବଲାଙ୍ଗିର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବଲାଙ୍ଗିର ମନୋହରପୁର ରୋଡ଼<br>ଯୋଗାଯୋଗ ନଂ–୯୪୩୭୦୮୩୨୫୯/ ୭୦୦୮୮୬୯୬୭୫ |
| ୬. | ବୌଦ୍ଧ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବୌଦ୍ଧ<br>ଯୋଗାଯୋଗ ନଂ–୯୯୩୮୦୪୮୫୦୦ |
| ୭. | କଟକ | ପଢ଼ିଆରି ପାଠାଗାର, ଚୌଧୁରୀ ବଜାର, କଟକ<br>ଯୋଗାଯୋଗ ନଂ–୯୮୨୭୯୬୧୨୪୧ |
| ୮. | ଦେବଗଡ଼ | ସୂଚନା କେନ୍ଦ୍ର ଓ ପାଠାଗାର, ଦେବଗଡ଼<br>ଯୋଗାଯୋଗ ନଂ–୯୪୩୭୮୩୨୯୫୦ |
| ୯. | ଢେଙ୍କାନାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଢେଙ୍କାନାଳ<br>ଯୋଗାଯୋଗ ନଂ–୮୫୯୬୦୬୦୪୦୯ |
| ୧୦. | ଗଜପତି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାରଳାଖେମୁଣ୍ଡି<br>ଯୋଗାଯୋଗ ନଂ– ୯୪୩୮୭୬୫୭୨୭ |

| | | |
|---|---|---|
| ୧୧. | ଗଞ୍ଜାମ | କ) ସୂଚନା କେନ୍ଦ୍ର ଓ ପାଠାଗାର, ବ୍ରହ୍ମପୁର<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଛତ୍ରପୁର<br>ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଭଞ୍ଜନଗର<br>ଘ) ସୂଚନା କେନ୍ଦ୍ର ଓ ପାଠାଗାର, ଆସିକା<br>ଙ) ସୂଚନା କେନ୍ଦ୍ର ଓ ପାଠାଗାର, ଦିଗପହଣ୍ଡି<br>ଯୋଗାଯୋଗ ନଂ– ୯୪୩୮୫୪୧୨୨୨ |
| ୧୨. | ଜଗତସିଂହପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଜଗତସିଂହପୁର<br>ଯୋଗାଯୋଗ ନଂ–୯୮୫୩୩୪୫୩୧୪ |
| ୧୩. | ଯାଜପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଯାଜପୁର<br>ଯୋଗାଯୋଗ ନଂ– ୯୪୩୭୨୨୬୬୪୬ |
| ୧୪. | ଝାରସୁଗୁଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଝାରସୁଗୁଡ଼ା<br>ଯୋଗାଯୋଗ ନଂ– ୮୭୬୩୭୯୬୭୪୭ |
| ୧୫. | କଳାହାଣ୍ଡି | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଳାହାଣ୍ଡି<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, କେସିଙ୍ଗା<br>ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଧର୍ମଗଡ଼<br>ଯୋଗାଯୋଗ ନଂ–୮୨୪୯୪୨୦୦୨୬ |
| ୧୬. | କନ୍ଧମାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କନ୍ଧମାଳ<br>ଯୋଗାଯୋଗ ନଂ–୯୪୩୭୪୯୨୪୫୯ |
| ୧୭. | କେନ୍ଦ୍ରାପଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦ୍ରାପଡ଼ା<br>ଯୋଗାଯୋଗ ନଂ–୬୩୭୧୮୬୧୫୭୨ |
| ୧୮. | କେନ୍ଦୁଝର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦୁଝର<br>ଯୋଗାଯୋଗ ନଂ–୯୪୩୭୩୩୫୨୬୩ |
| ୧୯. | ଖୋର୍ଦ୍ଧା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାଲାହାଟ, ଖୋର୍ଦ୍ଧା<br>ଯୋଗାଯୋଗ ନଂ–୬୩୭୦୨୭୦୮୭୬ |
| ୨୦. | କୋରାପୁଟ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କୋରାପୁଟ<br>ଯୋଗାଯୋଗ ନଂ–୯୪୩୯୫୯୧୪୭୩ |
| ୨୧. | ମାଲକାନଗିରି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମାଲକାନଗିରି<br>ଯୋଗାଯୋଗ ନଂ–୮୨୬୦୬୪୨୫୧୪ |

| | | |
|---|---|---|
| ୨୨. | ମୟୂରଭଞ୍ଜ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମୟୂରଭଞ୍ଜ<br>ଯୋଗାଯୋଗ ନଂ–୯୮୬୧୭୦୪୭୫୭ |
| ୨୩. | ନୂଆପଡ଼ା | କ) ସୂଚନା କେନ୍ଦ୍ର ଓ ପାଠାଗାର, ନୂଆପଡ଼ା<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଖରିଆର<br>ଯୋଗାଯୋଗ ନଂ–୯୪୩୭୨୧୭୬୧୧ |
| ୨୪. | ନବରଙ୍ଗପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ନବରଙ୍ଗପୁର<br>ଯୋଗାଯୋଗ ନଂ– ୯୪୩୭୪୨୭୧୫୫ |
| ୨୫. | ନୟାଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ନୟାଗଡ଼<br>ଯୋଗାଯୋଗ ନଂ–୯୦୪୦୨୫୮୮୫୮ |
| ୨୬. | ପୁରୀ | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପୁରୀ<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ସିଂହଦ୍ୱାର, ପୁରୀ<br>ଯୋଗାଯୋଗ ନଂ–୯୪୩୭୩୦୨୬୧୮ |
| ୨୭. | ରାୟଗଡ଼ା | କ) ସୂଚନା କେନ୍ଦ୍ର ଓ ପାଠାଗାର, ରାୟଗଡ଼ା<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଗୁଣୁପୁର<br>ଯୋଗାଯୋଗ ନଂ–୯୪୩୮୬୪୧୭୮୫ |
| ୨୮. | ସମ୍ବଲପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସମ୍ବଲପୁର<br>ଯୋଗାଯୋଗ ନଂ–୯୦୯୦୫୦୮୫୨୮ |
| ୨୯. | ସୁବର୍ଣ୍ଣପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସୁବର୍ଣ୍ଣପୁର<br>ଯୋଗାଯୋଗ ନଂ–୯୯୩୮୩୪୭୬୭୮ |
| ୩୦. | ସୁନ୍ଦରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସୁନ୍ଦରଗଡ଼<br>ଯୋଗାଯୋଗ ନଂ–୯୭୭୬୧୦୯୭୭୨ |
| ୩୧. | ରାଉରକେଲା | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ରାଉରକେଲା<br>ଖ) ସିଟି ପାଠାଗାର, ମ୍ୟୁନିସିପାଲିଟି କର୍ପୋରେସନ୍<br>ଯୋଗାଯୋଗ ନଂ–୮୮୯୫୫୫୨୮୭୪ |
| ୩୨. | ଜୟଦେବ ଭବନ | ରାଜ୍ୟ ସୂଚନା କେନ୍ଦ୍ର, ଭୁବନେଶ୍ୱର<br>ଯୋଗାଯୋଗ ନଂ–୭୦୬୪୬୭୩୪୩୮ |

❖ ❖ ❖








ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଲୋକସେବା ଭବନର ସମ୍ମିଳନୀ କକ୍ଷରେ ଆଭାସି ମାଧ୍ୟମରେ  ଓଡ଼ିଶା ଖଣି ନିଗମର ବିଭିନ୍ନ ପ୍ରକଳ୍ପଗୁଡ଼ିକର ଉଦ୍‌ଘାଟନ ଏବଂ ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କଳିଙ୍ଗ ଷ୍ଟାଡିୟମଠାରେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଅଧୀନରେ ୪୧୬୬ ନବନିଯୁକ୍ତ ମାଧ୍ୟମିକ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କର ରାଜ୍ୟସ୍ତରୀୟ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଉପସ୍ଥିତ ଅଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଢେଙ୍କାନାଳ ଜିଲ୍ଲାର ଯୋରନ୍ଦାସ୍ଥିତ ମହିମାଗାଦି ଚତୁଃପାର୍ଶ୍ୱର ଉନ୍ନତିକରଣ, ଭବ୍ୟ ମହିମାଗାଦି ଶୂନ୍ୟମଣ୍ଡପ, ଉପାସନା ପୀଠ ଓ ବତି ମଣ୍ଡପ ନିର୍ମାଣ ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଲୋକସେବା ଭବନର ସମ୍ମିଳନୀ କକ୍ଷଠାରେ ପୂର୍ଣ୍ଣ ଅନୁଦାନପ୍ରାପ୍ତ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟର ୪୮୨ ଜଣ ନବନିଯୁକ୍ତ ସ୍ନାତକୋତ୍ତର ଶିକ୍ଷକଙ୍କୁ ନିଯୁକ୍ତିପତ୍ର ପ୍ରଦାନ କରୁଛନ୍ତି ।



ପୁରୀ ଜିଲ୍ଲାର ଐତିହ୍ୟ ଗ୍ରାମ ରଘୁରାଜପୁରର ଶିଳ୍ପୀ ଓ କାରିଗରମାନଙ୍କ ସହ
ମାନ୍ୟବର ରାଜ୍ୟପାଳ ଶ୍ରୀ ରଘୁବର ଦାସ ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନବରଙ୍ଗପୁର ଜିଲ୍ଲାରେ ପାର୍ବତୀ ଗିରି ବୃହତ୍ ଉଠା
ଜଳସେଚନ ପ୍ରକଳ୍ପ ଏବଂ ତୁରୀ–ଗୁନ୍ତାତ୍ ଜଳସେଚନ ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି ।
ଏହି ଅବସରରେ ୫–ଟି ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ୍ ଉପସ୍ଥିତ ଅଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭୁବନେଶ୍ୱର ନନ୍ଦନକାନନ ପ୍ରାଣୀ ଉଦ୍ୟାନ ଛକଠାରେ ବିଜୁ ପଟ୍ଟନାୟକଙ୍କ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ଅନାବରଣ କରୁଛନ୍ତି ।



ରାଜଭବନଠାରେ ମାନ୍ୟବର ରାଜ୍ୟପାଳ ଶ୍ରୀ ରଘୁବର ଦାସଙ୍କୁ ପୋଲିସ ମହାନିର୍ଦ୍ଦେଶକ ଶ୍ରୀ ଅରୁଣ କୁମାର ଷଡ଼ଙ୍ଗୀ, ଅତିରିକ୍ତ ପୋଲିସ ମହାନିର୍ଦ୍ଦେଶକ ଶ୍ରୀ ଆର୍.କେ. ଶର୍ମା ଓ ପୋଲିସ କମିଶନର ଶ୍ରୀ ସୌମେନ୍ଦ୍ର ପ୍ରିୟଦର୍ଶୀ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭୁବନେଶ୍ୱର ମେଟ୍ରୋ ରେଳ ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି ।



ବଲାଙ୍ଗିରଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ
ଲୋୟର ସୁକ୍‌ତେଲ ଜଳସେଚନ ପ୍ରକଳ୍ପର ଶୁଭ ଉଦ୍‌ଘାଟନ କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏସ୍‌ଡିଜି ଓଡ଼ିଶା ୱେବ୍‌ସାଇଟ୍ ଏବଂ ଜିଲ୍ଲା ଏସ୍‌ଡିଜି
ଇଣ୍ଡିକେଟର ଫ୍ରେମ୍‌ୱାର୍କ (ଡିଆଇଏଫ୍), ରେଡି ରେକନ୍‌ର, ମାଷ୍ଟରିଂ ମେଟାଡାଟା ଏବଂ
କନ୍‌ଭର୍‌ଜେନ୍ସ ମାଟ୍ରିକ୍ସର ଶୁଭାରମ୍ଭ କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଲୋକସେବା ଭବନର ସମ୍ମିଳନୀ କକ୍ଷଠାରେ ୨୦୨୧–୨୨ ଆର୍ଥିକ ବର୍ଷ ପାଇଁ ଶ୍ରେଷ୍ଠତା ପ୍ରଦର୍ଶନ କରିଥିବା ବ୍ୟାଙ୍କ୍‌କୁ **ମୁଖ୍ୟମନ୍ତ୍ରୀ ପୁରସ୍କାର** ପ୍ରଦାନ କରୁଛନ୍ତି ।



ମା ସମଲେଶ୍ୱରୀ ମନ୍ଦିର ପୂଜକ ଓ ଟ୍ରଷ୍ଟ ବୋର୍ଡର ସଦସ୍ୟମାନେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ସମଲେଇ ପ୍ରକଳ୍ପର ଲୋକାର୍ପଣ ଉତ୍ସବରେ ଯୋଗଦେବା ପାଇଁ ନିମନ୍ତ୍ରଣ କରୁଛନ୍ତି ।



୫–ଟି ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ **କଳାମଣ୍ଡଳ** ଏବଂ **ଅକ୍ଷର ଭୂମିର**
ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରୁଛନ୍ତି ।



୫–ଟି ଅଧ୍ୟକ୍ଷ ଶ୍ରୀ  ଭି.କେ. ପାଣ୍ଡିଆନ୍ ସତ୍ୟବାଦୀଠାରେ ଓଡ଼ିଆ ବିଶ୍ୱବିଦ୍ୟାଳୟ କାର୍ଯ୍ୟର
ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରୁଛନ୍ତି ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭୁବନେଶ୍ୱରର ସପ୍ତମ ବାଟାଲିୟନ୍ ପଡ଼ିଆଠାରେ ଭୁବନେଶ୍ୱର–କଟକ କମିଶନରେଟ୍ ପୋଲିସ୍‌ର ୧୬ତମ ପ୍ରତିଷ୍ଠା ଦିବସ ପାଳନ ଅବସରରେ ଅଭିବାଦନ ଗ୍ରହଣ କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ମାଲକାନଗିରି ବିମାନ ବନ୍ଦରର ଶୁଭ ଉଦ୍‌ଘାଟନ । ଏହି ଅବସରରେ ୫–ଟି ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ୍ ଉପସ୍ଥିତ ଅଛନ୍ତି ।

VOL-LXXIX NO. 6

ଉତ୍କଳ ପ୍ରସଙ୍ଗ

ଜାନୁଆରୀ - ୨୦୨୪



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ପୁରୀଠାରେ **ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପର** ଶୁଭ ପ୍ରତିଷ୍ଠା ଓ ଲୋକାର୍ପଣ । ଏହି ଅବସରରେ ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବ ଉପସ୍ଥିତ ଅଛନ୍ତି ।

*Printed by the Director,Printing,Stationery & Publication, Government of Odisha,Cuttack.*
*Published by the Director, Information & Public Relations Department*
*on behalf of Government of Odisha in Information & Public Relations Department*
*and Printed at Odisha Government Press, Madhupatana,Cuttack.* ***Editor : Kasturi Mohapatra.***